# ସମ୍ଭାବ୍ୟ ରାମାୟଣ

ପ୍ରବନ୍ଧ ସଂକଳନ




## ସୁଧାଂଶୁ ଶେଖର ଦାସ

ଏହି ଲେଖକଙ୍କର:

*ଅନୁବାଦ*

ଶୀଲା ଧର: ଶତକଡ଼ା ଶହେ ଗାନ୍ଧୀ, ୨୦୦୫

ବ୍ରାଏନ୍ ୱାଇସ୍: ଅସରନ୍ତି ଜୀବନ ଅସରନ୍ତି ଶିକ୍ଷା, ୨୦୦୬

ମୁକ୍ତାରନ ମାଇ: ଆଗରେ ଅସରନ୍ତି ରାସ୍ତା, ୨୦୦୯

ଏଲି ୱିଜେଲ: ରାତି, ୨୦୧୧

*ମୌଳିକ ରଚନା*

ଅଫେରନ୍ତା ସମୟ, ୨୦୦୮

ମେଲାଣିର ବେଳା, ୨୦୧୧

କଥାଟିଏ କହୁଁ, ୨୦୧୧

ସୁଧାଂଶୁ ଶେଖର ଦାସ

# ସମ୍ଭାବ୍ୟ ରାମାୟଣ

ପ୍ରବନ୍ଧ ସଂକଳନ

ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅଭିମତ, ହରପ୍ରସାଦ ଦାସଙ୍କ ମୁଖବନ୍ଧ
ଓ କମଳାକାନ୍ତ ମହାପାତ୍ରଙ୍କ ପୃଷ୍ଠବନ୍ଧ ସହ

ଶିକ୍ଷାସନ୍ଧାନ

ସମ୍ଭାବ୍ୟ ରାମାୟଣ

ସୁଧାଂଶୁ ଶେଖର ଦାସ

ପ୍ରଥମ ପ୍ରକାଶନ: ୨୦୧୪

ପ୍ରକାଶକ: ଶିକ୍ଷାସନ୍ଧାନ
ଏନ୍.ଡ଼ି.- ୭, ଭି.ଆ.ପି ଏରିଆ
ଆଇ.ଆର୍.ସି ଭିଲେଜ୍
ଭୁବନେଶ୍ୱର ୭୫୧୦୧୫

ମୁଦ୍ରଣ: ଶିକ୍ଷାପ୍ରକାଶନୀ
ଏନ୍.ଡ଼ି.- ୭, ଭି.ଆ.ପି ଏରିଆ
ଆଇ.ଆର୍.ସି ଭିଲେଜ୍
ଭୁବନେଶ୍ୱର ୭୫୧୦୧୫

ମୂଲ୍ୟ: ୧୦୦ଟଙ୍କା

## ସୂଚୀପତ୍ର


*ଅଭିମତ: ଜାନକୀବଲ୍ଲଭ ପଟ୍ଟନାୟକ* ୯

*ମୁଖବନ୍ଧ: ହରପ୍ରସାଦ ଦାସ* ୧୨

*ଏ ପୁସ୍ତକ କାହିଁକି: ଲେଖକ* ୧୪

୧. ମହର୍ଷି ବାଲ୍ମୀକି ଓ ରାମାୟଣ ରଚନାକାଳ ୧୬

୨. କାମଧେନୁ ଓ ବଶିଷ୍ଠ-ବିଶ୍ୱାମିତ୍ର ଦ୍ୱନ୍ଦ ୩୧

୩. ଅହଲ୍ୟା ଉପାଖ୍ୟାନ ୪୦

୪. ଶିବଧନୁ ଭଙ୍ଗ ଓ ପର୍ଶୁରାମ ଦର୍ପଦଳନ ୫୩

୫. ବାଳୀ-ସୁଗ୍ରୀବ ଉପାଖ୍ୟାନ ୬୨

୬. ସେତୁବନ୍ଧ ୭୩

୭. ରାବଣ ୮୨

୮. ଦଶରଥ-କୈକେୟୀ ଓ ଭରତ ୯୫

୯. ଶ୍ରୀରାମଙ୍କ ଅବତାର ପ୍ରଶ୍ନ ୧୦୧

୧୦. ଚିତ୍ର ଓ ମାନଚିତ୍ର ୧୨୬

୧୧. ସହାୟକ ପୁସ୍ତକ ତାଲିକା ୧୩୪

*ଧର୍ମ ସଙ୍କଟ: ଲେଖକ* ୧୩୬

*ପୃଷ୍ଠବନ୍ଧ: କମଳାକାନ୍ତ ମହାପାତ୍ର* ୧୩୯

# ଅର୍ପଣ

ପୁଷ୍ପରାଣୀ ମୋର ପତ୍ନୀ, ଯାହାଙ୍କ ଠାରୁ ଏ ଜୀବନରେ ମୁଁ ନେଇଛି ବେଶୀ, ଦେଇଛି କମ୍, ତାଙ୍କରି ହାତରେ ଏହି ସମ୍ଭାବ୍ୟ ରାମାୟଣର ପ୍ରଥମ ମୁଦ୍ରଣର ପ୍ରଥମ ପୁସ୍ତକଟି ଉପହାର ଦେଉଛି । ପ୍ରାୟ ଚାରି ଦଶନ୍ଧି ନିରବଚ୍ଛିନ୍ନ ଏକାଠି କଟାଇ ସାରିବା ପରେ ଆଜି ଜୀବନର ଉତ୍ତରାର୍ଦ୍ଧରେ, "ମେଲାଣିର ବେଳା" ପାଖେଇ ଆସିବା ବେଳକୁ ମନେହେଉଛି "ତୁମକୁ ଛାଡ଼ି ଏଠାରୁ ଯିବାକୁ ଇଚ୍ଛା ନାହିଁ କି ତୁମେ ଛାଡ଼ି ଯିବା ପରେ ଏଠାରେ ରହିବାକୁ ଇଚ୍ଛା ନାହିଁ ।"

ଲେଖକ

ଜାନକୀ ବଲ୍ଲଭ ପଟ୍ଟନାୟକ
ରାଜ୍ୟପାଳ
ଆସାମ

# ଅଭିମତ

ରାମାୟଣ ସମ୍ପର୍କରେ ଅସଂଖ୍ୟ ପୁସ୍ତକ ରଚନା କରାଯାଇଛି । ରାମାୟଣ ରଚନା ପରେ ଏହାକୁ ଅବଲମ୍ବନ କରି ସଂସ୍କୃତରେ ଆଧ୍ୟାତ୍ମ ରାମାୟଣ, ଆନନ୍ଦ ରାମାୟଣ, ରାମାୟଣ ମଞ୍ଜରୀ, ରାମାୟଣ ଚମ୍ପୂ ବା ବାଳ ରାମାୟଣ ଆଦି ପ୍ରସିଦ୍ଧ ଗ୍ରନ୍ଥମାନ ରଚିତ ହୋଇଛି । ବିଭିନ୍ନ ଭାରତୀୟ ଭାଷାରେ ରାମାୟଣ ରଚନା କରାଯାଇଛି ଏବଂ ସେଥିମଧ୍ୟରେ ରାମ ଚରିତ ମାନସ, କଂବନ ରାମାୟଣ ଆଦି ପ୍ରସିଦ୍ଧି ଲାଭ କରିଛି । ଦକ୍ଷିଣପୂର୍ବ ଏସିଆରେ ଯେଉଁସବୁ ଦେଶକୁ ଭାରତୀୟ ସଭ୍ୟତା ଯାଇଛି, ସେ ସବୁ ଦେଶରେ ମଧ୍ୟ ସେମାନଙ୍କ ନିଜ ନିଜ ଭାଷାରେ ରାମାୟଣ ରଚନା କରାଯାଇଛି । ଏବେ ମଧ୍ୟ କବି ଓ ଲେଖକମାନେ ସେମାନଙ୍କ ନିଜ ନିଜ ଦୃଷ୍ଟିକୋଣରୁ ରାମାୟଣ ସମ୍ପର୍କରେ ପୁସ୍ତକମାନ ରଚନା କରି ଚାଲିଛନ୍ତି । ଆଲୋଚ୍ୟ 'ସମ୍ଭାବ୍ୟ ରାମାୟଣ'ଟି ସେଥିମଧ୍ୟରୁ ଗୋଟିଏ ।

ଲେଖକ ଶ୍ରୀ ସୁଧାଂଶୁ ଶେଖର ଦାସ ତାଙ୍କ ପୁସ୍ତକରେ ବାଲ୍ମୀକି ରାମାୟଣର ରଚନାକାଳ ସହିତ ରାମାୟଣର ବିଭିନ୍ନ ବିଷୟବସ୍ତୁ ଓ ପାତ୍ରପାତ୍ରୀଙ୍କ ସମ୍ପର୍କରେ ଆଲୋଚନା-ସମାଲୋଚନା କରିଛନ୍ତି । ତାଙ୍କ ମତରେ ବାଲ୍ମୀକି ପ୍ରଥମେ ରାମାୟଣ ରଚନା କରିଥିଲେ ଏବଂ ଏହା ରଚିତ ହେବାର ବହୁ ପରେ ତାଙ୍କ କଳ୍ପିତ ରାମାୟଣର ଚରିତ୍ରମାନେ ଆବିର୍ଭୂତ ହୋଇ ବାଲ୍ମୀକିଙ୍କର କଳ୍ପନାକୁ ରୂପାୟିତ କରିଥିଲେ । ଏହା ଗୋଟିଏ ଭିନ୍ନ ମତ । କିନ୍ତୁ କବି କ୍ରାନ୍ତିଦର୍ଶୀ । କୁହାଯାଇଛି:

'କବିର୍ମନିଷୀଃ ପରିଭୂଃ ସ୍ୱୟଂଭୂଃ

ଯଥାଥ୍ୟେତୋଽର୍ଥାନ୍ ଶାଶ୍ୱତୀଭ୍ୟଃ ସମାଭ୍ୟଃ ।'

ଅର୍ଥାତ୍ କବି ଭବିଷ୍ୟତକୁ ଦେଖିପାରେ ଏବଂ ଶ୍ରେଷ୍ଠ କବି ଯାହା ଲେଖେ ତାହା ଏକ କାଳଜୟୀ ଲେଖାରେ ପରିଣତ ହୁଏ; ଯାହାକି ବାଲ୍ମୀକି ତାଙ୍କ ନିଜ ଭାଷାରେ କହିଛନ୍ତି - 'ଯେ ପର୍ଯ୍ୟନ୍ତ ଏ ଧରାପୃଷ୍ଠରେ ନଦୀ ଓ ପର୍ବତମାନେ ରହିଛନ୍ତି, ସେ ପର୍ଯ୍ୟନ୍ତ ରାମାୟଣ କଥା ପ୍ରଚାରିତ ହେଉଥିବ ।'

କେତେକ କ୍ଷେତ୍ରରେ ଆଲୋଚକ ଶ୍ରୀ ଦାସଙ୍କ ବିଶ୍ଳେଷଣ ସହିତ ସମାଲୋଚକମାନେ ସହମତ ହୋଇ ନ ପାରନ୍ତି, ଯଥା ବଶିଷ୍ଠ-ବିଶ୍ୱାମିତ୍ର ଉପାଖ୍ୟାନରେ କାମଧେନୁ ସଂପର୍କିତ ଆଲୋଚନା । ଅହଲ୍ୟା ଉପାଖ୍ୟାନରେ କେତେକ ମନ୍ତବ୍ୟ; ଯଥା ଅହଲ୍ୟା ଜଣେ ବୃଦ୍ଧ ଋଷିଙ୍କୁ ବିବାହ କରିଥିଲେ । ଏହାର କେତେଦୂର ସତ୍ୟତା ଅଛି ? କେବଳ ଇନ୍ଦ୍ର ନୁହନ୍ତି, ଇନ୍ଦ୍ର ଏବଂ ସୂର୍ଯ୍ୟ ଉଭୟ ଅହଲ୍ୟାଙ୍କୁ ଉପଭୋଗ କରିଥିଲେ ଏବଂ ସେମାନଙ୍କ ଔରସରୁ ଜନ୍ମ ହୋଇଥିଲେ ବାଳୀ ଓ ସୁଗ୍ରୀବ । ଏମାନେ ରାମାୟଣରେ ଜଣେ ଜଣେ ମୁଖ୍ୟପାତ୍ର । ରାମାୟଣର ବାଳୀ ବଧ କ୍ଷାତ୍ର ଧର୍ମଦୃଷ୍ଟିରୁ ନିନ୍ଦନୀୟ; କିନ୍ତୁ ରାମଚନ୍ଦ୍ରଙ୍କ ଚରିତ୍ରକୁ ବାଲ୍ମୀକି ଜଣେ ମନୁଷ୍ୟ ଚରିତ୍ର ଭାବରେ ଚିତ୍ରଣ କରିଛନ୍ତି । ରାମଚନ୍ଦ୍ରଙ୍କ ସହିତ ସୁଗ୍ରୀବ ମିତ୍ରତା କରିଛନ୍ତି; ସୀତାଙ୍କ ସନ୍ଧାନରେ ସେ ସାହାଯ୍ୟ କରିବେ ଏବଂ ସୀତାଙ୍କୁ ଉଦ୍ଧାର କରିବାରେ ତାଙ୍କ ସହିତ ରହିବେ-ଏ ପ୍ରତିଶ୍ରୁତି ସେ ତାଙ୍କୁ ଦେଇଥିଲେ । ଯୁଦ୍ଧରେ ମିତ୍ର ସଂଗ୍ରହ ଏକ ପ୍ରଧାନ କାର୍ଯ୍ୟ-କାରଣ ଏହା ସଚରାଚର ଦେଖାଯାଏ । ସେହି ଦୃଷ୍ଟିରୁ ରାମଚନ୍ଦ୍ର ବାଳୀକୁ ବଧ କରିଥିଲେ । ସୁଗ୍ରୀବଙ୍କୁ ଛାଡ଼ି ବାଳୀଙ୍କୁ ମିତ୍ର କରିଥିଲେ କ'ଣ ହୋଇଥାନ୍ତା, ତାହା ଅଲଗା କଥା; କିନ୍ତୁ ଥରେ ଜଣକ ସହିତ ମିତ୍ରତା କରି ଓ ପରେ ନିଜର ପ୍ରତିଶ୍ରୁତିକୁ ଉଲ୍ଲଂଘନ କରିଥିଲେ ତାହା ସତ୍ୟରକ୍ଷକ ରାମଚନ୍ଦ୍ରଙ୍କ ପକ୍ଷରେ ଯଥାର୍ଥ ହୋଇଥାଆନ୍ତି କି ?

ସେହିପରି ସେତୁବନ୍ଧ ପ୍ରସଙ୍ଗ । ତାହା ଥିଲା କି ନ ଥିଲା, ଏ ପର୍ଯ୍ୟନ୍ତ ମଧ୍ୟ ସେ ବିବାଦ ଲାଗି ରହିଛି; କିନ୍ତୁ ଯେଉଁ ରାମାୟଣ ଯୁଗ ଯୁଗ ଧରି କୋଟି କୋଟି ଲୋକଙ୍କ ମନରେ ଏକ ବିଶ୍ୱାସ ଜାଗ୍ରତ କରିଛି, ତାହାକୁ ଏଡ଼ି ଦେଇ ହେବ ନାହିଁ । ରାବଣ ବ୍ରାହ୍ମଣ ପୁତ୍ର; କିନ୍ତୁ ଆର୍ଯ୍ୟ ଧର୍ମର ମୂଳ ବ୍ରାହ୍ମଣର କାର୍ଯ୍ୟ ନ କରି ଅବ୍ରାହ୍ମଣର କାର୍ଯ୍ୟ କରିବା, ସମସ୍ତ ପାଣ୍ଡିତ୍ୟର ଗୁଣ ଥାଇ ଆସୁରିକ କାର୍ଯ୍ୟରେ ମତ୍ତ ରହୁଥିବା ରାବଣ ଯେ ଆର୍ଯ୍ୟ ଧର୍ମର ଶତ୍ରୁ, ତାହାହିଁ ବାଲ୍ମୀକି ରାମାୟଣରେ ଯଥାର୍ଥରେ ଚିତ୍ରିତ କରାଯାଇଛି । ସେହିପରି ପର୍ଶୁରାମ; କୁହାଯାଏ ଯେ, ସେ ଏକୋଇଶ ଥର ପୃଥିବୀକୁ ନିଃକ୍ଷତ୍ରୀୟ କରିଥିଲେ । ଏ କଥାର ସତ୍ୟତା ସମ୍ପର୍କରେ ସନ୍ଦେହ ଜାତ ସଙ୍ଗେ ସଙ୍ଗେ, ପର୍ଶୁରାମ ରାଜଧର୍ମର ଦ୍ରୋହ ଆଚରଣ କରିଛନ୍ତି କି ନାହିଁ, ତାହା ବିଚାର୍ଯ୍ୟ । ବ୍ରାହ୍ମଣ ହୋଇ ନିଜର ପିତୃ ହତ୍ୟାକାରୀଙ୍କୁ ଶାସ୍ତି ଦେବାର ଯଥାର୍ଥତା ଅଛି; ମାତ୍ର ସବୁ କ୍ଷତ୍ରିୟଙ୍କୁ ହତ୍ୟା କରିବା କେତେଦୂର ଯଥାର୍ଥ ? ଲେଖକ ଶ୍ରୀ ଦାସ ଆଲୋଚନାରେ ସେହି ପ୍ରଶ୍ନ କରିଛନ୍ତି ଏବଂ ସେହି ପ୍ରଶ୍ନ ସହିତ ଅନେକ ପାଠକ ଏକମତ ହେବେ । ପର୍ଶୁରାମଙ୍କୁ ଯୁଦ୍ଧରେ ପରାସ୍ତ କରି ରାମଚନ୍ଦ୍ର ତାଙ୍କୁ ଶାସ୍ତି ଦେଇଛନ୍ତି; ଯାହାଫଳରେ ପର୍ଶୁରାମ ମହେନ୍ଦ୍ରଗିରିରେ ଆଶ୍ରମ କରି ଅବଶିଷ୍ଟ ଜୀବନଯାପନ କରିଛନ୍ତି ଏବଂ ମହାଭାରତ ସମୟରେ ସେ କ୍ଷତ୍ରିୟ ଓ ବ୍ରାହ୍ମଣ ଉଭୟଙ୍କର ଅସ୍ତ୍ର ଗୁରୁ ହୋଇଛନ୍ତି ।

କୈକେୟୀଙ୍କୁ ବିବାହ କରିବାବେଳେ ତାଙ୍କଠାରୁ ଯେଉଁ ପୁତ୍ର ଜନ୍ମ ହେବ ତାଙ୍କୁ ଦଶରଥ ରାଜଗାଦିରେ ବସାଇବେ ବୋଲି ପ୍ରସଙ୍ଗଟି ବାଲ୍ମୀକି ରାମାୟଣର ବର୍ଣ୍ଣନା.

ନୁହେଁ । ବାଲ୍ମୀକି ବର୍ଣ୍ଣିତ ବିଷୟବସ୍ତୁ ହେଉଛି, ଦଶରଥ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବାବେଳେ ବୀର ନାରୀ କୈକେୟୀ ତାଙ୍କ ରଥରେ ସାରଥି ହୋଇ ଶତ୍ରୁମାନଙ୍କଠାରୁ ତାଙ୍କର ଜୀବନ ରକ୍ଷା କରିଥିଲେ । ସେଥିରେ ସନ୍ତୁଷ୍ଟ ହୋଇ ଦଶରଥ ତାଙ୍କୁ ଯେଉଁ ବର ଦେବାକୁ କହିଥିଲେ, ସେହି ବର ମାଗିବା ବିଷୟ ରାମାଭିଷେକ ଆୟୋଜନବେଳେ, କୈକେୟୀଙ୍କ ମନ ମଧ୍ୟରେ ନଥିଲା । ରାମଙ୍କୁ ରାଜା କରିବାରେ ସେ ଅତିଶୟ ଆନନ୍ଦ ଉତ୍ସାହରେ ଦାସୀ 'ମନ୍ଥରା'କୁ ପୁରସ୍କାର ଦେବାକୁ ଯିବାବେଳେ ମନ୍ଥରା ତା'ର କୁମନ୍ତ୍ରଣା ଦ୍ୱାରା ତାଙ୍କର ମନକୁ ପରିବର୍ତ୍ତନ କରାଇଥିଲା ଓ ଦଶରଥଙ୍କର ପୂର୍ବ ପ୍ରତିଶ୍ରୁତି କଥା ମନେପକାଇ ଦେଇ 'ଭରତ ରାଜା ହେବେ, ରାମ ବନବାସ ଯିବେ'-ଏହି ବର ମାଗିବା ପାଇଁ ସଫଳତାର ସହିତ କୈକେୟୀଙ୍କୁ ପ୍ରବର୍ତ୍ତାଇ ପାରିଲା । ତେଣୁ କୈକେୟୀ ନୁହନ୍ତି, ମନ୍ଥରା ହେଉଛି ପ୍ରକୃତ ଖଳନାୟିକା । କେହି କେହି ଆଲୋଚକ ମନ୍ଥରାକୁ ଉଚ୍ଚସ୍ଥାନ ମଧ୍ୟ ଦେଇଛନ୍ତି । ମନ୍ଥରା ନ ଥିଲେ ରାମାୟଣ ଚରିତ ସମ୍ପୂର୍ଣ୍ଣ ଅସମ୍ପନ୍ନ ରହିଥାନ୍ତା ।

କୃଷ୍ଣ ଚରିତ୍ରରେ କୃଷ୍ଣ ସ୍ୱୟଂ ଭଗବାନ ଏବଂ ଅଧର୍ମର ବିନାଶ କରି ଧର୍ମର ପ୍ରତିଷ୍ଠା ପାଇଁ ସେ ଅବତାର ଗ୍ରହଣ କରୁଛନ୍ତି ବୋଲି ସେ ଜନ୍ମକାଳରୁ ଅନୁଭବ କରିଥିଲେ । ମାତ୍ର ଶ୍ରୀରାମଚନ୍ଦ୍ର ନିଜକୁ ଭଗବାନଙ୍କ ଅବତାର ବୋଲି ବିଶ୍ୱାସ କରୁ ନ ଥିଲେ; ଯଦିଓ ସତ୍ୟ ଓ ଦର୍ମ ରକ୍ଷା ତାଙ୍କ ଜୀବନର ସଂକଳ୍ପ ବୋଲି ସେ ଗ୍ରହଣ କରି ନେଇଥିଲେ । ରାବଣ ନିହତ ହେବା ପରେ ବ୍ରହ୍ମାଙ୍କ ସହିତ ଦେବତାମାନେ ଆସି ରାମଚନ୍ଦ୍ରଙ୍କୁ ସ୍ୱୟଂ ଭଗବାନଙ୍କର ଅବତାର ବୋଲି କହିଛନ୍ତି । ଉତ୍ତରରେ ରାମଚନ୍ଦ୍ର କହିଛନ୍ତି; 'ଆମେ ତ ଦଶରଥଙ୍କ ପୁତ୍ର, କେବେ ଅବତାର ହେଲୁ ବୋଲି ଜାଣିନାହୁଁ ।'

କିପରି ଲଙ୍କା ଜୟ ପର୍ଯ୍ୟନ୍ତ ରାମଙ୍କର ଅବତାର ସମ୍ପର୍କରେ ବିସ୍ମରଣ ହୋଇଥିଲା ତାହା ଭିନ୍ନ କଥା; ସେଥିପାଇଁ ଆମକୁ ଆଧ୍ୟାତ୍ମ ରାମାୟଣକୁ ଯିବାକୁ ହେବ । ମୋଟ ଉପରେ ରାମଭକ୍ତ ଲେଖକ ଶ୍ରୀ ଦାସ ରାମାୟଣ ସମ୍ପର୍କୀୟ ବହୁ ପୁସ୍ତକ ଅଧ୍ୟୟନ କରି ତାଙ୍କର ଯେଉଁ ବିଚାର ରଖିଛନ୍ତି ତାହା ଅବଶ୍ୟ ପ୍ରଣିଧାନଯୋଗ୍ୟ । ଏଥିପାଇଁ ସେ ଆମର ଧନ୍ୟବାଦର ପାତ୍ର ।

ଜାନକୀବଲ୍ଲଭ ପଟ୍ଟନାୟକ

# ମୁଖବନ୍ଧ

ସୁଧାଂଶୁ ଶେଖର ଦାସଙ୍କର 'ସମ୍ଭାବ୍ୟ ରାମାୟଣ' ରାମାୟଣର ପୁନଃ ରଚନା ନୁହେଁ କି ରାମ ଚରିତର ପୁନର୍ବିନ୍ୟାସର ନୁହେଁ । ଯାକୁ ରାମ ଭକ୍ତ ଧାର୍ମିକଙ୍କ ଦୃଷ୍ଟିରେ ଅଧମର ରାମ ଚର୍ଚ୍ଚା ବୋଲି କୁହାଯାଇପାରେ ବା ପ୍ରଶ୍ନାକୁଳ ଆଧାତ୍ମିକ ଚିନ୍ତକଙ୍କ ଦୃଷ୍ଟିରେ ପୁରୁଷୋତ୍ତମଙ୍କ କର୍ମ ଓ ନ୍ୟାୟ ନିଷ୍ଠତା ପ୍ରତି ଏକ ମାନବୀୟ କଟାକ୍ଷ ବୋଲି କୁହାଯାଇପାରେ । ଯିଏ ଯାହା ବି ଭାବୁ ମଣିଷର ଈଶ୍ୱର କଳ୍ପନା ଯେ କବିର କଳ୍ପନା ଠାରୁ ଅଧିକ ବ୍ୟାପକ ଓ ସେଇଥି ଯୋଗୁଁ ଲେଖକ ବିପଜ୍ଜନକ ହୋଇପାରେ ଏଥିରେ ସନ୍ଦେହ ନାହିଁ । ବସ୍ତୁତଃ ଶାସ୍ତ୍ର ଯୁଗର ମାନ୍ୟତାଗୁଡ଼ିକୁ ପ୍ରଶ୍ନ କରିବା ପାଇଁ ପୁରାଣ ରଚନା ଆରମ୍ଭ ହୋଇଥିଲା । ପୌରାଣିକ ମାନ୍ୟତାଗୁଡ଼ିକୁ ପ୍ରଶ୍ନ କଲାରୁ ବସ୍ତୁବାଦୀ ଆଧୁନିକ ସାହିତ୍ୟର ବିକାଶ ହେଲା । ଶାସ୍ତ୍ରରୁ ପୁରାଣ ଓ ପୁରାଣରୁ ସାହିତ୍ୟ । ଏହିପରି ଭାବରେ ମୌଖିକ ପରମ୍ପରାର ଅବସାନ ପରେ ଲିଖିତ ଭାଷା ମଣିଷର ପ୍ରଶ୍ନାକୁଳତାକୁ ଧାରଣ କରି ଚାଲିଛି । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ପୌରାଣିକ ପାଠକମାନଙ୍କର ବିବିଧ ପୁନଃରଚନା ମାଧ୍ୟମରେ ଆମେ ସମୟର ନିରବଚ୍ଛିନ୍ନତାକୁ ନେଇ ଏକ ମାର୍ଗ ବି ପାଇଚେ । ଉଭୟ ଗଦ୍ୟ ଓ ପଦ୍ୟରେ ମହାପୁରାଣ ଓ ମହାକାବ୍ୟମାନଙ୍କର ନୂଆ ଚର୍ଚ୍ଚା ଆମର ଚିନ୍ତାର ପରିସରକୁ ଆସିଛି । ରାମାୟଣ ଓ ମହାଭାରତ ଆଧାରରେ ଅସଂଖ୍ୟ ବୈକଳ୍ପିକ ପାଠ ରଚିତ ହୋଇ ଚାଲିଛନ୍ତି । 'ସମ୍ଭାବ୍ୟ ରାମାୟଣ' ସେହି ପ୍ରବାହର ଗୋଟିଏ ଅଭିବ୍ୟକ୍ତି । ଏଥିରେ ସନ୍ନିବିଷ୍ଟ ଦଶଟି ପ୍ରସଙ୍ଗକୁ ନେଇ ଆମ ଭିତରେ ବି କିଛି ଚିନ୍ତା ଅଛି, 'ସମ୍ଭାବ୍ୟ ରାମାୟଣ' ପଢ଼ିଲା ପରେ ଲାଗୁଛି ଯେମିତି ଆମ ଭିତରୁ ଜଣେ କେହି ଆମର ଅବରୁଦ୍ଧ ଚୈତନ୍ୟ ଦ୍ୱାରରେ କରାଘାତ କରି ସ୍ମରଣ କରାଇ ଦେଉଛି ଯେ ଶ୍ରୀରାମ ବା ତାଙ୍କର ଅନୁଗାମୀଙ୍କର ଜୀବନ ଲୀଳା ମାନବୀୟ ଯୁକ୍ତିର ମାର୍ଗ ଅନୁସରଣ କରିଥିଲେ ଟିକିଏ ଅଧିକ ବିଶ୍ୱାସନୀୟ ହୋଇ ପାରିଥାଆନ୍ତା ।

ସମ୍ଭାବ୍ୟ ରାମାୟଣ ସମ୍ଭବ ହୋଇ ପାରିଥାନ୍ତା କି ନାହିଁ ଜଣା ନାହିଁ, ଏହାର ଯୁକ୍ତିର ଆଧାରରେ ମାନବ କଳ୍ପିତ ଈଶ୍ୱର ବ୍ୟାଖ୍ୟାନ କେବେ ସମାପ୍ତ ହେବ କି ନାହିଁ କହିହେବ

ନାହିଁ । କିନ୍ତୁ କହି ହେବ ଯେ ମର୍ଯ୍ୟାଦା ପୁରୁଷ ଶ୍ରୀରାମଙ୍କୁ କବି ଯେଉଁ କାମରେ ଲଗାଇଛି ସେ କାମ ଓ ସେ କର୍ମକ୍ଷେତ୍ରର ଅଧିକ ଯୁକ୍ତିଯୁକ୍ତ ମାନବୀୟ ସଂରଚନା ସମ୍ଭବ ହୋଇ ପାରିଥାନ୍ତା । କବି ବାଲ୍ମିକୀଙ୍କ ରାମାୟଣର ରଚନା କାଳ ଋଷିମାନଙ୍କ ମଧ୍ୟରେ ବୈର, ରାମ ଚରିତର ମୁଖ୍ୟ ଚରିତ୍ରମାନଙ୍କର ଆତ୍ମଚିନ୍ତନ, ପର୍ଶୁରାମଙ୍କ ସହ ମୁକାବିଲା ଓ ଭରତଙ୍କ ଭାତୃପ୍ରେମ ଏ ସବୁଥରେ ଅନ୍ଧସୀକାରର ବଳୟରୁ ବାହାରିଗଲେ ଏଭଳି ନିଷ୍କର୍ଷ ମଧ ବାହାରି ପାରେ ଯେ ମାନବ ଜୀବନରେ ଦୈବୀ ସଂସର୍ଗ ମାନବୀୟ ବ୍ୟାଖ୍ୟାରେ ଯୁକ୍ତି ରହିତ ତେଣୁ ତା'ର ସବୁ କିଛି ଗ୍ରହଣୀୟ ନୁହେଁ । ସେହିପରି ବାଳୀ, କୈକେୟୀ ଓ ରାବଣଙ୍କୁ ନେଇ ଉପସ୍ଥାପିତ ଅଣ ପ୍ରବୃତ୍ତିଗୁଡ଼ିକ ଯେ ଧର୍ମୀୟ ବ୍ୟାଖ୍ୟା ବାହାରେ ମାନବୀୟ ବ୍ୟାଖ୍ୟାରେ ସାଭାବିକ ମନେ ହୋଇ ପାରନ୍ତି, ଏ ଭଳି ସମ୍ଭାବନା ମଧ ଥାଇପାରେ ।

ରାମ ଚରିତର ଯୁକ୍ତିନିଷ୍ଠ ବିଚାର, ଭବିଷ୍ୟତରେ ବୈକଳ୍ପିକ ପୌରାଣିକତାର ଦ୍ୱାର ମଧ ଖୋଲିପାରେ । ଏହା ପାଠକଙ୍କ ଦ୍ୱାରା ଆଦୃତ ହେବ । କିଛି ନହେଲେ ବି କାହାକୁ କାହାକୁ ପୁଣି ଥରେ ମୂଳ କାହାଣୀକୁ ପଢ଼ିବାକୁ ପ୍ରେରିତ କରିବ, ଏତିକି ଆଶା କରିବା ଆପାତତଃ ଯଥେଷ୍ଟ ।

ବାଗର୍ଥ

ରାମ ନବମୀ, ୨୦୧୪ — ହରପ୍ରସାଦ ଦାସ

# ଏ ପୁସ୍ତକ କାହିଁକିଂ

ପ୍ରଭୁ ଶ୍ରୀରାମଙ୍କ ଧରାବତରଣ ନେଇ ସନ୍ଦେହ ପ୍ରକଟ କରିବା ଏ ପୁସ୍ତକର ଉଦ୍ଦେଶ୍ୟ ନୁହେଁ । ମାତ୍ର ରାମ ଚରିତ ଗତ କେତେ ହଜାର ବର୍ଷ ମଧ୍ୟରେ ଅନେକ ବ୍ୟାଖ୍ୟାକାରଙ୍କ କଲମରେ ବାରମ୍ବାର ଅତିରଞ୍ଜିତ ହୋଇ ବର୍ଣ୍ଣିତ ହୋଇଛି ଓ ଅନେକ କ୍ଷେତ୍ରରେ ପରସ୍ପର ମେଳ ନଖାଉଥିବା ଏହି ବ୍ୟାଖ୍ୟା ଅନୁରକ୍ତ ପାଠକ ମନରେ ଭ୍ରମ ସୃଷ୍ଟି କରୁଛି । ଏହି ଭିନ୍ନ ଭିନ୍ନ ବ୍ୟାଖ୍ୟାକାରଙ୍କ ବାହୁଲ୍ୟ ବଚନ ମଧ୍ୟରୁ ସମ୍ଭାବ୍ୟ ଜୀବନ ଗାଥାଟି ଖୋଜିବାର ପ୍ରୟାସରୁ ଏ ପୁସ୍ତକର ଜନ୍ମ ।

ଶ୍ରୀ ରାମଚନ୍ଦ୍ର ଅଯୋଧ୍ୟା ନୃପତି ଦଶରଥଙ୍କ ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ବିଶ୍ୱାମିତ୍ରଙ୍କ ସହ ଯାଇ ତାଙ୍କ ଯଜ୍ଞ ରକ୍ଷା କରିଥିଲେ । ଶିବଧନୁ ଭାଙ୍ଗି ସୀତା ବିବାହ କରିଥିଲେ । ପିତୃ ସତ୍ୟ ପାଳନ କରି ଚଉଦ ବର୍ଷ ବନବାସ କରିଥିଲେ । ଦଣ୍ଡକ ବନରେ ଅଧିକାଂଶ ସମୟ କଟାଇଥିଲେ । କିଷ୍କିନ୍ଧା ଯାଇଥିଲେ, ସୁଗ୍ରୀବ ସହ ମିତ୍ରତା କରିଥିଲେ । ବାଳୀ ବଧ କରିଥିଲେ ଓ ଲଙ୍କା ଯାଇ ରାବଣ ସଂହାର କରି ସୀତାଙ୍କୁ ଉଦ୍ଧାର କରିଥିଲେ । ବିଭୀଷଣଙ୍କୁ ଲଙ୍କା ରାଜଗାଦୀ ଦେଇଥିଲେ । ଏହା ହିଁ ମୁଖ୍ୟ ଘଟଣା । ଏହାକୁ ନେଇ ରାମ ଚରିତ । ମିଥିଳା ହେଉ, ଦଣ୍ଡକାରଣ୍ୟ ହେଉ, ଚିତ୍ରକୂଟ ବା କିଷ୍କିନ୍ଧା ହେଉ ବା ଲଙ୍କା, ଏ ସବୁ ରାମଙ୍କ ଯାତ୍ରା ପଥରେ ଆସିଛି ଓ ରାମ ଗୋଟିଏ ନିର୍ଦ୍ଦିଷ୍ଟ ପଥ ଦେଇ ଯାତ୍ରା କରିଛନ୍ତି । ତେଣୁ ରାମଙ୍କ ଯାତ୍ରା ପଥ ପାଞ୍ଚ ପ୍ରକାର ହେବା ସମ୍ଭବ ନୁହେଁ । ମାତ୍ର ଏ ନିର୍ଦ୍ଦିଷ୍ଟ ଯାତ୍ରା ପଥଟି କ'ଣ ? କେଉଁ କେଉଁ ସ୍ଥାନରେ ଶ୍ରୀରାମ ଓ ସୀତାଙ୍କର ପାଦ ପଡ଼ିଥିଲା ? ଏହି ସବୁର ନିରୂପଣ ପ୍ରଚେଷ୍ଟାରୁ ଏ ପୁସ୍ତକ ।

ଏହା ବ୍ୟତୀତ ଶ୍ରୀରାମଙ୍କ ଜୀବନର ଯେଉଁ ମୁଖ୍ୟ ଘଟଣାଗୁଡ଼ିକ ଘଟିଛି, ଜୀବନ ଯାତ୍ରା ପଥରେ ଯେଉଁ ଚରିତ୍ରମାନଙ୍କ ସହିତ, ଯେଉଁ ଭିନ୍ନ ଭିନ୍ନ ପରମ୍ପରା ଓ ସଭ୍ୟତା ସହିତ ଯୋଗାଯୋଗ, ସମ୍ପର୍କ ଓ ସଂଘର୍ଷ ହୋଇଛି, ସେ ସବୁ ବିଭିନ୍ନ ଲେଖକଙ୍କର କାଳ୍ପନିକ ବର୍ଣ୍ଣନାରେ ବିଭିନ୍ନ ପ୍ରକାରେ ଚିତ୍ରିତ ହୋଇଛି । ଅନେକ କ୍ଷେତ୍ରରେ କେବଳ ଚାଞ୍ଚଲ୍ୟ ସୃଷ୍ଟି ଓ ରୋଚକ କରିବା ଉଦ୍ଦେଶ୍ୟରେ ଅନେକ ଅବାନ୍ତର, ଅପ୍ରାସଙ୍ଗିକ ବିଷୟ ବସ୍ତୁ ଓ

ଘଟଣାମାନ ଯୋଡ଼ି ଦିଆ ଯାଇଛି । ଏସବୁ ପାଠ କଲେ ସାଧାରଣ ପାଠକ ମନରେ ବିଭ୍ରାନ୍ତି ସୃଷ୍ଟି ହୁଏ ଓ ତାହା ହେବା ସ୍ୱାଭାବିକ୍ ମଧ୍ୟ । ସେହି ସବୁ କାଳ୍ପନିକ ବାହୁଲ୍ୟତାର ପାହାଡ଼ ତଳେ ପ୍ରକୃତ ରାମ ଚରିତଟି ହଜିଯିବା ପରି ମନେହୁଏ । ଗତ ପାଞ୍ଚ ହଜାର ବର୍ଷ ଧରି ଜମା ହୋଇ ଯାଇଥିବା ଅଳନ୍ଧୁ ଆଡ଼େଇ, ପ୍ରକୃତ ରାମ ଚରିତଟି ଖୋଜି ବାହାର କରିବାର ପ୍ରୟାସରୁ ହିଁ ଏ ପୁସ୍ତକ ।

ରାମ ଚରିତ ମୋ ପାଇଁ ଏକ ପବିତ୍ର ଗ୍ରନ୍ଥ । ତା'ର ସତ୍ୟାସତ୍ୟ ଅନୁସନ୍ଧାନ କରିବାର ଧୃଷ୍ଟତା ମୋର ନାହିଁ । ମୋର ମନେ ହୁଏ ରାମାୟଣ ବା ରାମ ଚରିତ କେବଳ ଗୋଟିଏ କାବ୍ୟ ନୁହେଁ ଏହା ଗୋଟିଏ ସାମାଜିକ ଇତିହାସ । ସେ ସମୟର ଧର୍ମ ସଙ୍କଟ, ଆର୍ଯ୍ୟ-ଅନାର୍ଯ୍ୟ ସଂସ୍କୃତି ମଧ୍ୟରେ ସଂଘର୍ଷ ତଥା ଆର୍ଯ୍ୟ ଧର୍ମ ପ୍ରସାର ଓ ସୁରକ୍ଷାର କାହାଣୀ ଓ ସେ ସମୟର ଚାଲିଚଳଣ, ପରମ୍ପରା, ବିଶ୍ୱାସ, ଶାସନ ଓ ସମାଜ ବ୍ୟବସ୍ଥାର ଏକ ବିଶ୍ୱସ୍ତ ବର୍ଣ୍ଣନା ।

ଅନେକ ଲେଖକ ବିଭିନ୍ନ ସମୟରେ ରାମ ଚରିତ ବର୍ଣ୍ଣନା କରିଛନ୍ତି । ସେମାନଙ୍କ କଲମ କଳ୍ପନାରେ ଭାସିଯାଇ ରାମାୟଣର ଅନେକ ଚରିତ୍ର ଓ ଘଟଣାକୁ କିମ୍ଭୁତ କିମାକାର ରୂପ ଦେଇଛି । ସେ ସବୁରେ ଭଳି ନଯାଇ, ମୂଳ ଚରିତ୍ରର କ୍ରିୟା କର୍ମକୁ ଯଦି ଆମେ ନିରପେକ୍ଷ ଭାବେ ଦେଖିବା, ତେବେ ରାମାୟଣର ତଥା ରାମ ଚରିତ୍ରର ମହନୀୟତା ଓ ସେ ଯୁଗ ପାଇଁ ରାମ ଜନ୍ମର ଉପାଦେୟତା ଓ ସଫଳତା ଆମେ ହୃଦୟଙ୍ଗମ କରିପାରିବା । ବୋଧହୁଏ ସେଇଥି ପାଇଁ ଶ୍ରୀରାମ କେବଳ ଶ୍ରୀରାମ ନୁହନ୍ତି, ସେ ପୁରୁଷୋତ୍ତମ । ମର୍ଯ୍ୟାଦା ପୁରୁଷ ଶ୍ରୀରାମ । ଯୁଗର ସେଇ ଘଡ଼ିସନ୍ଧି ମୁହୂର୍ତ୍ତରେ ରାମଙ୍କ ଜନ୍ମ ଓ ଜୀବନର ଉପାଦେୟତା ହିଁ ତାଙ୍କୁ ଅବତାର ପୁରୁଷର ମର୍ଯ୍ୟାଦା ଓ ମାନ୍ୟତା ଦେଇଛି । ସେହି ସତ୍ୟକୁ ଖୋଜିବାର ପ୍ରୟାସରୁ ଏ ପୁସ୍ତକ ।

ରାମାୟଣ ବା ରାମ ଚରିତର କୌଣସି ଚରିତ୍ରକୁ ନେଇ କିଛି ସମାଲୋଚନା କରିବା ଏ ପୁସ୍ତକର ଉଦ୍ଦେଶ୍ୟ ନୁହେଁ । କାହାର ଧାର୍ମିକ ଭାବନା ପ୍ରତି ସାମାନ୍ୟତମ ଆଘାତ ପହଞ୍ଚାଇବା ଏ ପୁସ୍ତକର ଉଦ୍ଦେଶ୍ୟ ନୁହେଁ । ମାତ୍ର କ'ଣ ଘଟିଥିବା ସମ୍ଭବ, ତାହାହିଁ ପୁସ୍ତକରେ ଦେଖାଇବାକୁ ପ୍ରଚେଷ୍ଟା କରାଯାଇଛି । ଏ ପୁସ୍ତକରେ ରାମଙ୍କ ଜୀବନର କେତୋଟି ମାତ୍ର ମୁଖ୍ୟ ଘଟଣାର ଆଲୋଚନା କରାଯାଇଛି । ଏହା ଏକ ସମ୍ପୂର୍ଣ୍ଣ ରାମ ଚରିତ ନୁହେଁ । ଏ ନିର୍ଣ୍ଣୟ ମୋ ନିଜର । ପାଠକ ତାକୁ ଗ୍ରହଣ କରି ପାରନ୍ତି ବା ନକରି ପାରନ୍ତି ।

ପବିତ୍ର ଗ୍ରନ୍ଥ ରାମାୟଣର ଚରିତ୍ରମାନଙ୍କୁ ଖୋଜିବା ଭିତରେ ଯଦି କେଉଁ ପାଠକ ମନରେ କିଛି କଷ୍ଟ ପହଞ୍ଚାଇଥାଏ ତାହା ଅନିଚ୍ଛାକୃତ । ସେଥିପାଇଁ ମୁଁ କ୍ଷମା ମାଗି ନେଉଛି ।

ପ୍ରଭୁ ସଙ୍କଟ ମୋଚନ ହନୁମାନଙ୍କ ଆଶୀର୍ବାଦ ଭିକ୍ଷା କରି ଏ ପୁସ୍ତକଟି ଆରମ୍ଭ କରିଥିଲି । ଶାରୀରିକ ଅସୁସ୍ଥତା ସତ୍ତ୍ୱେ ଏ କାର୍ଯ୍ୟଟି ସମ୍ପୂର୍ଣ୍ଣ କରିପାରିଥିବାରୁ ପ୍ରଭୁ ସଙ୍କଟ ମୋଚନଙ୍କ ପାଦ ତଳେ ପ୍ରଣାମ କରୁଛି ।

ସୁଧାଂଶୁ ଶେଖର ଦାସ

# ମହର୍ଷି ବାଲ୍ମୀକି ଓ ରାମାୟଣ ରଚନାକାଳ

ମୂଳ ରାମାୟଣ ବାଲ୍ମୀକିଙ୍କ ରଚନା । ରାମାୟଣ ରଚନାର ମୂଳରେ ଦେବର୍ଷି ନାରଦଙ୍କ ପ୍ରେରଣା ତଥା ବ୍ରହ୍ମାଙ୍କ ଆଶୀର୍ବାଦ ମହର୍ଷିଙ୍କୁ ଏ ଦିଗରେ ଆଗେଇ ନେଇଛି ।

ଏକଦା ମହର୍ଷି ବାଲ୍ମୀକି ଅତ୍ୟନ୍ତ ଚିନ୍ତାଗ୍ରସ୍ତ ଓ ବିମର୍ଷ ଥିବା ସମୟରେ ନାରଦ ଆଶ୍ରମକୁ ଆସିଛନ୍ତି ଓ ମହର୍ଷିଙ୍କୁ ବିଷାଦର କାରଣ ପଚାରିଛନ୍ତି । ମହର୍ଷି ବାଲ୍ମୀକି ନାରଦଙ୍କୁ ପଚାରିଛନ୍ତି ଯେ ଏ ଧରାରେ କ'ଣ କେହି ଜଣେ ସର୍ବଗୁଣସଂପନ୍ନ ପୁରୁଷ ଅଛି ଯିଏ ଏକାଧାରରରେ ବୀର, ଧନୁର୍ଦ୍ଧର, ନ୍ୟାୟବନ୍ତ, ସଚ୍ଚରିତ୍ର, ବିଦ୍ୱାନ, ସତ୍ୟବ୍ରତ, ସୁଦର୍ଶନ, ସୁଶାସକ, ତେଜଦୀପ୍ତ, ସଂଯତ, ଧାର୍ମିକ, ଶୁଦ୍ଧ ତଥା ସ୍ୱଚ୍ଛ ?

ମହର୍ଷି ବାଲ୍ମୀକି ଏପରି ଏକ ବ୍ୟକ୍ତିତ୍ୱର ଅନ୍ୱେଷଣ ନେଇ କାହିଁକି ଚିନ୍ତିତ ବା ବିମର୍ଷ ତାହା ନାରଦ ପଚାରି ନାହାନ୍ତି ବରଂ ମହର୍ଷିଙ୍କର ସନ୍ଦେହ ମୋଚନ ପାଇଁ ଅଯୋଧ୍ୟାର ରାଜା ରାମଚନ୍ଦ୍ର ଏକାଧାରରେ ଏସବୁର ଆଧାର ବୋଲି ବତାଇଛନ୍ତି ଏବଂ ରାମଙ୍କ କାହାଣୀ ମହର୍ଷିଙ୍କ ନିକଟରେ ବର୍ଣ୍ଣନା କରିଛନ୍ତି । ବ୍ରହ୍ମାଙ୍କ ଆଶୀର୍ବାଦ ପ୍ରାପ୍ତ ହୋଇ ଏଇ କାହାଣୀକୁ ଶ୍ଳୋକ ଆକାରରେ ରଚନା କରି ବାଲ୍ମୀକି ରାମାୟଣ ମହାକାବ୍ୟ ସୃଷ୍ଟି କରିଛନ୍ତି ।

ନାରଦ-ବାଲ୍ମୀକି ଆଳାପରୁ ମନେହୁଏ ଯେଉଁ ସମୟରେ ଏ ଆଳାପ ଘଟିଛି, ସେହି ସମୟରେ ହିଁ ରାମଚନ୍ଦ୍ର ଅଯୋଧ୍ୟାରେ ରାଜୁତି କରୁଥିଲେ । ତା'ର ଅର୍ଥ ରାମ ବନବାସରୁ ଫେରି ଅଯୋଧ୍ୟାରେ ଅଭିଷିକ୍ତ ହୋଇ ରାଜୁତି କରିବା ସମୟରେ ହିଁ ନାରଦ-ବାଲ୍ମିକୀ ସାକ୍ଷାତ ହୋଇଛି ଓ ଏ ଆଳାପ ଘଟିଛି । ଆଉ କେତେକ ପୁସ୍ତକରେ ଏହି ନାରଦ-ବାଲ୍ମୀକି ସାକ୍ଷାତ ଓ ଆଳାପ ରାମଚନ୍ଦ୍ରର ତଥା ରାଜୁତିର ଅନେକ ପରେ ଘଟିଥିବା ପରି ବର୍ଣ୍ଣିତ ହୋଇଛି ।

ଏହି କାଳ ନିର୍ଣ୍ଣୟ ନେଇ ମନରେ କେତେକ ପ୍ରଶ୍ନ ଉଠେ । ସମସାମୟିକ ଘଟଣା ତଥା ପାରିପାର୍ଶ୍ୱିକ ଅବସ୍ଥାକୁ ବିଚାରକୁ ନେଲେ ଘଟଣାର ଦୁଇଟିଯାକ କାଳ ନିର୍ଣ୍ଣୟ,

ବର୍ତ୍ତମାନ କାଳ ଓ ଅତୀତ କାଳ ଭ୍ରମପୂର୍ଣ୍ଣ, ଅସଂଗତ ମନେହୁଏ । ମୋ ବିଚାରରେ ରାମ ଚରିତର ସଂଭାବ୍ୟ କାଳ ହେଉଛି ନାରଦ-ବାଲ୍ମୀକି ଆଳାପର ଭବିଷ୍ୟତ କାଳର ଘଟଣା । ଦେବର୍ଷି-ବାଲ୍ମୀକି କଥୋପକଥନର କେତେ ବର୍ଷ ପରେ ରାମଙ୍କ ଜନ୍ମ ହୋଇଛି ତାହା କଳନା କରିବା ମୋର ଉଦ୍ଦେଶ୍ୟ ନୁହେଁ ବା ମୋ ଦ୍ୱାରା ସମ୍ଭବ ନୁହେଁ । ମାତ୍ର ଭବିଷ୍ୟତରେ ଏପରି ଜଣେ ସୁଦର୍ଶନ, ସର୍ବଗୁଣ ସମ୍ପନ୍ନ, ସୁଶାସକ, ଧାର୍ମିକ ବିଚାରବନ୍ତ ଏ ଧରାରେ ଜନ୍ମ ନେବେ ତାହାହିଁ ନାରଦ ଭବିଷ୍ୟତ ବାଣୀ କରି ବାଲ୍ମୀକିଙ୍କ ସନ୍ଦେହ ମୋଚନ କରିଛନ୍ତି ।

ବର୍ତ୍ତମାନ ଦୁଇଟି ପ୍ରଶ୍ନ ମନକୁ ଆସୁଛି ।

ଏକ, ରାମ ଚରିତ, ନାରଦ ବାଲ୍ମୀକି ଆଳାପ ସମୟର ବର୍ତ୍ତମାନ ବା ଅତୀତ କାଳର ଘଟଣା କାହିଁକି ନୁହେଁ ?

ଦୁଇ, ବାଲ୍ମୀକିଙ୍କ ଏ ବିମର୍ଷତା କ'ଣ ପାଇଁ ଓ ଏହା ଦୂର କରିବା ପାଇଁ ନାରଦଙ୍କୁ ଭବିଷ୍ୟତ ବାଣୀ କରିବାର ଆବଶ୍ୟକତା କାହିଁକି ପଡ଼ିଛି ?

ପ୍ରଥମ ପ୍ରଶ୍ନର ବିଚାର କରାଯାଉ:

ବାଲ୍ମୀକି ହେଉଛନ୍ତି ବରୁଣ ପୁତ୍ର । କୁ-ସଙ୍ଗ ଦୋଷରୁ ହେଉ ବା ଅନ୍ୟ ଏକ ବା ଅନେକ କାରଣରୁ ହେଉ ସେ ଘରୁ ଚାଲିଯାଇ ଦସ୍ୟୁମେଳରେ ବଣରେ ରହିଛନ୍ତି ଓ ଦସ୍ୟୁବୃତ୍ତିକୁ ଜୀବିକା ହିସାବରେ ଗ୍ରହଣ କରି ନେଇଛନ୍ତି । ଏକଦା ସେ କିଛି ଋଷିଙ୍କୁ ଜଙ୍ଗଲରେ ଆକ୍ରମଣ କରିବା ଅବସରରେ ଋଷିମାନେ ତାଙ୍କୁ ଶାରୀରିକ ପ୍ରତିରୋଧ ନକରି, କେତେକ ପ୍ରଶ୍ନ କରିଛନ୍ତି । ପ୍ରଶ୍ନ ହେଉଛି ତାଙ୍କର ବର୍ତ୍ତମାନର ଜୀବିକା ନିର୍ବାହ ପାଇଁ କରୁଥିବା କର୍ମ ଓ ତା'ର ଅନ୍ତିମ ପରିଣାମ । ଏହି କଥୋପକଥନରେ ତାଙ୍କର ଜ୍ଞାନ ଉଦୟ ଘଟିଛି । ସେ ତାଙ୍କ କର୍ମର ଭୟାବହ ପରିଣାମ କଳ୍ପନା କରି ମ୍ରିୟମାଣ ହୋଇପଡ଼ିଛନ୍ତି ଓ ଉଦ୍ଧାର ଉପାୟ ପାଇଁ ଋଷିଙ୍କୁ ବିନତି କରିଛନ୍ତି । ଋଷିମାନେ ତାଙ୍କୁ ଏ ପାପରୁ ମୁକ୍ତି ପାଇଁ ରାମ ନାମ ଜପ କରିବାକୁ କହିଛନ୍ତି ।

ସେ ମହାଶୟ ଆପଣାର କୃତକର୍ମ ପାଇଁ ଏତେ ଦୂର ଅନୁତପ୍ତ ହୋଇପଡ଼ିଛନ୍ତି ଯେ ଋଷିଙ୍କ ପରାମର୍ଶ ଅନୁସାରେ ଏକ ଆସନରେ ବସି ରାମ ନାମ ଜପ ଆରମ୍ଭ କରିଛନ୍ତି । ଏକାଗ୍ର ଚିତ୍ତରେ ଏହି ନାମ ଜପ କରି ସେ ଖାଇବା, ପିଇବା, ଶୋଇବା ଭୁଲି ଯାଇଛନ୍ତି । ବର୍ଷ ବର୍ଷ ଧରି ଏକ ଆସନରେ ନିଶ୍ଚଳ ହୋଇ ବସି ରହି ନାମ ଜପ କରି ଚାଲିଛନ୍ତି ଓ ଏପରି ହୋଇଛି ଯେ ଉଈମାନେ ତାଙ୍କୁ ନିର୍ଜୀବ ବସ୍ତୁ ମନେ କରି ତାଙ୍କ ଉପରେ ଘର କରିପକାଇଛନ୍ତି । ସେ ଗୋଟିଏ ଉଈହୁଙ୍କା ପାଲଟି ଯାଇଛନ୍ତି । ସେଇ ନାମ ଜପ କରି ପରିଶେଷରେ ସେ ପ୍ରଭୁ କୃପା ଲାଭ କରିଛନ୍ତି ଓ କୃତକର୍ମରୁ ମୁକୁଳି ମହର୍ଷି ହୋଇଛନ୍ତି । ଉଈହୁଙ୍କା ହୋଇଯାଇଥିବା ଦୃଷ୍ଟିରୁ ସେ ମହର୍ଷି ବାଲ୍ମୀକି ନାମରେ ପରିଚିତ ହୋଇଛନ୍ତି ।

ଏ ସବୁ ଆମେ ଆଗରୁ ପଢ଼ିଛୁ, ଶୁଣିଛୁ । ମାତ୍ର ବର୍ତ୍ତମାନ ପ୍ରଶ୍ନ ଉଠୁଛି ଯଦି ରାମ ନାମ ଜପ କରି ଏତେ ବଡ ପାପରୁ ମୁକ୍ତି ପାଇ ସେ ମହର୍ଷିରେ ପରିଣତ ହୋଇପାରିଲେ, ତେବେ ସେ ରାମ ନାମର ମାହାତ୍ମ୍ୟ ନେଇ ତାଙ୍କ ମନରେ କୌତୂହଳ ଆସିବା ସ୍ୱାଭାବିକ । ସେ ରାମ କିଏ ଯାହାର ନାମ ଜପରେ ମୁକ୍ତି ମିଳୁଛି ? ଏହି ଆଗ୍ରହରୁ ରାମଙ୍କ ବ୍ୟାପାରରେ ଅଧିକ ଜାଣିବା ପାଇଁ ସେ ଚେଷ୍ଟା କରିବା କଥା । ତାହା ସେ ତପୋବନରେ ଜାଣି ପାରିଥାନ୍ତେ ବା ଅନ୍ୟାନ୍ୟ ମୁନି ଋଷିଙ୍କଠାରୁ ଜାଣି ପାରିଥାନ୍ତେ । (ଅନ୍ୟାନ୍ୟ ଅନେକ ମୁନି ଋଷି ରାମଙ୍କ ବିଷୟରେ ସେ ସମୟରେ ଜାଣିଥିବା ପରି ମନେହୁଏ । ତା ନହୋଇଥିଲେ, ଆକ୍ରମଣର ଶିକାର ହୋଇଥିବା ଋଷିମାନେ ତାଙ୍କୁ ରାମ ନାମ ଜପ ପାଇଁ ପରାମର୍ଶ ଦେଇ ଥାଆନ୍ତେ କିପରି ?)

ଯଦି ଆମେ ଗ୍ରହଣ କରିବା ଯେ ଯେଉଁ ରାମ ନାମ ଜପ କରି ଦସ୍ୟୁ ରତ୍ନାକର ମୁକ୍ତି ପ୍ରାପ୍ତ ହୋଇ ମହର୍ଷି ବାଲ୍ମୀକି ହୋଇପାରିଲେ ସେ ରାମ ନାମର ଆଧାର ହେଉଛନ୍ତି ଦଶରଥ ପୁତ୍ର ଶ୍ରୀରାମ, ତେବେ ଆମେ ଏହା ମଧ୍ୟ ଗ୍ରହଣ କରିବାକୁ ବାଧ୍ୟ ଯେ ରାମ ଚରିତ, ନାରଦ-ବାଲ୍ମୀକି ଆଳାପର ଅନେକ ପୂର୍ବରୁ ସଂଘଟିତ ହୋଇସାରିଛି । କାରଣ ମଧ୍ୟ ସ୍ପଷ୍ଟ । କାରଣ ଦସ୍ୟୁ ରତ୍ନାକର ଜପ ଆରମ୍ଭ କରିବା ବେଳକୁ ରାମ ଦେବତ୍ୱ ପାଇ ସାରିଲେଣି ଏବଂ ତାଙ୍କ ନାମ ଜପ କରି ମୁକ୍ତି ମିଳିବା ସମ୍ଭବ ହେଲାଣି । ମାତ୍ର ଏହି ସିଦ୍ଧାନ୍ତ ଉପରେ ରହିଛି ପ୍ରଶ୍ନବାଚୀ ଓ ତାହା ଏହି ପ୍ରବନ୍ଧରେ ଅନ୍ୟତ୍ର ଆଲୋଚିତ । ଆଉ ଗୋଟିଏ ସଂଶୟ ମନକୁ ଆସୁଛି । ରତ୍ନାକରଙ୍କୁ ଯେଉଁ ରାମ ନାମ ଜପ ପାଇଁ ପରାମର୍ଶ ଦିଆଗଲା, ସେ ରାମ ନାମର ଆଧାର ଦଶରଥ ପୁତ୍ର ଶ୍ରୀରାମ ନହୋଇ ପାରିଥାନ୍ତି । ଆଉ ଟିକେ ବିସ୍ତାରିତ ଆଲୋଚନା ଆବଶ୍ୟକ ।

ବାଲ୍ମିକୀ ବରୁଣ ପୁତ୍ର । ବ୍ରାହ୍ମଣ କୁଳରେ ଜନ୍ମ । ପିତୃଦତ୍ତ ନାମ ଥିଲା ପ୍ରଚେତ । (ଆଧ୍ୟାତ୍ମ ରାମାୟଣ) ସଙ୍ଗଦୋଷରୁ ଦସ୍ୟୁବୃତ୍ତି ତଥା ଜୀବଜନ୍ତୁ ଶିକାର କରି ପରିବାର ପୋଷଣ କରୁଛନ୍ତି । ସାତଜଣ ଋଷିଙ୍କୁ ଯେତେବେଳେ ଆକ୍ରମଣ କରିଛନ୍ତି, ସେତେବେଳେ ଋଷିମାନଙ୍କର ବିପଦ ସାମ୍ନାରେ ନିର୍ବିକାର ଭାବ ତାଙ୍କୁ ବିସ୍ମିତ ତଥା ପ୍ରଭାବିତ କରିଛି । ସେଇଠୁ ଆରମ୍ଭ ହୋଇଛି ପରିବର୍ତ୍ତନର ମୂଳଦୁଆ । ଋଷିଗଣ ତାଙ୍କୁ ରାମନାମ ଜପ କରିବାକୁ ପରାମର୍ଶ ଦେଇଛନ୍ତି । ମାତ୍ର ସାଧାରଣ ବିଶ୍ୱାସ ଅନୁସାରେ ଏ ରାମ ନାମ ଆଧାର ଦଶରଥ ପୁତ୍ର ଶ୍ରୀରାମ । ମାତ୍ର ଏହା ମଧ୍ୟ ସମ୍ଭବ ଯେ ଋଷିମାନେ ତାଙ୍କୁ ବିଷ୍ଣୁ ନାମ ଜପ ପାଇଁ ପରାମର୍ଶ ଦେଇପାରିଥାନ୍ତି । ବିଷ୍ଣୁଙ୍କର ଅନ୍ୟ ଗୋଟିଏ ନାମ ମଧ୍ୟ ରାମ । ଏଠାରେ ମନେ ରଖିବାକୁ ହେବ ଯେ ବାଲ୍ମୀକି ବରୁଣ ପୁତ୍ର ଓ ପଥଭ୍ରଷ୍ଟ । ବରୁଣ ପୁତ୍ର ଉପରେ ଅସନ୍ତୁଷ୍ଟ । ଜନ୍ମଦାତା ପିତାଙ୍କୁ ଅସନ୍ତୁଷ୍ଟ କରି କେହି ମୁକ୍ତି ପାଇବା ଯେହେତୁ ସମ୍ଭବ ନୁହେଁ, ଋଷିମାନେ ରତ୍ନାକର (ବାଲ୍ମୀକି)ଙ୍କୁ ପିତାଙ୍କ ନାମ ଜପ କରିବାକୁ ପରାମର୍ଶ ଦେଇଛନ୍ତି । ବରୁଣଙ୍କର ଆଉ ଏକ ନାମ ମଧ୍ୟ ରାମ । ପିତାଙ୍କୁ ସନ୍ତୁଷ୍ଟ

କରିପାରିଲେ, ତାଙ୍କ ଆଶୀର୍ବାଦ ପାଇପାରିଲେ ମୁକ୍ତି ସମ୍ଭବ । ଏହି ବାର୍ତ୍ତା ଉପରେ ଭରସା କରି ରତ୍ନାକର ହଜାର ବର୍ଷ ଧରି ଏକ ଆସନରେ ବସି ରାମ ନାମ ଜପ କରିଛନ୍ତି ଓ ମୁକ୍ତି ପାଇ ବାଲ୍ମୀକି ନାମରେ ପରିଚିତ ହୋଇଛନ୍ତି । ଏହି ଯୁକ୍ତି ଅଧିକ ସମ୍ଭବ ମନେହୁଏ । ତେଣୁ ରାମ ନାମ ଜପକୁ ଆଧାର କରି ଶ୍ରୀରାମ ଜନ୍ମର କାଳ ନିରୂପଣ ତ୍ରୁଟୀପୂର୍ଣ୍ଣ ।

ପିତୃ ସତ୍ୟ ପାଳି ରାମ ବନବାସରେ ଯିବା ସମୟରେ ଭରଦ୍ୱାଜଙ୍କ ଆଶ୍ରମରେ ଅତିଥି ହୋଇଥିଲେ । ସେଠାରୁ ବିଦାୟ ନେବା ସମୟରେ ମହର୍ଷିଙ୍କର ପରାମର୍ଶକ୍ରମେ ଚିତ୍ରକୂଟ ଯାତ୍ରା କରିଛନ୍ତି । ସେଠାରେ ପ୍ରଥମେ ବାଲ୍ମୀକିଙ୍କ ଆଶ୍ରମରେ ଅତିଥି ହୋଇଛନ୍ତି । ପରେ ନିଜର କୁଟୀର ନିର୍ମାଣ କରି ଚିତ୍ରକୂଟରେ କିଛି ମାସ ରହିଛନ୍ତି ।

ଯଦି ରାମଙ୍କ ଜନ୍ମ/ଆବିର୍ଭାବ ବାଲ୍ମୀକିଙ୍କର ବହୁତ ପୂର୍ବରୁ ତେବେ ସେ ବାଲ୍ମୀକି ଆଶ୍ରମରେ ଅତିଥି ହେଲେ କିପରି? ଯଦି ରାମ ଘଟଣା ବର୍ତ୍ତମାନ କାଳର ଘଟଣା, ବାଲ୍ମୀକିଙ୍କ ସମସାମୟିକ ଘଟଣା ତେବେ ରାମଙ୍କ ବିଷୟରେ ଜାଣିବା ପାଇଁ ନାରଦଙ୍କୁ ଅପେକ୍ଷାର ଆବଶ୍ୟକତା ନଥିଲା । ରାମଙ୍କ ଜୀବନର ଆଉ କେତେକ ଘଟଣାକୁ ଏଠାରେ ବିଚାର କରିବା ପ୍ରାସଙ୍ଗିକ ହେବ ।

ରାମ ବଶିଷ୍ଠଙ୍କ ଆଶ୍ରମରେ ଚଉଦ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଶିକ୍ଷା କରିଛନ୍ତି । ତା'ପରେ ପାଖାପାଖି ଦୁଇ ବର୍ଷ ପ୍ରତ୍ୟକ୍ଷ ଜ୍ଞାନ ଆହରଣ ପାଇଁ ଭାରତର ଅନେକ ତୀର୍ଥ, ମୁନିଋଷି ଆଶ୍ରମ, ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଦଶରଥଙ୍କ ଅନୁମତି ତଥା ବଶିଷ୍ଠଙ୍କ ଆଶୀର୍ବାଦ ନେଇ, ପରିଭ୍ରମଣ କରିଛନ୍ତି । ସେ ସମୟରେ ବିଭିନ୍ନ ତୀର୍ଥସ୍ଥଳୀ ଓ ମୁନିଋଷିଙ୍କ ଆଶ୍ରମରେ ରାତ୍ରୀ କଟାଇଥିବେ । ମୁନିଋଷିଙ୍କ ସହ ଦେଖା କରି ସେମାନଙ୍କର ଆଶୀର୍ବାଦ ନେଇଥିବେ । ସେ ଦୃଷ୍ଟିରୁ ଅନେକ ମୁନିଋଷି ରାମଙ୍କ ବିଷୟରେ ଜ୍ଞାତ ଥିବେ । କେତେକଙ୍କର ରାମଙ୍କ ସହ ସାକ୍ଷାତର ପ୍ରତ୍ୟକ୍ଷ ଅନୁଭୂତି ଥିବ ଓ ଆଉ କେତେକ ରାମଙ୍କ ବ୍ୟାପାରରେ ଜ୍ଞାତ ଥିବେ । ସେ ଦୃଷ୍ଟିରୁ ଏସବୁ ମହର୍ଷି ବାଲ୍ମୀକିଙ୍କୁ ଅଜଣା ରହିଲା କିପରି ?

ଯେଉଁ ସମୟର ଚର୍ଚ୍ଚା କରାଯାଇଛି, ସେ ସମୟରେ ମୁନିଋଷିମାନେ ପରସ୍ପର ସହିତ ବା ଶିଷ୍ୟ ଗହଣରେ ତୀର୍ଥ ଭ୍ରମଣରେ ଯାଉଥିଲେ । ବାଟରେ ବିଭିନ୍ନ ଆଶ୍ରମରେ ଲୋକାଳୟରେ ଅତିଥି ହେଉଥିବେ । ରାମଙ୍କ କାହାଣୀ ଅତୀତରେ ଘଟିଥିଲେ ମଧ୍ୟ ଏକ ଉଲ୍ଲେଖନୀୟ ଘଟଣା ହୋଇଥିବାରୁ, ଲୋକ ମୁଖରେ ଚର୍ଚ୍ଚା ହେଉଥିବ ଓ ଏମାନଙ୍କ କାନରେ ପଡିଥିବ । ତେବେ ରାମଙ୍କ ବ୍ୟାପାର ବାଲ୍ମୀକିଙ୍କ ଗୋଚରକୁ ଆସିଲା ନାହିଁ କିପରି ?

ସେ ସମୟରେ ରାଜା, ମହାରାଜାମାନେ ଯାଗଯଜ୍ଞ କରୁଥିଲେ । ସ୍ୱୟମ୍ବର ହେଉଥିଲା । ସେ ସବୁ ଉତ୍ସବ ଅନୁଷ୍ଠାନକୁ ଅନେକ ତପସ୍ୱୀ, ମୁନିଋଷି ନିମନ୍ତ୍ରିତ ହୋଇ ଯୋଗ ଦେଉଥିଲେ । ଯେପରି ସୀତାଙ୍କ ପାଇଁ ସ୍ୱୟମ୍ବର । ଯେଉଁଠି ନିଜେ ବଶିଷ୍ଠ ଓ ବିଶ୍ୱାମିତ୍ର

ତଥା ଅନେକ ଅନେକ ଋଷି ସମବେତ ହୋଇଥିଲେ । ଏପରି ଏକ ଉତ୍ସବ ଅନୁଷ୍ଠାନକୁ ବାଲ୍ମୀକି ନିମନ୍ତ୍ରିତ ହୋଇଥିବେ, ଯୋଗଦାନ ମଧ କରିଥିବେ । ରାମ ଚରିତ ବର୍ତ୍ତମାନ କାଳର ଘଟଣା ହୋଇଥିଲେ ଅନେକ ମୁନିଋଷି ଏପରିକି ବାଲ୍ମୀକି ନିଜେ ରାମସୀତା ବିବାହ ମଧ ପ୍ରତ୍ୟକ୍ଷ କରିଥିବେ । ଅତୀତ କାଳର ହୋଇଥିଲେ ମଧ ବିଭିନ୍ନ ସମାବେଶରେ ରାମଙ୍କ ପରି ଏକ ବ୍ୟକ୍ତିଙ୍କର ଆଲୋଚନା ହେଉଥିବ । କାରଣ ନାରଦ କହିବା ଅନୁଯାୟୀ ରାମ ଯେ କେହି ବ୍ୟକ୍ତି ନୁହନ୍ତି, ସେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ । ତାଙ୍କର କାର୍ଯ୍ୟକଳାପ ଯୁଗାନ୍ତକାରୀ । ଆର୍ଯ୍ୟ ଧର୍ମର ସୁପ୍ରତିଷ୍ଠା ତାଙ୍କରି ଦ୍ୱାରା ହିଁ ସମ୍ଭବ ହୋଇଥିଲା । ତେବେ ଏତେ ସବୁ କଥା ଘଟିଥିବା ଓ ଘଟୁଥିବା ବେଳେ ବାଲ୍ମୀକି କିପରି ଏ ବିଷୟରେ ବିନ୍ଦୁବିସର୍ଗ ଜାଣି ପାରିଲେ ନାହିଁ ଓ ନାରଦଙ୍କଠାରୁ ଶୁଣିବାକୁ ଅପେକ୍ଷା କରି ରହିଲେ ?

ରାମ-ପର୍ଶୁରାମ ବିବାଦ ସେ ସମୟର ଏକ ପ୍ରମୁଖ ଘଟଣା । ପର୍ଶୁରାମ ଏକ ଅଦ୍ଭୁତ ବ୍ୟକ୍ତିତ୍ୱ । ସେ ମାତୃହନ୍ତା । ଉଚ୍ଚ ବ୍ରାହ୍ମଣ କୂଳରେ ଜନ୍ମ ନେଇ ସେ ଶାସ୍ତ୍ରଜ୍ଞ, ତପସ୍ୱୀ ହିସାବରେ ମଧ ସ୍ୱୀକୃତ । ମାତ୍ର ପିତୃହତ୍ୟାର ପ୍ରତିଶୋଧ ନେବା ପାଇଁ ସମଗ୍ର କ୍ଷତ୍ରୀୟ ସଂପ୍ରଦାୟ ଉପରେ କ୍ରୋଧ କରି କୌଣସି ବାଛବିଚାର ନକରି ସଂସାରକୁ କ୍ଷତ୍ରୀୟ ଶୂନ୍ୟ କରିବାକୁ, ନିଜର ବ୍ରାହ୍ମଣ ଧର୍ମ ଭୁଲି ଅସ୍ତ୍ର ଧରି ବାହାରି ପଡ଼ିଛନ୍ତି । ଏପରି ଏକ ବ୍ୟକ୍ତିତ୍ୱ କିଛି ସାଧାରଣ ବ୍ୟକ୍ତିତ୍ୱ ନୁହେଁ । ଜଣଙ୍କର ଦୋଷ ପାଇଁ ସମଗ୍ର ସଂସାର କ୍ଷତ୍ରୀୟ ଶୂନ୍ୟ କରିବାର ସ୍ପର୍ଦ୍ଧା କିଛି ସାଧାରଣ ନୁହେଁ । ଏବଂ ଏହି ଆସ୍ପର୍ଦ୍ଧାକୁ ରାମହିଁ ଖର୍ବ କରିଛନ୍ତି ଓ ପର୍ଶୁରାମଙ୍କୁ ଦଣ୍ଡିତ କରିଛନ୍ତି । ଏପରି ଏକ ଯୁଗାନ୍ତକାରୀ ଘଟଣା ଯଦି ଅତୀତର ଘଟଣା ବି ହୋଇଥିବ ଜନମାନସରୁ ଲିଭିବା କଥା ନୁହେଁ । ତେବେ ବାଲ୍ମୀକି ଜାଣିଲେ ନାହିଁ କିପରି ?

ବିଶ୍ୱାମିତ୍ରଙ୍କ ଯଜ୍ଞ ରକ୍ଷା କରିବାକୁ ଯାଇ ଅସୁର ସଂହାର, ଶିବଧନୁ ଭାଙ୍ଗି ସୀତା ବିବାହ, ପର୍ଶୁରାମ ଗର୍ବ ଖଣ୍ଡନ ଓ ସର୍ବୋପରି ପିତୃସତ୍ୟ ପାଳି ଚଉଦ ବର୍ଷ ବନବାସ ସେ ସମୟର ଗୋଟିଏ ଗୋଟିଏ ପ୍ରମୁଖ ଘଟଣା । ଦଣ୍ଡକାରଣ୍ୟକୁ ରାକ୍ଷସମାନଙ୍କ କବଳରୁ ମୁକ୍ତ କରି ମୁନିଋଷିମାନଙ୍କ ଦ୍ୱାରା ଆଦୃତ ହୋଇଥିଲେ । ବାଳୀକୁ ମାରି ସୁଗ୍ରୀବକୁ ରାଜା କରିଥିଲେ । ରାବଣକୁ ମାରି, ଲଙ୍କାକୁ ରାକ୍ଷସମାନଙ୍କ କବଳରୁ ମୁକ୍ତ କରି ଧର୍ମପ୍ରାଣ ବିଭୀଷଣକୁ ଶାସନ ଭାର ଦେଇଥିଲେ । ଏ ସବୁ ଗୋଟିଏ ଗୋଟିଏ ଯୁଗାନ୍ତକାରୀ ଘଟଣା । ଏ ସବୁ ଆର୍ଯ୍ୟ ସଂସ୍କୃତିର ପ୍ରତିଷ୍ଠା, ବିସ୍ତାର ତଥା ସୁରକ୍ଷା ପାଇଁ ଅନେକ ସାହାଯ୍ୟ କରିଥିଲା । ଯଦି ବା ଏହା ଅତୀତରେ ଘଟିଥିବ ତାହା ଅନେକଙ୍କ ମନରେ ତଥାପି ଜୀବିତ ଥିବ । ବାଲ୍ମୀକି ନଜାଣିଲେ କିପରି ?

ମୋର ମତାମତ ହେଉଛି ରାମଚରିତ ନାରଦ-ବାଲ୍ମୀକି ଆଳାପର ଅତୀତ ବା ବର୍ତ୍ତମାନ କାଳ ନୁହେଁ ବରଂ ଭବିଷ୍ୟତ କାଳର ଘଟଣା । ଆଗକୁ ଘଟିବାକୁ ଥିବା ଘଟଣା । ଅନ୍ୟ ଭାବରେ କହିଲେ ନାରଦ ଏଠାରେ ବାଲ୍ମୀକିଙ୍କୁ ଭବିଷ୍ୟତ ବାଣୀ ହିଁ ଶୁଣାଇଛନ୍ତି । ବର୍ତ୍ତମାନ

ପ୍ରଶ୍ନ ଉଠୁଛି ନାରଦ ଏପରି ଗୋଟାଏ ଭବିଷ୍ୟତ ବାଣୀ କହିବାକୁ ଗଲେ କାହିଁକି? ନାରଦ କାହିଁକି ଭବିଷ୍ୟତ ବାଣୀ କରିବାକୁ ଗଲେ ତା'ର ଯଥାର୍ଥତା ଖୋଜିବାକୁ ହେଲେ ଆମକୁ ସେ ସମୟର ସମାଜ ତଥା ଦେଶର ଅବସ୍ଥା ବିଚାର କରିବାକୁ ହେବ।

ଆର୍ଯ୍ୟମାନଙ୍କର ଗୋଟିଏ ଶାଖା ସେମାନଙ୍କର ମୂଳ ବାସସ୍ଥାନ ବିଭିନ୍ନ କାରଣରୁ ଛାଡ଼ି ଆସି ସପ୍ତ ସିନ୍ଧୁ ଅଞ୍ଚଳରେ ବସତି ସ୍ଥାପନ କଲେ, ସମୟକ୍ରମେ ଏଠାରୁ (ସପ୍ତ ସିନ୍ଧୁ ଅଞ୍ଚଳରୁ) ଆର୍ଯ୍ୟମାନଙ୍କର ଗୋଟିଏ ଶାଖା ଇରାନ ଯାଇ ସେଠାରେ ବସତି ସ୍ଥାପନ କଲେ ଓ କ୍ରମେ ଆଖପାଖ ଅଞ୍ଚଳକୁ ବ୍ୟାପିଲେ। କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କରି ଆପଣା ସଭ୍ୟତା, ପରମ୍ପରା ଅନୁସାରେ ଚଳିଲେ। କେତେକ ଆର୍କିଓଲୋଜିକାଲ୍ ଖନନରୁ ଯେଉଁ ତଥ୍ୟ ମିଳୁଛି, ସେଥିରୁ ଉପସଂହାର କରାଯାଇପାରେ ଯେ ଆର୍ଯ୍ୟମାନେ ଭାରତରୁ କ୍ରମେ ଉତ୍ତର ପଶ୍ଚିମ ଦିଗକୁ ଯାଇ ଏକ ବ୍ୟାପକ ଅଞ୍ଚଳରେ ବସତି ସ୍ଥାପନ କଲେ। କ୍ରମେ ଆର୍ଯ୍ୟମାନେ ଗାନ୍ଧାର ରାଜ୍ୟକୁ ଅନେକ ପୁରୁଷ ଧରି ଶାସନ କରିବା ପରେ ସେଠାରୁ ଆହୁରି ଉତ୍ତରକୁ ମ୍ଲେଛ (ଗ୍ରୀସ୍ ଇତ୍ୟାଦି) ରାଜ୍ୟକୁ ଯାଇ ବସତି ସ୍ଥାପନ କଲେ ଓ ଶାସନ କଲେ।

ଭାରତରେ ମଧ ଆର୍ଯ୍ୟମାନେ ସପ୍ତ ସିନ୍ଧୁ ଛାଡ଼ି ବିଭିନ୍ନ ଅଞ୍ଚଳକୁ କ୍ରମେ ଦେଶାନ୍ତରୀ ହେଲେ। ସପ୍ତ ସିନ୍ଧୁ ଅଞ୍ଚଳରୁ କ୍ରମେ ବିଭିନ୍ନ ଦିଗରେ ସେମାନଙ୍କର ରାଜ୍ୟ ବିସ୍ତାର କଲେ। Vedic Yugaର (7300 BC 6300 BC) ଶେଷ ସମୟକୁ ଆର୍ଯ୍ୟ ଶାସିତ ରାଜ୍ୟଗୁଡ଼ିକ ଉତ୍ତରରେ ଗାନ୍ଧାରରୁ ଦକ୍ଷିଣରେ ବିଦର୍ଭ ଓ ପଶ୍ଚିମରେ Anartas (ଗୁଜୁରାଟ)ରୁ ପୂର୍ବରେ Anga ଆସାମ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଗଲାଣି।

ଏଇ ଯେଉଁ ଆର୍ଯ୍ୟ ଅଧ୍ୟୁଷିତ ଅଞ୍ଚଳର କ୍ରମ ପରିବ୍ୟାପ୍ତି, ତାହା ଦିନେ ଅଧକରେ ହୋଇଯାଇନାହିଁ। ସେଥିପାଇଁ ଶହ ଶହ ବର୍ଷ ଧରି ଆର୍ଯ୍ୟମାନଙ୍କୁ ପରିଶ୍ରମ କରିବାକୁ ପଡ଼ିଛି। ଯେତେବେଳେ କ୍ରମାଗତ ଭାବେ ସେମାନଙ୍କ ରାଜ୍ୟର ସୀମା ବଢ଼ାଇବାକୁ ଚେଷ୍ଟା କରିଛନ୍ତି ସେତେବେଳେ ସେମାନେ ଅନେକ ଆଦିମ ଅଧିବାସୀଙ୍କର ବିରୋଧର ସାମନା କରିଛନ୍ତି। ଋକ୍ ବେଦରେ (Rig Veda) ସେମାନଙ୍କୁ ଗୋଟିଏ ଶ୍ରେଣୀଭୁକ୍ତ କରାଯାଇ କେବଳ ଦାସ (Dasas) ନାମରେ ନାମିତ କରାଯାଇଛି। ଏହି ଦାସ ଆଦିମ ଅଧିବାସୀମାନେ ଗୋଟିଏ ଶ୍ରେଣୀର ନଥିଲେ। ସେମାନଙ୍କ ମଧରେ ଅନେକ ଶ୍ରେଣୀ ବିଭାଗ ଥିଲା। ବିଭିନ୍ନ ପରମ୍ପରା, ଚଳଣି ଥିଲା। କେତେକ ସଂପ୍ରଦାୟ ବେଶ୍ ସଭ୍ୟ ଓ ଉନ୍ନତ ଥିଲେ। ଆଉ କେତେକ ସଂପ୍ରଦାୟ ଅତ୍ୟନ୍ତ ଅନୁନ୍ନତ, ନୃଶଂସ ଓ ନିଷ୍ଠୁର ଥିଲେ। ସେମାନେ ସାଧାରଣତଃ ଯାଯାବର ଜୀବନ କଟାଉଥିଲେ ଓ ଦସ୍ୟୁବୃତ୍ତି ସେମାନଙ୍କର ମୁଖ୍ୟ ପେଶା ଥିଲା। ସେମାନଙ୍କୁ ଆର୍ଯ୍ୟମାନେ ଦସ୍ୟୁ ଆଖ୍ୟା ଦେଇଥିଲେ।

ସେତେବେଳେ ଆର୍ଯ୍ୟ ଶାସକ/ରାଜାମାନଙ୍କର ମୁଖ୍ୟ କାର୍ଯ୍ୟଥିଲା, ଏହି ଠଗମାନଙ୍କୁ ଦମନ କରି ଶୃଙ୍ଖଳା ଓ ଶାନ୍ତି ସ୍ଥାପନ କରିବା। ଯେଉଁ ଶାସକ ଏଥିରେ ଯେତେ ବେଶୀ

ସଫଳ ଥିଲେ, ସେମାନଙ୍କୁ ସେହି ଅନୁପାତରେ ଭାରତରେ ସମ୍ମାନ ମିଳୁଥିଲା ।

ଭାରତରେ ଆଦିମ ଅଧିବାସୀମାନଙ୍କ ତରଫରୁ ସଂଗଠିତ ପ୍ରତିରୋଧ ସତ୍ତ୍ୱେ ଆର୍ଯ୍ୟମାନେ କ୍ରମାଗତ ଭାବେ ସେମାନଙ୍କର ଉପନିବେଶ ସଂଖ୍ୟା ବଢ଼ାଇ ଚାଲିଥିଲେ ଏବଂ ଗୋଟାଏ ସମୟ ଆସିଲା, ଯେତେବେଳେ ସମଗ୍ର ଉତ୍ତର ଭାରତ ଓ ଦାକ୍ଷିଣାତ୍ୟର ଅଧିକାଂଶ ଅଞ୍ଚଳ ସେମାନଙ୍କ କର୍ତ୍ତୃତ୍ୱ/ଶାସନକୁ ଆସିଗଲା ।

ଏହି ଉପନିବେଶ ସ୍ଥାପନରେ ଗୋଟିଏ ଅନୁସୃତ ପ୍ରଣାଳୀ ଥିଲା । ଯେତେବେଳେ ଆର୍ଯ୍ୟ ରାଜା/ସମ୍ରାଟମାନେ ନୂତନ ଉପନିବେଶ ସ୍ଥାପନ ପାଇଁ ଯାଉଥିଲେ, ସେମାନେ କେବଳ ସୈନ୍ୟ ସାମନ୍ତ ନେଇ ଯୁଦ୍ଧରେ ଜିତି ରାଜ୍ୟ ଅଧିକାର କରି ଶାସନ କରିବାକୁ ଯାଉ ନଥିଲେ ସେମାନେ ତାଙ୍କ ସହିତ ଋଷି ମୁନିମାନଙ୍କୁ ନେଉଥିଲେ । ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ ବା ପୂଜା ପାଠ ପାଇଁ ମୁନି ଋଷିଙ୍କୁ ସେମାନେ ନେଉ ନଥିଲେ; ଉଦ୍ଦେଶ୍ୟ ଅନ୍ୟ ପ୍ରକାର ଥିଲା । ଯୁଦ୍ଧରେ ଜିଣି ଉପନିବେଶ ସ୍ଥାପନ କରି ରାଜନୈତିକ, ସାମରିକ ବିଜୟ ହାସଲ କରିବା ସହିତ ମୁନିଋଷିମାନଙ୍କୁ ସେଠାରେ ଥଇଥାନ କରି ସାଂସ୍କୃତିକ ତଥା ଧାର୍ମିକ ବିଜୟ ହାସଲ ପାଇଁ ସେମାନେ ଲକ୍ଷ୍ୟ ରଖୁଥିଲେ । (କ୍ରମେ ସେଠାକାର ଆଦିମ ଅଧିବାସୀଙ୍କୁ ଶିକ୍ଷାଦୀକ୍ଷା ଦେଇ ଆର୍ଯ୍ୟ ପରମ୍ପରାରେ ସାମିଲ କରିବା ହିଁ ଲକ୍ଷ୍ୟ ରହୁଥିଲା ।)

South of Vindhya Arya migration was led by Risi Agastya

Extreme west Risi Ram Jamadagni

ପୂର୍ବ ଭାରତ ଗୌତମ

କାଶ୍ମୀର କାଶ୍ୟପ ଗୋତ୍ର Risi Kamdradev

କେବଳ ରାଜ୍ୟ ବା ଅଞ୍ଚଳ ଦଖଲ କରି ଆପଣା ରାଜ୍ୟର ସୀମା ବଢ଼ାଇବା ଦ୍ୱାରା ବିଶେଷ କିଛି ସାଧିତ ହେଉନଥିଲା । କାରଣ ସେଠାକାର ଆଦିମ ଅଧିବାସୀ ଆର୍ଯ୍ୟମାନଙ୍କଠାରୁ ଖାଦ୍ୟ, ପେୟ ଜୀବନ ଦର୍ଶନ ଶିକ୍ଷା ଦୀକ୍ଷା ସବୁ କିଛିରେ ଅଲଗା ଥିଲେ । ନା ଥିଲା ସେମାନଙ୍କର ଆର୍ଯ୍ୟ ପରମ୍ପରାରେ ବିଶ୍ୱାସ, ନା ଥିଲା ସେ ପରମ୍ପରାକୁ ସତଃ ଆପଣେଇବାକୁ ଆଗ୍ରହ ।

ସେ ସବୁ ଅଞ୍ଚଳକୁ ବଳ ପ୍ରୟୋଗ କରି ଦଖଲ କରିବା ପରେ ଶାସକମାନେ ବ୍ରାହ୍ମଣ ମୁନିଋଷିଙ୍କ ସାହାଯ୍ୟରେ ସେ ଅଞ୍ଚଳର ଆଦିମ ଅଧିବାସୀମାନଙ୍କୁ ଆର୍ଯ୍ୟ ଜୀବନ ସ୍ରୋତରେ ସାମିଲ କରାଇବାକୁ ଚାହୁଁଥିଲେ । ଏହାଦ୍ୱାରା ସାମ୍ରାଜ୍ୟର ସ୍ଥାୟୀତ୍ୱ ନିଶ୍ଚିତ ହୋଇଯାଉଥିଲା । ସେଥିପାଇଁ ଘଞ୍ଚ, ଅଗମ୍ୟ ଅରଣ୍ୟରେ ମୁନି ଋଷିମାନେ ଆଶ୍ରମ ସ୍ଥାପନ କରି ଯାଗଯଜ୍ଞ, ଅଧ୍ୟୟନ, ଧ୍ୟାନ, ତପସ୍ୟା ଇତ୍ୟାଦି ଶିକ୍ଷା ପ୍ରଦାନ କରି ଆର୍ଯ୍ୟ ଜୀବନ ସ୍ରୋତରେ

ସେମାନଙ୍କୁ ମିଶାଇବାପାଇଁ ଏହା ପ୍ରକୃଷ୍ଟ ଉପାୟ ନିଶ୍ଚୟ ଥିଲା । ଏହି ଅଗମ୍ୟ ଅରଣ୍ୟରେ ସେମାନଙ୍କର ନିରାପତ୍ତା ଦରକାର । କାରଣ ଅନେକ ଆଦିମ ଅଧିବାସୀ/ଅସୁର, ଦୈତ୍ୟ ଇତ୍ୟାଦି ଆର୍ଯ୍ୟମାନଙ୍କର ଏହି ଅନୁପ୍ରବେଶକୁ ସହ୍ୟ କରି ପାରୁନଥିଲେ ଓ ତାହା ସ୍ୱାଭାବିକ ମଧ୍ୟ । ତେଣୁ ବାରମ୍ବାର ଯୁଦ୍ଧ ହେଉଥିଲା । ମୁନିଋଷିମାନଙ୍କ ଆଶ୍ରମ ଭଙ୍ଗାରୁଜା ହେଉଥିଲା । ଯାଗଯଜ୍ଞ ହୋମ ଇତ୍ୟାଦିକୁ ଅପବିତ୍ର କରି ଦିଆ ଯାଉଥିଲା । ଆର୍ଯ୍ୟ ଶାସକମାନେ ନିରାପତ୍ତା ଯୋଗାଇବାର ପ୍ରତିଶ୍ରୁତି ଦେଉଥିଲେ ଓ ସେଥିପାଇଁ ପଛଘୁଞ୍ଚା ଦେଉ ନଥିଲେ; ମାତ୍ର ତାହା ସତ୍ୱେ ଅଚାନକ ଆକ୍ରମଣ, ଭଙ୍ଗାରୁଜା ବାରମ୍ବାର ଘଟୁଥିଲା ।

ଏ ସଂକ୍ରାନ୍ତରେ ଆଜିକାର ଯୁଗରେ ଖ୍ରୀଷ୍ଟିଆନ ମିସ୍‌ନାରୀମାନଙ୍କର କାର୍ଯ୍ୟକଳାପକୁ ବିଚାର କରାଯାଇପାରେ । ଆଫ୍ରିକାର ଅଗମ୍ୟ ଅଞ୍ଚଳରେ ସେମାନେ ପଶି ଚର୍ଚ୍ଚ ସ୍ଥାପନ କରି ଯୀଶୁଙ୍କ ନାମ ପ୍ରଚାର କରି ଅନେକ ଲୋକଙ୍କୁ ଧର୍ମାନ୍ତରୀତ କରିବାକୁ ଚେଷ୍ଟା କରୁଛନ୍ତି । ଏତେଦୂର କାହିଁକି, ଆମ ରାଜ୍ୟର କେତେକ ଅଞ୍ଚଳରେ ଖ୍ରୀଷ୍ଟିଆନ ପ୍ରଚାରକମାନଙ୍କର କାର୍ଯ୍ୟକଳାପ ବିଚାରଯୋଗ୍ୟ । ଅଗମ୍ୟ ଅଞ୍ଚଳରେ ଚର୍ଚ୍ଚ ସ୍ଥାପନ କରିଛନ୍ତି, ଡାକ୍ତରଖାନା ସ୍ଥାପନ କରିଛନ୍ତି, ସ୍କୁଲ ଚଳାଇଛନ୍ତି ଏବଂ ଏହି ସୂତ୍ରରେ ଅନେକ ଆଦିମ ଅଧିବାସୀମାନଙ୍କୁ ଧର୍ମାନ୍ତରିତ କରିଛନ୍ତି ଓ କରୁଛନ୍ତି । ଏହା ଜରିଆରେ ସେମାନଙ୍କର ଆନୁଗତ୍ୟ ହାସଲ କରୁଛନ୍ତି । ଯାହା ଫଳରେ ଫୁଲବାଣୀ, କନ୍ଧମାଳ ଅଞ୍ଚଳରେ ଖ୍ରୀଷ୍ଟିଆନ, ଅଣଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ସଂଘର୍ଷ ଲାଗି ରହିଛି । (ଯେଉଁ ସଂଘର୍ଷର ଦୁଃଖଦ ପରିଣତି ଷ୍ଟେନସ୍ ଓ ତାଙ୍କର ଦୁଇ ପିଲାଙ୍କୁ ପୋଡି ମାରି ଦେବାର ମର୍ମନ୍ତୁଦ ଉଦାହରଣ । ରାକ୍ଷସମାନଙ୍କର ମୁନିଋଷିଙ୍କ ଆଶ୍ରମ ପୋଡ଼ି ଜାଳି ଦେବା ସହ ଏହାର ତୁଳନା କରାଯାଇପାରେ ।)

ମୁନିଋଷିମାନଙ୍କର ଏହି ତ୍ୟାଗରୁ କ୍ରମେ ସୁଫଳ ମିଳିଛି । ଆଦିମ ଅଧିବାସୀ ଆର୍ଯ୍ୟ ପରମ୍ପରାକୁ କ୍ରମେ ଆଦରି ନେଇଛନ୍ତି । ଅଧ୍ୟୟନ କରିଛନ୍ତି, ଯାଗଯଜ୍ଞରେ ଭାଗ ନେଇଛନ୍ତି, ଶୃଙ୍ଖଳିତ ଜୀବନ-ଯାପନ ପ୍ରଣାଳୀକୁ ଆଦରି ନେଇଛନ୍ତି । ମାତ୍ର ଏହା ଦିନକରେ ବା ମାସକରେ ହୋଇଯାଇ ନାହିଁ । ଏଥିପାଇଁ ଅନେକ ବର୍ଷ ଲାଗିଥିବ । ସେହି ସମୟ ଭିତରେ ଅନେକ ହିଂସାକାଣ୍ଡ, ସଂଘର୍ଷ, ଭଙ୍ଗାରୁଜା ହୋଇଥିବ । ସମୟ ସମୟରେ ଆଶ୍ରମ ସ୍ଥାପନ କରି ଶିକ୍ଷାଦାନରେ ବ୍ରତୀ ଥିବା ମୁନି ଋଷିମାନେ ଅତ୍ୟନ୍ତ ହତୋତ୍ସାହିତ ହୋଇପଡିଥିବେ । ଠିକ୍ ସମୟରେ ନିରାପତ୍ତା ନପାଇ ହତାଶ ହୋଇପଡିଥିବେ । ଅସୁର, ଦୈତ୍ୟମାନଙ୍କର ସାହସ ବଢ଼ିଥିବ ଏବଂ ଆଶ୍ରମ ଭଙ୍ଗାରୁଜା, ଆଶ୍ରମବାସୀ ଉତ୍ପୀଡନ ବହୁଗୁଣରେ ବଢ଼ିଯାଇଥିବ ।

ଏହିପରି ଏକ ସଙ୍କଟ କାଳରେ ମହର୍ଷି ବାଲ୍ମୀକି ବିମର୍ଷ ହୋଇପଡିଛନ୍ତି । ହୁଏତ ସେ ମନେକରିଛନ୍ତି ଏତେ ପରିଶ୍ରମ ସବୁ କ୍ଷଣ କେତୋଟିରେ ଧୂଳିସାତ୍ ହୋଇଯାଉଛି, ଅସୁର ଶକ୍ତି ପ୍ରବଳ ହେଉଛି ଓ ଆର୍ଯ୍ୟ ଶାସକ ଠିକ୍ ସମୟରେ ଯଥେଷ୍ଟ ନିରାପତ୍ତା ଦେବାକୁ

ସମର୍ଥ ହୋଇପାରୁ ନାହାନ୍ତି । ହୁଏତ ନିଜ ନିଜ ଭିତରେ କଳହରେ ମାତି ବା ଭୋଗ ବିଳାସରେ ମାତି ଦାୟୀତ୍ୱ ଭୁଲି ଯାଉଛନ୍ତି । ଏହି ପରିସ୍ଥିତିରୁ ମୁକ୍ତି ପାଇଁ ଏହି ଠଗମାନଙ୍କର ସମୂଳ ବିନାଶ ତଥା ସେମାନଙ୍କର ମୁଖିଆଙ୍କୁ ବିନାଶ କରିବା ପରି ଆର୍ଯ୍ୟ ଶକ୍ତି ବାଲ୍ମୀକିଙ୍କ ନଜରରେ କେହି ଆସି ନାହାନ୍ତି । ସେ ସମୟରେ ପରିସ୍ଥିତିର ଭୟାବହତା ହିଁ ବାଲ୍ମୀକିଙ୍କୁ ସପ୍ନ ଦେଖିବାକୁ ବାଧ କରିଛି । କେହି ଜଣେ ସର୍ବଗୁଣସଂପନ୍ନ ବୀର କ'ଣ ନାହିଁ ଯେ ଆର୍ଯ୍ୟ ପରମ୍ପରାକୁ ଏହି ଠଗ ଓ ତାଙ୍କ ଦଳପତିକୁ ନିପାତ କରି ରକ୍ଷା କରିପାରିବ ? ଏହିପରି ଗୋଟିଏ ସପ୍ନ ବାଲ୍ମୀକି ଦେଖିଥିବେ ଓ ତାହା ସାଭାବିକ ମଧ । ବାରମ୍ବାର ଏହିପରି ଏକ ଇଚ୍ଛା, ସପ୍ନ ସେ ମନ ଭିତରେ ଖେଳାଇଛନ୍ତି, ନିଜ ମାନସ ଚିତ୍ରରେ ବୀର ପୁରୁଷଟିକୁ ସମସ୍ତ ଗୁଣର ଅଧିକାରୀ କରିଛନ୍ତି । "ସେ ସୁଦର୍ଶନ, ଧାର୍ମିକ, ସୁଶାସକ, ଅମିତ ବଳଶାଳୀ, ଜ୍ଞାନୀ, ଗୁଣୀ, ଧନୁର୍ଦ୍ଧର ହୋଇଥିବ"- ଏହାହିଁ ବାଲ୍ମୀକିଙ୍କର ମନ ତଳର ଇଚ୍ଛା । ଏହିପରି ଜଣେ ଯୁଗପୁରୁଷ/ଅବତାରର ଆବିର୍ଭାବ ହିଁ ଠଗ ନିପାତ କରି ଆର୍ଯ୍ୟ ଧର୍ମକୁ ସୁରକ୍ଷା ଦେଇ ପାରିବ ବୋଲି ସେ ଦୃଢ଼ ଧାରଣା ପୋଷଣ କରିଛନ୍ତି ।

ଏହି ସମୟରେ ନାରଦଙ୍କ ସହ ତାଙ୍କର ଦେଖା ହୋଇଛି ଓ ସେ କଥୋପକଥନ ଛଳରେ ନିଜର ମନକଥା ନାରଦଙ୍କୁ କହିଛନ୍ତି । ଏହି ପରିସ୍ଥିତିରେ ନାରଦ ଭବିଷ୍ୟତ ବାଣୀ କରିଛନ୍ତି । ଅବତାର ପୁରୁଷ ଆସିବେ ଜନ୍ମ ନେବେ ଧର୍ମ ରକ୍ଷା କରିବେ ଏହାହିଁ ମୁଖ୍ୟତଃ ଭବିଷ୍ୟତ ବାଣୀ ନାରଦ କରିଛନ୍ତି ।

ନାରଦଙ୍କ ଭବିଷ୍ୟତ ବାଣୀ ସମୟର ସାମଜିକ ଅବସ୍ଥା ଅତ୍ୟନ୍ତ ବିଶୃଙ୍ଖଳିତ ଥିଲା । ଆର୍ଯ୍ୟମାନଙ୍କର ନିଜସ୍ୱ ଅଞ୍ଚଳ ଛାଡି ଦେଲେ ଯାହାକି ନଗଣ୍ୟ, ଅନ୍ୟାନ୍ୟ ଅଞ୍ଚଳରେ ଶାସନ ବୋଲି କିଛି ନଥିଲା । ସେ ସବୁ ଉପନିବେଶର ଅଧିକାଂଶ ଜନତା ଆଦିମ ଅଧିବାସୀ ହିଁ ଥିଲେ । ଆର୍ଯ୍ୟ ପରମ୍ପରା ବୋଲି କେହି ମାନୁ ନଥିଲେ; ତା ସହିତ ଆଦିମ ଅଧିବାସୀ ଅସୁର/ଦୈତ୍ୟ ଇତ୍ୟାଦିଙ୍କର ଆର୍ଯ୍ୟ ମୁନିରଷିଙ୍କ ଉପରେ ଅତ୍ୟାଚାର ଆକ୍ରମଣ ଲାଗି ରହିଥିଲା । ଯେଉଁ ଆଦିମ ଜାତିମାନେ ମୁନିରଷିଙ୍କ ଶିକ୍ଷାରୁ ସଫଳତା ପାଇ ଆର୍ଯ୍ୟ ଅନୁମୋଦିତ ଜୀବନ ଯାପନ ପ୍ରଣାଳୀ ଆପଣାଇଥିଲେ ସେମାନେ ମଧ ଏମାନଙ୍କ ଆକ୍ରମଣରୁ ରକ୍ଷା ପାଉ ନଥିବେ । ସେମାନେ ଆପଣା ସମାଜ ମଧରେ ଏକଘରିକିଆ ହୋଇ ରହୁଥିବା ସମ୍ଭବ, କାରଣ ଏମାନଙ୍କର ସଂଖ୍ୟା ନିତାନ୍ତ ନଗଣ୍ୟ । ଏହି ଜଟିଳ ପରସ୍ଥିତିକୁ ସାମନା କରି, ବ୍ୟବସ୍ଥା ସୁଧାରିବାକୁ ଯେଉଁମାନଙ୍କର ଶକ୍ତି ନାହିଁ ମାତ୍ର କୌଣସି ପ୍ରକାରେ ସମାଜ ବ୍ୟବସ୍ଥା ସୁଧୁରିଯାଉ ବୋଲି ଆଗ୍ରହ ପ୍ରକାଶ କରନ୍ତି, ଇଚ୍ଛା କରନ୍ତି, ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରନ୍ତି ସେମାନେ ଜଣେ ଅବତାର ପୁରୁଷର ଆବିର୍ଭାବର ସପ୍ନ ଦେଖନ୍ତି ଓ ତା ପାଇଁ ଅପେକ୍ଷା ରଖନ୍ତି । ବାଲ୍ମୀକିଙ୍କ ବିମର୍ଷର ହେତୁ ଓ ନାରଦଙ୍କ ଭବିଷ୍ୟତ ବାଣୀ, ସେହି ପରିପ୍ରେକ୍ଷୀରେ ଗ୍ରହଣ କଲେ ଅଧିକ ସଂଗତ ଓ ପ୍ରାସଂଗିକ ହେବ ।

କେତୋଟି ଅନୁରୂପ ଅବସ୍ଥାର ବିଚାର କରାଯାଉ । ଦ୍ୱାପର ଯୁଗରେ କ'ଣ ଏପରି ଘଟି ନାହିଁ? କଂସ, ଜରାସନ୍ଧ ତଥା ଦୁର୍ଯ୍ୟୋଧନ (କୌରବ) ତ କେବଳ ପ୍ରତୀକ । ସେ ସମୟରେ ଯେଉଁ ଅରାଜକତା, ଶାସକ ଶାସକ ମଧ୍ୟରେ ଈର୍ଷା, ବିଦ୍ୱେଷ, କଳହ, ସ୍ୱାର୍ଥପରତା, ଅହଂକାର, ଅଧର୍ମ, ବିଶୃଙ୍ଖଳା ଅବକ୍ଷୟ ସମାଜକୁ ଗ୍ରାସ କରିଥିଲା ଓ ତା'ର କଳା ଛାୟା କ୍ରମେ ଗଭୀରରୁ ଗଭୀରତର ହେଉଥିଲା । ସେଥିରେ ସାଧୁ, ସନ୍ଥ ଆଉ ସାଧାରଣ ଶୃଙ୍ଖଳିତ ଜନତା ତ୍ରାହି ତ୍ରାହି ଡାକୁଥିଲେ । ସମାଜ ବ୍ୟବସ୍ଥା ସମ୍ପୂର୍ଣ୍ଣ ଧ୍ୱସ୍ତ ବିଧ୍ୱସ୍ତ ହୋଇ ଭୁଷୁଡ଼ି ପଡ଼ିବାକୁ ବସିଥିଲା । ମାତ୍ର ଏ ଦୁଷ୍ଟମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସାମାଜିକ ଅବକ୍ଷୟରେ ଲଗାମ ଦେବା ପାଇଁ ଯେଉଁ ସାହସ, ବୁଦ୍ଧି, କୌଶଳ ଓ ବ୍ୟକ୍ତିତ୍ୱ ଦରକାର, ତାହା ଏମାନଙ୍କ ପାଖରେ ନଥିଲା ।

ସେହି ସବୁ ପରିସ୍ଥିତିରେ ବିଚାରବନ୍ତ, ସାଧୁ, ଶୃଙ୍ଖଳିତ ଜନତା ସର୍ବଦା ଅସହାୟତାରୁ ମୁକ୍ତି ପାଇଁ ହାତ ଟେକି ଭଗବାନଙ୍କୁ ଡାକେ । ଅବତାର ପୁରୁଷର ଆବିର୍ଭାବର ଅପେକ୍ଷା ରଖେ ଯେ ବୀର, ଚରିତ୍ରବାନ, ଧାର୍ମିକ, ନ୍ୟାୟପରାୟଣ ହୋଇଥିବ ଓ ଏ ଦୁଷ୍ଟ ଶକ୍ତିଙ୍କୁ ଦଣ୍ଡ ଦେଇ ସମାଜରେ ନୂତନ ଶୃଙ୍ଖଳିତ ବ୍ୟବସ୍ଥାର ପୁନଃପ୍ରଚଳନ କରିପାରିବ । ଦ୍ୱାପର ଯୁଗରେ କୃଷ୍ଣହିଁ ଥିଲେ ସେ ଅବତାର ପୁରୁଷ । ସେ ହିଁ ସେତେବେଳର ଅସହାୟ ଜନତାର ରକ୍ଷାକର୍ତ୍ତା ରୂପେ ସଂସାରକୁ ଆସିଥିଲେ ଓ ସମାଜକୁ ଅବକ୍ଷୟରୁ ରକ୍ଷା କରିଥିଲେ ।

ସବୁ ସମୟରେ ସବୁ ସମାଜରେ କିଛି ଲୋକ ଥାଆନ୍ତି, ଯେଉଁମାନେ ଏହି ସଫଳ ପୁରୁଷଠାରେ ଦେବତ୍ୱ ଆରୋପ କରନ୍ତି । ତାହାହିଁ କୃଷ୍ଣଙ୍କ କ୍ଷେତ୍ରରେ ଘଟିଛି । ଦୈବବାଣୀ ହେବା, ଛାଆଁକୁ ଛାଏଁ ବନ୍ଦିଶାଳ ଖୋଲିଯିବା, ବାଳୁତ ବୟସରେ ଅସୁର ଅସୁରୁଣୀମାନଙ୍କୁ ମାରିପକାଇବା ପରି ରସାଳ ଓ ରୋମାଞ୍ଚ ବର୍ଣ୍ଣନାରେ ଅଟକି ଗଲେ, ସେ ସମୟର ସମାଜର ଦାବୀ ଓ ତା ସହିତ ଖାପଖୁଆଇ କୃଷ୍ଣଙ୍କ ବ୍ୟକ୍ତିତ୍ୱକୁ ବୁଝି ହେବ ନାହିଁ ।

ଏତେ ଦୂର ଯିବା ଦରକାର ନାହିଁ । ଆଜି କଳି ଯୁଗରେ କ'ଣ ଏପରି ଘଟୁ ନାହିଁ? ଆମରି ସମୟର ନାୟକ ମୋହନ ଦାସ ଗାନ୍ଧୀଙ୍କ କଥା ଦେଖାଯାଉ । ଯେତେବେଳେ ଭାରତର ସମାଜରେ ଅସନ୍ତୋଷ, ଅରାଜକତା, ଦାରିଦ୍ର୍ୟ, ଜାତିଭେଦ ଚରମ ସୀମାରେ ପହଞ୍ଚିଛି, ସମାଜ ଦିଗହରା ହୋଇଛି, ଶାସକ ଶାସିତ ପ୍ରତି ଉତ୍ତରଦାୟୀ ହୋଇ ରହିନାହିଁ, ସାଧାରଣ ଜନତା ଶାସନ ବ୍ୟବସ୍ଥା ଓ ସାମାଜିକ ଶୃଙ୍ଖଳା ଉପରୁ ଆସ୍ଥା ହରାଇଛନ୍ତି, ସେତେବେଳେ ହିଁ ଗାନ୍ଧୀଙ୍କର ଆବିର୍ଭାବ ହୋଇଛି । ଦେଶବାସୀ ପ୍ରବଳ ପ୍ରତାପଶାଳୀ ଇଂରେଜ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସାହସ ହରାଇଛନ୍ତି । ସେତେବେଳର ତଥାକଥିତ ପାରମ୍ପାରିକ ରାଜା, ମହାରାଜାମାନେ ଆପଣାର ପ୍ରଜାମାନଙ୍କ ପ୍ରତି ଦାୟିତ୍ୱ ଭୁଲି ଯାଇ ଆପଣା କ୍ଷୁଦ୍ର, ବ୍ୟକ୍ତିଗତ ସ୍ୱାର୍ଥକୁ ଆଖି ଆଗରେ ରଖି ପ୍ରତାପଶାଳୀ ଶାସକର ଅନୁଗୃହୀତ ହେବା ପାଇଁ ପ୍ରତିଯୋଗୀତା ଆରମ୍ଭ କରିଛନ୍ତି ।

ସେ ସମୟରେ ସମାଜ ନିଜକୁ ରକ୍ଷା ପାଇଁ ଆପଣା ଭିତରେ କାହାକୁ ଖୋଜି ପାଇନାହିଁ । ନୂତନ ପୁରୁଷର ଆବିର୍ଭାବକୁ ଅପେକ୍ଷା ରଖିଛି । ସେହି ଘଡି ସନ୍ଧି ସମୟରେ ହିଁ ଗାନ୍ଧୀଙ୍କର ଜନ୍ମ ହୋଇଛି । ଆଉ ଜନତା ମହାତ୍ମା ଶବ୍ଦଟି ତାଙ୍କ ନାମ ପୂର୍ବରୁ ଯୋଡ଼ି ଦେଇ ଆପଣାର ଶ୍ରଦ୍ଧା ପ୍ରକାଶ କରିଛି ।

ମୋର ମନେହୁଏ ଯୁଗ ପୁରୁଷ କୁହନ୍ତୁ ବା ଅବତାର ପୁରୁଷ କୁହନ୍ତୁ ସେମାନଙ୍କର ଆବିର୍ଭାବ ସେତିକିବେଳେ ହୁଏ ଯେତେବେଳେ ସମାଜ, ଦେଶର ସଙ୍କଟ ଚରମସୀମାରେ ପହଞ୍ଚି ଯାଏ, ତା ପୂର୍ବରୁ କଦାଚିତ ନୁହେଁ । ଗାନ୍ଧୀ ଆଉ ଶହେ ବର୍ଷ ପୂର୍ବେ ଜନ୍ମ ନେଇଥିଲେ, ଯାହା ଏବେ କରିପାରିଲେ ତାହା କରିପାରିନଥାନ୍ତେ । କାରଣ ଯୁଗ ପରିବର୍ତ୍ତନ ଯେପରି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ହୋଇ ପାରେନା, ଯୁଗପୁରୁଷ ବା ଅବତାର ପୁରୁଷ ସେହିପରି ଉପଯୁକ୍ତ ସମୟ ପୂର୍ବରୁ ଆବିର୍ଭାବ ହୁଅନ୍ତି ନାହିଁ । ଅନ୍ୟ ପ୍ରକାର ବୁଝାଇ କହିଲେ, ଯୁଗପୁରୁଷ ସର୍ବଦା ସମୟର ସୃଷ୍ଟି । ସଙ୍କଟଜନକ ପରିସ୍ଥିତି ହିଁ ଅବତାର ସୃଷ୍ଟି କରେ । କେହି ଶୂନ୍ୟରୁ ଆଣି ଅବତାର ପୁରୁଷକୁ ସଂସାରରେ ଛାଡି ଦିଏ ନାହିଁ ।

ସଙ୍କଟ, ଅବ୍ୟବସ୍ଥା ଚରମ ସୀମାରେ ପହଞ୍ଚିଲେ ସେଇ ଭଗ୍ନସ୍ତୂପ ଭିତରୁ ଯେଉଁ ଚେତନା ଜନ୍ମ ନିଏ, ତାହାହିଁ ଅବତାର ପୁରୁଷର ରୂପ ନିଏ । ସମୁଦ୍ର ମନ୍ଥନରୁ ଅମୃତ ମିଳିବା ପରି ଅବତାର ପୁରୁଷର ଆବିର୍ଭାବ ଉପଯୁକ୍ତ ସମୟ ତଥା ସାମାଜିକ ମନ୍ଥନର ଅପେକ୍ଷା ରଖେ ।

ନାରଦଙ୍କ ଭବିଷ୍ୟତ ବାଣୀକୁ ଏହି ପରିପ୍ରେକ୍ଷୀରେ ବିଚାର କରାଯାଇପାରେ । ଆର୍ଯ୍ୟ ଧର୍ମ, ସଂସ୍କୃତି ଯେତେବେଳେ ବିପଦଗ୍ରସ୍ତ, ସମାଜରେ ଯେତେବେଳେ ସାଧୁସନ୍ଥମାନଙ୍କୁ ସେମାନଙ୍କର ଉପଯୁକ୍ତ କର୍ମ କରିବାର ସୁଯୋଗ ମିଳୁନାହିଁ, ଯେତେବେଳେ ଚୋରୀ, ଡକାୟତି, ଧର୍ଷଣ, ଲୁଟ ଦୈନନ୍ଦିନ ଘଟଣା ହୋଇଯାଇଛି, ସମାଜ ସେତେବେଳେ ତ୍ରାହି ତ୍ରାହି ଡାକ ଛାଡିଛି । ମୁନିଋଷିମାନେ ଯେଉଁମାନେ ଆର୍ଯ୍ୟ ପରମ୍ପରାର ପ୍ରଚାର ଓ ପ୍ରସାର ପାଇଁ ଅଣ୍ଟା ଭିଡି ଗଭୀର ଅରଣ୍ୟରେ ଆଶ୍ରମ ସ୍ଥାପନ କରିଛନ୍ତି, ଯେତେବେଳେ ଦୈତ୍ୟ ଅନୁଚରମାନଙ୍କର ଆକ୍ରମଣରେ ଅତିଷ୍ଠ ହୋଇପଡିଛନ୍ତି, ଆର୍ଯ୍ୟ ରାଜାମାନଙ୍କ ଠାରୁ ଉପଯୁକ୍ତ ନିରାପତ୍ତା ପାଇ ପାରି ନାହାନ୍ତି, ସେହିପରି ଏକ ଘଡ଼ିସନ୍ଧି ସମୟ ମହର୍ଷି ବାଲ୍ମୀକିଙ୍କୁ ନିରାଶ ସାଗରରେ ବୁଡ଼ାଇ ଦେଇଛି । ଆଗରେ ସେ ଆଲୋକ ଦେଖି ପାରୁନାହାନ୍ତି ।

ସେହପରି ଏକ ବିଷାଦପୂର୍ଣ୍ଣ ମୁହୂର୍ତ୍ତରେ ନାରଦଙ୍କ ସହ ବାଲ୍ମୀକିଙ୍କର ଭେଟ ହୋଇଛି ଓ ସେ ଆପଣା ମନ କଥା, ବିଷାଦ, ନୈରାଶ୍ୟ ଦେବର୍ଷିଙ୍କ ପାଖରେ ଗାଇ ଚାଲିଛନ୍ତି । ନାରଦ ତାଙ୍କୁ ଆଶ୍ୱାସନା ଦେଇଛନ୍ତି । ଆଶା ନହରାଇବାକୁ ପରାମର୍ଶ ଦେଇଛନ୍ତି । ସମୟ ଖୁବ୍ ଶୀଘ୍ର ବଦଳିଯିବ ଏବଂ ପ୍ରଭୁ ଅବତାର ଗ୍ରହଣ କରି ସମାଜକୁ ଏ ଅଭୂତପୂର୍ବ ସଙ୍କଟରୁ ରକ୍ଷା କରିବେ । ଏହି ଆଶ୍ୱାସନା ଦେଇ ବାଲ୍ମୀକିଙ୍କୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ

ଦେଇଛନ୍ତି । ଖାଲି ତ ଧୈର୍ଯ୍ୟ ଧରିବାକୁ ଆଶ୍ୱାସନା ଦେଲେ ସମସ୍ୟାର ସମାଧାନ ହୋଇଯିବ ନାହିଁ । ମନରୁ ନୈରାଶ୍ୟ ଯାଇ ଆଶାର କିରଣ ବିସ୍ତାରିବାକୁ ନାରଦଙ୍କୁ କିଛି ସଠିକ୍, ନିର୍ଦ୍ଦିଷ୍ଟ ବାର୍ତ୍ତା ଦେବା ଦରକାର । କାରଣ ସେ ଯାହାଙ୍କୁ ଧୈର୍ଯ୍ୟ ଧରି ଭବିଷ୍ୟତ ଉପରେ ଭରଷା ରଖିବାକୁ କହୁଛନ୍ତି, ସେ ତ ଯେକେହି ସାଧାରଣ ଲୋକଟିଏ ନୁହେଁ, ସେ ମଧ୍ୟ ଜଣେ ସଫଳ ଯୋଗୀ, ଋଷି । ତାଙ୍କ ମନରେ ଭବିଷ୍ୟତ ଯେ ଉଜ୍ଜ୍ୱଳ ଏ ଭରଷା ଦେବା ପାଇଁ ନାରଦ ରାମଙ୍କ ବୃତ୍ତାନ୍ତ କହିଛନ୍ତି । ଯାହା ଭବିଷ୍ୟତରେ ଘଟିବାକୁ ଯାଉଛି । ସେ ଅବତାର ପୁରୁଷ, ବାଲ୍ମୀକିଙ୍କ ସପ୍ନର ସୁପୁରୁଷ ହେଉଛନ୍ତି ଶ୍ରୀରାମ ଯିଏ ଏ ସଂସାରକୁ ଆସି ସମାଜକୁ ଏ ସଙ୍କଟରୁ ତାରିବେ ।

ନାରଦ ଆଖି ଆଗରେ ଘଟି ଯାଉଥିବା ପରି ରାମଙ୍କ ବୃତ୍ତାନ୍ତ ଯେ ଭବିଷ୍ୟବାଣୀ କରିଛନ୍ତି ତାହାକୁ ଅବିଶ୍ୱାସ କରିବାର କିଛି ନାହିଁ । ତ୍ରେତା ଯୁଗ କଥା ଛାଡନ୍ତୁ ଏପରି ଭବିଷ୍ୟତ ବାଣୀ କ'ଣ ଆମ ସମୟରେ ଘଟୁ ନାହିଁ? ଏ ସଂକ୍ରାନ୍ତରେ କେତୋଟି ନିର୍ଭରଯୋଗ୍ୟ ପୁସ୍ତକର ତାଲିକା ଦେଉଛି, ଯେଉଁଥିରୁ ଏ ପ୍ରକାର ଉଦାହରଣ ପାଠ କରାଯାଇ ପାରିବ ।

(1) Fifty Years with the British - S. K. Kripalini

(2) Autobiography of a Yogi - Paramhans Yogananda

(3) A Search in Secret India - Paul Brunton

(4) Apprenticed to the Himayan master- A Yogi's Autobiography by Sri M

(5) Many Lives Many Masters - Dr. Brian Weiss

(ଏ ସମସ୍ତ ପୁସ୍ତକର ଓଡିଆ ଅନୁବାଦ ଉପଲବ୍ଧ, ପ୍ରଥମଟି ବ୍ୟତୀତ)

ଭବିଷ୍ୟତ ଘଟଣାର ସଠିକ ଦର୍ଶନ ସମ୍ଭବ । ଏହା ଦେଖାଇବା ପାଇଁ ଏଇ କେତୋଟି ପୁସ୍ତକର ତାଲିକା ଦେଉଛି । ତେଣୁ ନାରଦ ରାମ ଚରିତ ଯାହା ଅନେକ ବର୍ଷ ପରେ ଘଟିବାକୁ ଯାଉଛି ତାହା ଆଖି ଆଗରେ ଦେଖିବା ପରି ବର୍ଣ୍ଣନା କରିବାରେ ଆଶ୍ଚର୍ଯ୍ୟ ହେବାର ବା ଅବିଶ୍ୱାସ କରିବାର କିଛି ନାହିଁ ।

ବାଲ୍ମୀକି ନାରଦଙ୍କ ବାର୍ତ୍ତାରେ ସନ୍ତୁଷ୍ଟ ହୋଇଛନ୍ତି ଓ ନୂତନ ଆଶା ନେଇ ଭବିଷ୍ୟତକୁ ଅପେକ୍ଷା ରଖିଛନ୍ତି । ଏହା ବାଦ୍ ଏଠାରେ ମୁଖ୍ୟ ପ୍ରସଙ୍ଗ ହେଉଛି ରାମଙ୍କ ଜନ୍ମ ଓ ଜୀବନ । ମୋ ମତରେ ତାହା ହେଉଛି ନାରଦ-ବାଲ୍ମୀକି ଆଳାପର ପରବର୍ତ୍ତୀକାଳର ଘଟଣା ।

କେତେକ ଗବେଷକଙ୍କ ମତରେ ବରୁଣ ଦେବଙ୍କ (ବାଲ୍ମୀକିଙ୍କ ପିତା) ସମୟ ହେଉଛି ୬୨୬୦ ବି.ସି., ଆଉ ଦଶରଥଙ୍କ (ଶ୍ରୀରାମଙ୍କ ପିତା) ସମୟ ହେଉଛି ୪୩୨୦ ବି.ସି. ।

ଏହା ପର - ମହର୍ଷି ବାଲ୍ମୀକି ବ୍ରହ୍ମାଙ୍କ ନିର୍ଦ୍ଦେଶ ପାଇ ହେଉ ବା ନିଜ ଭିତରୁ ଆସୁଥିବା ପ୍ରେରଣା ପାଇ ହେଉ ରାମାୟଣ ରଚନାରେ ନିଜକୁ ନିୟୋଜିତ କରିଛନ୍ତି । ସେଥିପାଇଁ ନାରଦଙ୍କଠାରୁ ଶୁଣିବା ପରେ ନିଜେ ଧ୍ୟାନରେ ବସି ଘଟଣାଟିକୁ ନିଜ ଭିତରେ ଆଉଟାଇଛନ୍ତି । ଏପରି ଦୃଷ୍ଟାନ୍ତ ବିରଳ ନୁହେଁ । ନିଜ ଆଖିରେ ଦେଖିବାପରି ସବୁକିଛି ବର୍ଣ୍ଣନା କରିଯାଇଛନ୍ତି । ରାମ ବନବାସରୁ ଫେରି ଅଯୋଧ୍ୟାର ରାଜ୍ୟ ଶାସନ ସମ୍ଭାଳିଛନ୍ତି । ରାକ୍ଷସ ନିପାତକରି ଆର୍ଯ୍ୟ ଧର୍ମକୁ ବିସ୍ତାରିତ ହେବାରେ ସାହାଯ୍ୟ କରିଛନ୍ତି ତଥା ରାଜଗାଦି ସମ୍ଭାଳି ଉପଯୁକ୍ତ ଶାସନ ବ୍ୟବସ୍ଥା ମାଧ୍ୟମରେ ସମାଜକୁ ଅବକ୍ଷୟ ଓ ସଙ୍କଟରୁ ରକ୍ଷା କରିଛନ୍ତି ।

ପ୍ରଥମ ଅବସ୍ଥାରେ ବାଲ୍ମୀକିଙ୍କର ଅବସାଦର କାରଣ ଯାହା ଥିଲା, ତାହା ଆପାତତଃ ସମାଧାନ ହୋଇଯାଇଛି ଓ ବାଲ୍ମୀକି ନାରଦଙ୍କଠାରୁ ସେ ପର୍ଯ୍ୟନ୍ତ ଶୁଣି, ନିଜ ଧ୍ୟାନ ଚକ୍ଷୁରେ ଦେଖି ରାମାୟଣ ରଚନା ସେଇଠାରେ ଶେଷ କରିଛନ୍ତି । ଏ ଗ୍ରନ୍ଥ, ଏ ପବିତ୍ର କାବ୍ୟ ପଠନ, ଶ୍ରବଣରେ ସମସ୍ତ ପାପ ମୋଚନ ହେବ ବୋଲି ଉଲ୍ଲେଖ କରି ଉପସଂହାର ଟାଣିଛନ୍ତି ।

ଏଠାରେ ଆଉ ଗୋଟିଏ ପ୍ରସଙ୍ଗ ଆଲୋଚନାକୁ ଆସୁଛି । ଯଦି ରାମାୟଣ କାବ୍ୟର ଉପସଂହାର ରାମ ଅଯୋଧ୍ୟାର ରାଜଗାଦି ସମ୍ଭାଳିବା ସହିତ ହୋଇଛି ତେବେ ସପ୍ତମ ଖଣ୍ଡ (ଉତ୍ତରା ଖଣ୍ଡ) ରାମାୟଣର ସ୍ଥିତି କ'ଣ? ଯେଉଁଥିରେ ସୀତାଙ୍କ ଦ୍ୱିତୀୟ ବନବାସ, ଲବକୁଶ ଉପାଖ୍ୟାନ, ପୁନର୍ମିଳନ ତଥା ସୀତାଙ୍କ ବସୁଧା ପ୍ରବେଶର ବର୍ଣ୍ଣନା ଅଛି । ଏହାର (ସପ୍ତମ ଖଣ୍ଡର) ରଚନା କାଳ କ'ଣ ଓ ଲେଖକ ନିଜେ ବାଲ୍ମୀକି ନା ଆଉ କେହି ଚତୁର ରଚୟିତା ।

ହୁଏତ ଉତ୍ତର ଖଣ୍ଡ ବାଲ୍ମୀକି-କୃତ ନୁହେଁ । ଏତକ ହେଉଛି ଆଉ କେଉଁ ଉର୍ବର ମସ୍ତିଷ୍କ ପ୍ରସୂତ । ଭଦ୍ରଲୋକ ମନେ କରିଥିବେ ରାମସୀତା ଉପାଖ୍ୟାନ ପରି ଏକ ଅନନ୍ୟ ଉପାଖ୍ୟାନର ଗୋଟାଏ ଅନ୍ୟନ୍ୟ ଯବନିକା ଚାହି । ସେଇଠୁ ଆରମ୍ଭ ହେଲା ଧୋବଣୀ କଥାରେ ସୀତାଙ୍କୁ ବନ ପ୍ରେରଣ । ଲବକୁଶଙ୍କର ରାମ ଭ୍ରାତା ଓ ହନୁମାନଙ୍କ ସହ ଯୁଦ୍ଧ ଓ ସେଥିରେ ଜୟ ଲାଭ ଓ ଶେଷରେ ଲବ କୁଶଙ୍କର ରାମ ରାଜସଭାରେ ରାମାୟଣ ଗାୟନ ଓ ରାମସୀତା ମିଳନ ଇତ୍ୟାଦି ଇତ୍ୟାଦି । କଥା ସେତିକିରେ ସରିନାହିଁ; ସୀତାଙ୍କୁ ପୁଣିଥରେ ଅଗ୍ନିପରୀକ୍ଷା ଦେବାକୁ କୁହାଯାଇଛି । ହୁଏତ ମନେ ହୋଇଥିବ ଯେ ଯଦି ଲଙ୍କାରେ ସୀତାଙ୍କୁ ଅଗ୍ନିପରୀକ୍ଷା ପାଇଁ କୁହାଗଲା ତେବେ ଅଯୋଧ୍ୟାବାସୀଙ୍କ ନେତ୍ର ପବିତ୍ର ପାଇଁ ସୀତା ଆଉ ଥରେ ପରୀକ୍ଷା ଦେଲେ କ୍ଷତି କ'ଣ? ଯଦି ସୀତା ପରୀକ୍ଷା

ଦେଇଥାନ୍ତେ ତେବେ ତ ପରୀକ୍ଷାରେ ପାଶ୍ ନିଶ୍ଚୟ କରିଥାନ୍ତେ କାରଣ ଫେଲ୍ ହେବା ପ୍ରଶ୍ନ ନାହିଁ । କାରଣ ଫେଲ୍ କରିବାକୁ ରଚୟିତାଙ୍କର ସାହସ ଅଣ୍ଟିନି । ଯେହେତୁ ଫେଲ୍ ଅର୍ଥ ସୀତାଙ୍କୁ ଅସତୀ, କୁଳଟା ବୋଲି ପ୍ରମାଣ କରିବା । ଆଉଥରେ ଅଗ୍ନିପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଥିଲେ ପୁଣି ପୂର୍ବପରି ରାମଙ୍କ ପାଖରେ ଆସନ ନେଇ ରାଜ୍ୟ ଶାସନ କରି ରୋମାଞ୍ଚହୀନ ସମୟ କାଟିଥାନ୍ତେ । ଲେଖକଙ୍କର ସେଥିପ୍ରତି ଆଗ୍ରହ ନାହିଁ । ଶେଷଟା ରୋମାଞ୍ଚକର ହେବା ଦରକାର । ତେଣୁ ସୀତା ବସୁଧା ମାତାଙ୍କୁ ପ୍ରାର୍ଥନା କରିଛନ୍ତି ଆଉ ପାତାଳ ପ୍ରବେଶ କରିଛନ୍ତି । ସୀତା ବ୍ୟତିରେକ ରାମଙ୍କୁ ବଞ୍ଚାଇ ରଖି ଆଉ ପ୍ରସଙ୍ଗକୁ ଲମ୍ବାଇ କିପରି ଶେଷ କରିବେ ତାହା ମଗଜରେ ପଶି ନାହିଁ । ତେଣୁ ରାମଙ୍କୁ ସୀତାଙ୍କ ପଛରେ ଦଉଡାଇଛନ୍ତି । ଶେଷରେ ରାମ ବାନପ୍ରସ୍ଥ ଗ୍ରହଣ କରନ୍ତି ଇତ୍ୟାଦି ।

ଏହା ହୋଇଥିବା ସମ୍ଭବ କାରଣ ଉପସଂହାରଟି ଯେହେତୁ ଷଷ୍ଠ ଖଣ୍ଡ ପରେ ହିଁ ରହିଛି, ଏତକ ପରେ ଯୋଡା ହୋଇଥିବା ସମ୍ଭବ । ଯଦି ବାଲ୍ମୀକି ଉତ୍ତର ଖଣ୍ଡ ଲେଖିଥାନ୍ତେ ତେବେ ଉପସଂହାର ସ୍ଥାନ ସପ୍ତମ ଖଣ୍ଡ ପଛକୁ ନଆଣିଲେ ମଧ ଏତକ ଯୋଡିବା ପାଇଁ ଗୋଟାଏ କାରଣ ଦର୍ଶାଇ ଥାଆନ୍ତେ । ଯେହେତୁ ତାହା ହୋଇନାହିଁ, ଏହି ରାମାୟଣ ଉତ୍ତର କାଣ୍ଡର ରଚନା ଅଣବାଲ୍ମୀକିକୃତ ବୋଲି ମନେହୁଏ ।

ତେବେ ବାଲ୍ମୀକି ସପ୍ତମ ଖଣ୍ଡର ସ୍ରଷ୍ଟା ବୋଲି ମନେ କରିବାରେ ଗୋଟାଏ ମାତ୍ର ଯୁକ୍ତି ରହିଛି । ସେଇଟି ହେଉଛି ସର୍ବତ୍ର ରାମାୟଣ ସାତ ଖଣ୍ଡ ବୋଲି କୁହାଯାଇଛି । ମାତ୍ର କୈଫୟତଟି ସେପରି ବଳିଷ୍ଠ ମନେହୁଏନା । ବାଲ୍ମୀକିଙ୍କ ପରବର୍ତ୍ତୀ କାଳରେ ସପ୍ତମ ଖଣ୍ଡ ରଚନା ପରେ ଯେତେବେଳେ ରାମାୟଣ ଲିଖିତ କାବ୍ୟର ରୂପ ନେଲା ସେତେବେଳେ ତାହା ସାତ ଖଣ୍ଡ ରାମାୟଣ ବୋଲି ପ୍ରଚାରିତ ହୋଇଥିବା ଓ ଗ୍ରହଣୀୟ ହୋଇଥିବା ସମ୍ଭବ ।

ବାଲ୍ମୀକି ସପ୍ତମ ଖଣ୍ଡ (ଉତ୍ତରା କାଣ୍ଡ)ର ରଚୟିତା ନୁହନ୍ତି ଏହା ସପକ୍ଷରେ ଦୃଢ଼ ଯୁକ୍ତିଟି ହେଉଛି ଯେ, ନାରଦଙ୍କ ଭବିଷ୍ୟତ ବାଣୀ ତଥା ମାନସ ଚକ୍ଷୁରେ ପ୍ରତ୍ୟକ୍ଷ କରିବା ପରି ବାଲ୍ମୀକି ରାମ ଚରିତ ବର୍ଣ୍ଣନା କରିଛନ୍ତି । ମାତ୍ର କାବ୍ୟ ଶେଷରେ ଏହାକୁ ଜନସମାଜରେ ପ୍ରସାରିତ କରିବାକୁ କୁଣ୍ଠାବୋଧ କରିଛନ୍ତି । ସଙ୍କୋଚ ହୁଏତ ଏଇଥିପାଇଁ ଯେ ସାଧାରଣ ଜନତା ଏହାକୁ କେବଳ ତାଙ୍କର ସପ୍ନବିଳାସ ବା କବିତ୍ୱର ଚାତୁରୀ ବୋଲି ମନେ କରିବେ । ମାତ୍ର ସେ ନିଜେ କିନ୍ତୁ ଏହି ଭବିଷ୍ୟତରେ ଘଟିବାକୁ ଥିବା ଅବତାର ପୁରୁଷଙ୍କ ଆବିର୍ଭାବ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରୁଥିବାରୁ, ଲୋକ ସମାଜର ପ୍ରତିକୂଳ ପ୍ରତିକ୍ରିୟା ତାଙ୍କୁ ହୁଏତ ସହ୍ୟ ହେବ ନାହିଁ । ଯେଉଁ ନୈରାଶ୍ୟ ତାଙ୍କୁ ଗ୍ରାସ କରିଥିଲା, ତାହାହିଁ ବହୁଗୁଣିତ ହୋଇ ପୁନର୍ବାର ତାଙ୍କ ଉପରେ ସବାର ହେବ । ତେଣୁ ସେ ରାମଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଅପେକ୍ଷା ରଖିଛନ୍ତି । ସେତେବେଳେ ମୁନିଋଷିମାନେ ହଜାର ହଜାର ବର୍ଷ ଜୀବନ ଧାରଣ କରିବା ସମ୍ଭବ ହେଉଥିଲା । କାବ୍ୟକୁ ସାଧାରଣରେ

ପ୍ରସାରିତ ନକରି ସେ ତାଙ୍କ ରଚନା ତଥା ନାରଦ ଭବିଷ୍ୟତ ବାଣୀର ଜୀବନ୍ତ ରୂପାୟନ ଦେଖିବାକୁ ଅପେକ୍ଷା କରିଛନ୍ତି। (ଏ ସମ୍ପର୍କରେ ଗବଭଚ ଖସଙ୍ଖରଷ୍ଟ ଗବଭଚ ଗବଷ୍ଟ-ଷ୍ଟରକ୍ବଷ୍ଟ ପୁସ୍ତକ ପ୍ରଣିଧାନ ଯୋଗ୍ୟ। ଡାକ୍ତର ବ୍ରାଏନ୍ ତାଙ୍କ ନିଜ ଅନୁଭୂତି ସଭମବକ୍ବ-ଭବଷ୍ଟସକ୍ବଭ ଏତେ ଅଦ୍ଭୁତ ଯେ କାହା ଆଗରେ ପ୍ରକାଶ କଲେ ଲୋକେ ତାଙ୍କୁ ପାଗଳ ବୋଲି କହିବେ। ଏଥିପାଇଁ ପ୍ରାୟ ଗୋଟାଏ ଦଶନ୍ଧି ଏ ସମସ୍ତ ବିଷୟରେ ବଳିଷ୍ଠ ପ୍ରମାଣ ଥାଇ ମଧ ଆପଣା ପାଖରେ ଲୁଚାଇ ରଖିଛନ୍ତି।) ସେହିପରି ବାଲ୍ମୀକି ରାମଚରିତ ତାଙ୍କ ଆଖି ଆଗରେ ଘଟି ଚାଲିବା ଯାଏଁ ଅପେକ୍ଷା କରିଛନ୍ତି। ରାମଙ୍କ ଆବିର୍ଭାବ ପରେ ପରେ ହୁଏତ ଏହାର ପ୍ରସାର କରାଇ ପାରିଥାଆନ୍ତେ। ମାତ୍ର ଭବିଷ୍ୟତବାଣୀ ଗୋଟାକ ପରେ ଗୋଟାଏ ତାଙ୍କ ଆଖି ଆଗରେ ସଫଳ ରୂପାୟନ ହେଉଥିବାରୁ ଏହି ଚରିତଟିକୁ ଆଉ ଭବିଷ୍ୟତ ବାଣୀ ବୋଲି ପ୍ରସାର କରିବାର ଆବଶ୍ୟକତା ନାହିଁ ବୋଲି ସେ ମନେ କରିଥିବେ ଏବଂ ଯେହେତୁ ତାଙ୍କର ଉଦ୍ଦେଶ୍ୟ ଦସ୍ୟୁ, ଠଗ ଦମନ, ରାକ୍ଷସ ସଂହାର ଇତ୍ୟାଦି ଗୋଟିକ ପରେ ଗୋଟିଏ ଘଟି ଚାଲିଛି ଓ ଆର୍ଯ୍ୟ ପରମ୍ପରା ଦୃଢ଼ ହେଉଛି ତେଣୁ ସେ ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିଛନ୍ତି ଏବଂ ରାମ ରାଜ୍ୟ ସମ୍ଭାଳିବା ପରେ ଏହାକୁ ଜନ ସମାଜରେ ପ୍ରସାରିତ କରିଛନ୍ତି। ବାଲ୍ମିକି ରାମାୟଣ ଏହିଠାରେ ହିଁ ସମାପ୍ତ ହୋଇଛି। ଯୁଦ୍ଧକାଣ୍ଡ ପରେ, ବାଲ୍ମୀକି ଏ ପବିତ୍ର ଗ୍ରନ୍ଥର ପ୍ରଶସ୍ତି ଗାନ କରିଛନ୍ତି। ପରମ୍ପରା ଅନୁଯାୟୀ ଗ୍ରନ୍ଥ ସମାପ୍ତି ନହେଲେ ତାର ପ୍ରଶସ୍ତି ଗାନ କରାଯାଏ ନାହିଁ। ତେଣୁ ଯୁଦ୍ଧକାଣ୍ଡ ହିଁ ବାଲ୍ମୀକି ରାମାୟଣର ଅନ୍ତିମ ପରିଚ୍ଛେଦ ବୋଲି ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ।

ହୁଏତ ରାଜା ରାଜ୍ୟ ସମ୍ଭାଳି ଧର୍ମାନୁମୋଦିତ ପନ୍ଥାରେ ପ୍ରଜାପାଳନ କରି ସତ୍ୟ, ନ୍ୟାୟ ଓ ଶୃଙ୍ଖଳାର ପ୍ରତିଷ୍ଠା କରିବା ପରେ ଆଉ ଯାହା ଯାହା ଘଟିବ, ତାହା ବାଲ୍ମୀକି ଅନୁମାନ କରି ନେଇଛନ୍ତି। ତେଣିକି ଜୀବନ ଗତାନୁଗତିକ ଧାରାରେ ଚାଲିବ ଏବଂ ରାମ ରାଜ୍ୟ ଭାର ଉତ୍ତରପୀଢ଼ିକୁ ସମର୍ପି ବାନପ୍ରସ୍ଥ କରୁଥିବେ/ଶରୀର ତ୍ୟାଗ କରିବେ। ଏ ସବୁ ଅବଶ୍ୟମ୍ଭାବି ପରିଣତି ପ୍ରତି ବାଲ୍ମୀକି **କୌଣସି ଗୁରୁତ୍ୱ** ଦେଇ **ନାହାନ୍ତି। କାରଣ** ତାଙ୍କର ଉଦ୍ଦେଶ୍ୟ ବହୁ ଆଗରୁ -- ଯଥା ରାମ ରାଜ୍ୟ ଭାର ସମ୍ଭାଳିବାଠାରୁ -- ସାଧିତ ହୋଇ ଯାଇଛି।

ଏଇଠି ପଶି ଆସିଛନ୍ତି କରିତ୍କର୍ମା ଆଉ କେହି ଯିଏ ନିଜର ବିଦ୍ୟାବୁଦ୍ଧି ଖଟାଇ ସପ୍ତମ ଖଣ୍ଡ (ଉତ୍ତର ଖଣ୍ଡ)ଟି ବାଲ୍ମିକୀ ରାମାୟଣର ଅଂଶ ବିଶେଷ ରୂପେ ଚଳାଇ ନେଇଛନ୍ତି। ଏହା ଅଧିକ ସମ୍ଭବ ମନେହୁଏ।

# କାମଧେନୁ ଓ ବଶିଷ୍ଠ-ବିଶ୍ୱାମିତ୍ର ଦ୍ୱନ୍ଦ

ସମୟଟା ହେଉଛି ଯେତେବେଳେ ବିଶ୍ୱାମିତ୍ର ରାଜଗାଦିରେ ଥିଲେ । ଏକ ଶକ୍ତିଶାଳୀ ସମର୍ଥ ସମ୍ରାଟ ଭାବରେ ତାଙ୍କର ନାମ ଥିଲା । ରାଜ୍ୟ ତ୍ୟାଗ କରି ତପସ୍ୟା କରିବାକୁ ଯିବାର ପୂର୍ବ ସମୟର କଥା ।

ଏକଦା ସମ୍ରାଟ ବିଶ୍ୱାମିତ୍ର ପାତ୍ର ମନ୍ତ୍ରୀ ସୈନ୍ୟସାମନ୍ତ ଏବଂ ଆନୁସଙ୍ଗିକ ବିଧିବ୍ୟବସ୍ଥା ଯଥା ହାତୀ ରଥ ଅଶ୍ୱ ଇତ୍ୟାଦି ସହ ବିଭିନ୍ନ ଅଞ୍ଚଳ ଭ୍ରମଣ ପରେ ବଶିଷ୍ଠଙ୍କ ଆଶ୍ରମ ପାଖରେ ପହଞ୍ଚିଲେ । ସ୍ୱାଭାବିକ ଭାବରେ ବଶିଷ୍ଠଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବା ଅବସରରେ ବଶିଷ୍ଠ ତାଙ୍କୁ ଆଶ୍ରମରେ ଅତିଥି ହେବାକୁ ନିମନ୍ତ୍ରଣ କଲେ ଓ ବଶିଷ୍ଠଙ୍କ ଆଗ୍ରହ ଭାଙ୍ଗି ନପାରି ବିଶ୍ୱାମିତ୍ର ଅତିଥି ହେଲେ । ବିଭିନ୍ନ ରାମାୟଣ ବାଖ୍ୟାକାରଙ୍କ ଭାଷାରେ ଏ ବିଶାଳ ବାହିନୀର ଉପଯୁକ୍ତ ଚର୍ଚ୍ଚା ପାଇଁ ବଶିଷ୍ଠ ନିଜର ପୋଷ୍ୟ ଗାଈ ଶବଳାକୁ ନିର୍ଦ୍ଦେଶ ଦେଲେ ଓ ତାହା ପାଳନ କରି ଶବଳା ସମସ୍ତ ପଲଟଣକୁ ଉପଯୁକ୍ତ ଭୋଜନ ପାନୀୟ ଓ ଅନ୍ୟାନ୍ୟ ସ୍ୱାଚ୍ଛନ୍ଦ୍ୟ ଦେଇ ସନ୍ତୁଷ୍ଟ କରି ପାରିଥିଲା । ସ୍ୱଇଚ୍ଛାରେ ସେ ନିଜ ଶରୀରରୁ ଏ ସମସ୍ତ ଖାଦ୍ୟ ପଦାର୍ଥ, ଭୋଜ୍ୟ ମାତ୍ର କେତୋଟି କ୍ଷଣରେ ଉତ୍ପନ୍ନ କରିପାରିଥିଲା । ବିଶ୍ୱାମିତ୍ର ବଶିଷ୍ଠଙ୍କ ଅତିଥି ଚର୍ଚ୍ଚାରେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ବିଦାୟ ସମୟରେ ବଶିଷ୍ଠଙ୍କ ଚର୍ଚ୍ଚାର ପ୍ରଶସ୍ତି ଅବସରରେ ମହର୍ଷିଙ୍କ ଠାରୁ ଜାଣିବାକୁ ପାଇଲେ ଯେ ବଶିଷ୍ଠ ଏସବୁ କରିପାରିଛନ୍ତି, କେବଳ ଶବଳା(ଗାଈ)ର କୃପାରୁ ।

ଏତକ ଜାଣିବା ପରେ ବିଶ୍ୱାମିତ୍ର ଶବଳାକୁ ନିଜର କରିବା ପାଇଁ ଆଗ୍ରହୀ ହୋଇଛନ୍ତି ଓ ନିଜ ଅଭିପ୍ରାୟ ବଶିଷ୍ଠଙ୍କୁ ଜଣାଇଛନ୍ତି । ବଶିଷ୍ଠ ସ୍ୱାଭାବିକ ଭାବେ ଏ ଅନୁରୋଧ ଅଗ୍ରାହ୍ୟ କରିଛନ୍ତି । ବିଶ୍ୱାମିତ୍ର ଛାଡିବାର ପାତ୍ର ନୁହନ୍ତି । ଶବଳା ବଦଳରେ ସହସ୍ରାଧିକ ଗାଈ ଦେବା ପାଇଁ ତଥା ଅନ୍ୟାନ୍ୟ ଧନରତ୍ନ ଦେବା ପାଇଁ ସେ ବଶିଷ୍ଠଙ୍କୁ ପ୍ରସ୍ତାବ ଦେଇଛନ୍ତି ଓ ବଶିଷ୍ଠ ଏ ପ୍ରସ୍ତାବ ମଧ ରୋକ୍‌ଠୋକ୍ ଅଗାହ୍ୟ କରିଦେଇଛନ୍ତି ଏବଂ କୌଣସି ପରିସ୍ଥିତିରେ ମଧ ସେ ଶବଳାକୁ ଦେଇ ପାରିବେ ନାହିଁ ବୋଲି ଶୁଣାଇ ଦେଇଛନ୍ତି ।

ବିଶ୍ୱାମିତ୍ରଙ୍କ ଜିଦ୍ ବଢ଼ିଛି ଓ ସେ ବଳପୂର୍ବକ ଶବଳାକୁ ବାନ୍ଧି ନେଇ ଯିବାକୁ ଚେଷ୍ଟା

କରିଛନ୍ତି । ତାଙ୍କର ଅନୁଚରମାନେ ତାଙ୍କ ଆଦେଶ ମୁତାବକ ଶବଳାକୁ ନେବାକୁ ଯିବା ବେଳେ, ଶବଳା ସ୍ୱାଭାବିକ୍ ଭାବରେ ନିଜର ଅନିଚ୍ଛା ପ୍ରକାଶ କରିଛି ଓ ବଶିଷ୍ଠ କ'ଣ ପାଇଁ ତାକୁ ପରିତ୍ୟାଗ କରୁଛନ୍ତି ବୋଲି ତାଙ୍କୁ ପ୍ରଶ୍ନ କରିଛି । ତା'ର ଧାରଣା ହୋଇଛି ଯେ ବଶିଷ୍ଠ ସ୍ୱଇଚ୍ଛାରେ ତାକୁ ସମ୍ରାଟଙ୍କୁ ଦେଇଛନ୍ତି । ବଶିଷ୍ଠ ଶବଳାକୁ ଉତ୍ତର ଦେଇ ନିଜର ଅସହାୟତା ପ୍ରକାଶ କରିଛନ୍ତି । ବିଶ୍ୱାମିତ୍ରଙ୍କ ପରି ଶକ୍ତିଶାଳୀ ସମ୍ରାଟ ଓ ତାଙ୍କର ବିଶାଳ ସୈନ୍ୟବାହିନୀ ନିକଟରେ ତାଙ୍କ ଇଚ୍ଛା ଅନିଚ୍ଛାର ପ୍ରଶ୍ନ ନାହିଁ । ସେ ଏମାନଙ୍କୁ ଶକ୍ତି ଖଟାଇ ଅଟକାଇ ପାରିବେ ନାହିଁ । ସେ ଯାହାହେଉ ଶେଷରେ ସେ ଶବଳାକୁ ନିଜେ ନିଜକୁ ରକ୍ଷା କରିବାକୁ ଆଦେଶ/ନିର୍ଦ୍ଦେଶ ଦେଇଛନ୍ତି । ବଶିଷ୍ଠଙ୍କ ଅନୁମତି ପାଇ ଶବଳା ନିଜର ଶରୀରରୁ କ୍ଷଣକ ମଧ୍ୟରେ ହଜାର ହଜାର ସୈନ୍ୟସାମନ୍ତ ସୃଷ୍ଟିକରି ବିଶ୍ୱାମିତ୍ରଙ୍କ ସୈନ୍ୟବାହିନୀ ସହ ଘମାଘୋଟ ଲଢ଼ାଇ କରିଛି ।

ଏ ଲଢ଼ାଇର ବିସ୍ତାର ବର୍ଣ୍ଣନା ବର୍ତ୍ତମାନ ପାଇଁ ଏଠି ରହୁ । ଏହିପରି ଏକ ଘଟଣା ଭରଦ୍ୱାଜଙ୍କ ଆଶ୍ରମରେ ଘଟିଛି । ରାମ ବନବାସ କରିବାକୁ ଯିବା ପରେ ଭରତ ମାତୁଳାଳୟରୁ ଫେରି ନିଜେ ରାଜଗାଦି ଗ୍ରହଣ ନକରି ରାମଙ୍କୁ ଫେରାଇ ଆଣିବାକୁ ଯାଉଛନ୍ତି ଓ ରାସ୍ତାରେ ଭରଦ୍ୱାଜଙ୍କ ଆଶ୍ରମରେ ରାମଙ୍କ ବ୍ୟାପାରରେ ବୁଝିବାକୁ ଯିବା ଅବସରରେ ଭରଦ୍ୱାଜଙ୍କ ଅନୁରୋଧରେ ନିଜର ବିଶାଳ ବାହିନୀ ସହ ତାଙ୍କର ଅତିଥି ହୋଇଛନ୍ତି । ସେ ମଧ୍ୟ ହଜାର ହଜାର ସୈନ୍ୟସାମନ୍ତ, ପାତ୍ରମନ୍ତ୍ରୀ, ହାତୀ ଘୋଡା ସହ ଭରଦ୍ୱାଜଙ୍କ ଆତିଥ୍ୟ ଗ୍ରହଣ କରିଛନ୍ତି । ଭରଦ୍ୱାଜଙ୍କ ପାଖରେ ଶବଳା ନଥିଲା । ମାତ୍ର ସେ କ୍ଷଣକ ମଧ୍ୟରେ ସମସ୍ତ ବନ୍ଦୋବସ୍ତ କରି ଦେଇଛନ୍ତି । ରାତ୍ରିଯାପନ ପାଇଁ ସୁବନ୍ଦୋବସ୍ତ, ଉପଯୁକ୍ତ ଶିବର, ଆରାମଦାୟକ ଶଯ୍ୟା, ବିଭିନ୍ନ ଖାଦ୍ୟ, ପାନୀୟ ତଥା ଆବଶ୍ୟକସ୍ଥଳେ ନୃତ୍ୟଗୀତର ଆୟୋଜନ କରି ଦେଇଛନ୍ତି । ବିଭିନ୍ନ ବର୍ଗର ଅତିଥି ତଥା ପଶୁଗଣଙ୍କର ଉପଯୁକ୍ତ ଚର୍ଚ୍ଚା ହୋଇଛି । ଏ ବିଳାସପୂର୍ଣ୍ଣ ଆତିଥ୍ୟ ପାଇ ଭରତଙ୍କ ସୈନ୍ୟବାହିନୀ ବର୍ତ୍ତମାନ ଆଉ ସେ ଯାଗା ଛାଡିବାକୁ ରାଜି ନୁହନ୍ତି । ନା ସେମାନେ ଭରତଙ୍କ ସହ ରାମଙ୍କ ପାଖକୁ ଯିବାକୁ ରାଜି, ନା ଏ ସବୁ ପ୍ରାଚୁର୍ଯ୍ୟ ଛାଡି ସେଇ ପୁରୁଣା ଜୀବନ ବିତାଇବାକୁ ଅଯୋଧ୍ୟା ଯିବାକୁ ରାଜି । ଏ ପରିସ୍ଥିତିରେ ଭରଦ୍ୱାଜ ଯାହା ସବୁ ଆୟୋଜନ କ୍ଷଣକ ମଧ୍ୟରେ କରିଥିଲେ ତାହା କ୍ଷଣକ ମାତ୍ରକେ ଫେରାଇ ନେଇଛନ୍ତି । ତା'ର ଅର୍ଥ ସମ୍ମୋହନ ବଳରେ ଏ ସବୁର ସୃଷ୍ଟି ଓ ଏ ସବୁର ବିଲୟ । ଏହା ଥିଲା କେବଳ ମାୟା । ମାତ୍ର ଏପରି ଏକ ବିଶାଳ ସମାବେଶକୁ ମାୟା ବଳରେ ମନ୍ତ୍ରମୁଗ୍ଧ କରି ରଖିବା ମଧ୍ୟ କିଛି ସାଧାରଣ କଥା ନୁହେଁ । ସେ ମାୟାଜାଲ ସୃଷ୍ଟିର କ୍ଷମତା ହୁଏତ ଭରଦ୍ୱାଜଙ୍କର ଥିଲା ।

ବର୍ତ୍ତମାନ ଆମ ମନରେ ପ୍ରଶ୍ନ ଉଠୁଛି, ଭରଦ୍ୱାଜ ଯେପରି ଚର୍ଚ୍ଚା କରିଲେ, ବଶିଷ୍ଠ ମଧ୍ୟ ସେପରି କରିପାରିଥାନ୍ତେ । ତା ନକରି ସେ ଶବଳାର ଆଶ୍ରୟ ନେଲେ କାହିଁକି ? ତାଙ୍କର ଏ ଶକ୍ତି ନଥିଲା, ଯାହା ଭରଦ୍ୱାଜଙ୍କ ପାଖରେ ଥିଲା, ତାହା ବିଶ୍ୱାସଯୋଗ୍ୟ ନୁହେଁ ।

ଏହା ମଧ୍ୟ ଆମକୁ ବିଶ୍ୱାସ କରିବାକୁ କଷ୍ଟ ହେଉଛି ଯେ ଶବଳା ଗାଈଟି କ୍ଷଣକ ମଧ୍ୟରେ ନିଜ ଶରୀରରୁ ହଜାର ହଜାର ସୈନ୍ୟସାମନ୍ତ ତଥା ହାତୀଘୋଡାଙ୍କ ପାଇଁ ସୁସାଦୁ ଖାଦ୍ୟ କେବଳ ସୃଷ୍ଟି କରିପାରିଲା ତା ନୁହେଁ, ଦ୍ୱନ୍ଦ ସମୟରେ ହଜାର ହଜାର ସୈନ୍ୟ ଥରେ ନୁହେଁ ବାରମ୍ବାର ସୃଷ୍ଟି କରି ବିଶ୍ୱାମିତ୍ରଙ୍କ ସହ ଲଢ଼ାଇର ନେତୃତ୍ୱ ନେଲା । ଯଦି ଶବଳା ପାଖରେ ଏ ଶକ୍ତି ଥିଲା, ତେବେ ସେ ଏ ଅଯଥା ଦ୍ୱନ୍ଦ, ହଣାହଣି ମରାମରିକୁ ଖୁସୀରେ ଆଡେଇ ଦେଇପାରିଥାନ୍ତା । କେବଳ ନିଜକୁ ଅଦୃଶ୍ୟ କରି ଦେଇଥିଲେ ବିଶ୍ୱାମିତ୍ର ଫେରିଯାଇଥାନ୍ତେ । ଏ ସବୁ ନକରି ଯୁଦ୍ଧ ରାସ୍ତାକୁ ଆପଣାଇଲା କାହିଁକି ?

ଆଉ ଗୋଟିଏ ଦିଗରୁ ଦେଖନ୍ତୁ । ବଶିଷ୍ଠ କିଛି କମ୍ ଶକ୍ତିଶାଳୀ ନୁହନ୍ତି । ତପ ଶକ୍ତିରେ ସେ ଉତ୍କର୍ଷତା ଲାଭ କରିଛନ୍ତି । ବିଶ୍ୱାମିତ୍ର ଶବଳା ସହ ଦ୍ୱନ୍ଦରେ ହାରି, ରାଜତ୍ୟାଗ କରି ହିମାଳୟ ଯାଇ ତପସ୍ୟା କରି, ମହାଦେବଙ୍କଠାରୁ ବର ପାଇ, ନୂତନ ଶକ୍ତି ଓ ନୂତନ ଅସ୍ତ୍ର ନେଇ ବଶିଷ୍ଠଙ୍କ ଉପରେ ଆକ୍ରମଣ କରିଛନ୍ତି, ପ୍ରତିଶୋଧ ପାଇଁ । ମାତ୍ର ବଶିଷ୍ଠ ଆପଣାର ଯଷ୍ଟି (ବ୍ରହ୍ମ ଦଣ୍ଡ) ଖଣ୍ଡିକ ଧରି ବିଶ୍ୱାମିତ୍ରଙ୍କର ସମସ୍ତ ଅତ୍ୟନ୍ତ ଶକ୍ତିଶାଳୀ ଅସ୍ତ୍ରର ସାମନା କରିଛନ୍ତି ଓ ବିଶ୍ୱାମିତ୍ର ପରାଭୂତ ହୋଇ ଯାଇଛନ୍ତି । ତେବେ ବଶିଷ୍ଠ ପ୍ରଥମରୁ ଏତକ କରିଥିଲେ ବିଶ୍ୱାମିତ୍ର ଶବଳାକୁ ଜୋର ଜବରଦସ୍ତି ନେବା ପାଇଁ ସାହସ କରି ନଥାନ୍ତେ ବା ଯୁଦ୍ଧ କରିବାକୁ ଆଗେଇ ଆସି ନଥାନ୍ତେ । ଏହାଦ୍ୱାରା ବଶିଷ୍ଠ ଅନେକ ଧନଜୀବନ କ୍ଷୟକୁ ରୋକି ପାରିଥାଆନ୍ତେ ।

ଆମ ମନରେ ସତଃ ପ୍ରଶ୍ନ ଉଠୁଛି, ଏତେ ଉପାୟ ଥାଇ ମଧ୍ୟ ବଶିଷ୍ଠ ବା ଶବଳା ଏସବୁ ପ୍ରୟୋଗ ନକରି ଯୁଦ୍ଧ, ଜନକ୍ଷୟ ହେବାକୁ ପ୍ରଶ୍ରୟ ଦେଲେ କାହିଁକି ? ବଶିଷ୍ଠ ପ୍ରଥମରୁ ସେଇ ମନ୍ତ୍ରପୂତ ଯଷ୍ଟି ଖଣ୍ଡିକ ସାହାଯ୍ୟରେ ବିଶ୍ୱାମିତ୍ରଙ୍କ ଅହଂକାରର ଉଚିତ୍ ଜବାବ ଦେଇ ପାରିଥାଆନ୍ତେ ଆଉ ଦ୍ୱିତୀୟ ବାର ସେ ନିଜର ଔଦ୍ଧତ୍ୟ ଦେଖାଇବାକୁ ସାହସ କରିନଥାନ୍ତେ । ତାହା ନକରି ବଶିଷ୍ଠ ଏତେ ସବୁ ଲୀଳାଖେଳାର ଅବତାରଣା କ'ଣ ପାଇଁ କଲେ ତାହା ବୋଧଗମ୍ୟର ବାହାରେ । ବିଶ୍ୱାସ କରିବାକୁ କଷ୍ଟ ହେଉଛି ଯେ ଶବଳା ଏସବୁ ନିଜେ କରିପକାଇଲା ବା ତା'ପାଖରେ ସେପରି ଯାଦୁ ଶକ୍ତି ଥିଲା । ହୁଏତ ସେ କେବଳ ପ୍ରତୀକ, ସବୁକିଛି ବଶିଷ୍ଠକୃତ, ତାଙ୍କ ତପସ୍ୟାର ଫଳ । ଯଦି ଆମେ ଅତିଥି ଚର୍ଚ୍ଚାଠାରୁ ଆରମ୍ଭ କରି ବିଶ୍ୱାମିତ୍ରଙ୍କ ସହ ଯୁଦ୍ଧକୁ କେବଳ ମାୟାଜାଲ ବା ଯାଦୁ ଶକ୍ତିର ପରାକାଷ୍ଠା ବୋଲି ଧରିନେବା ତେବେ ଅନେକ ଅସୁବିଧାଜନକ, ଅଯୌକ୍ତିକ ପ୍ରଶ୍ନର ଉତ୍ତର ଖୋଜିବାରୁ ରକ୍ଷା ମିଳିଯିବ । କେବଳ ବିଶ୍ୱାସ କରିପାରିଲେ ହେଲା । ଆମ ବିଚାରରେ କେବଳ ଯାଦୁ ବା ମନ୍ତ୍ର ଶକ୍ତିର ପରାକାଷ୍ଠା ବା ଉତ୍କର୍ଷତାର ପ୍ରଦର୍ଶନ ପାଇଁ ଏତେ ବଡ ରାମାୟଣ ଲେଖା ଯାଇନାହିଁ । ଏତକ ପାଇଁ କବି ଏତେ ବଡ ପୃଷ୍ଠଭୂମୀର ଅବତାରଣା କରି ନଥାନ୍ତେ । ତେବେ ଏ ସବୁ ପଛରେ କ'ଣ ଅଛି ? କ'ଣ ଥିବା ସମ୍ଭବ ତାହାହିଁ ବିଚାର୍ଯ୍ୟ ।

ଆଉ ଗୋଟିଏ ସଂଶୟ ମନରେ ସୃଷ୍ଟି ସାଭାବିକ ଯଦି ଥବଳା -- ଶବଳା ବଶିଷ୍ଠଙ୍କ ଅନୁମତି ପ୍ରାପ୍ତ ପରେ ନିଜକୁ ବିଶ୍ୱାମିତ୍ରଙ୍କ ହାତରୁ ରକ୍ଷା କରିବା ପାଇଁ ସୈନ୍ୟବାହିନୀ

ସୃଷ୍ଟି କଲା, ସେ ଥରକୁ ଥର ବିଭିନ୍ନ ସଂପ୍ରଦାୟ ଯଥା ଯବନ, ଶାକ, ପହଲବା ଇତ୍ୟାଦି ସଂପ୍ରଦାୟର ବାହିନୀ ସୃଷ୍ଟି କରିବାର ଯଥାର୍ଥତା ନଥିଲା । ତା'ପୁଣି ସେମାନେ ବାରମ୍ବାର ପରାସ୍ତ ହୋଇଛନ୍ତି ଓ ଶବଳା ତଦନୁସାରେ ନୂତନ ନୂତନ ବାହିନୀ (ନୂତନ ସଂପ୍ରଦାୟର)ନେଇ ଯୁଦ୍ଧ କରିଛି । ଯଦି ଆପଣାର ଆତ୍ମରକ୍ଷା କେବଳ ଉଦ୍ଦେଶ୍ୟ ହୋଇଥାଆନ୍ତା ଓ ଯାଦୁଶକ୍ତିର ପ୍ରୟୋଗ ହୋଇଥାନ୍ତା, ତେବେ ଏତେ ଲୀଳାଖେଳାର ଆବଶ୍ୟକତା ବା ଯଥାର୍ଥତା ହୁଏତ ନଥାନ୍ତା । ସିଧାସଳଖ ଏକ ଜିତିପାରିବା ବାହିନୀ ସୃଷ୍ଟି କରି ଶବଳା ନିଜକୁ ରକ୍ଷା କରି ପାରିଥାଆନ୍ତା । ମାତ୍ର ଏପରି ହୋଇନାହିଁ । ଗୋଟିକ ପରେ ଗୋଟିଏ ସଂପ୍ରଦାୟ (ସୈନ୍ୟ ବାହିନୀ) ସୃଷ୍ଟି ହୋଇଛନ୍ତି । ଗୋଟିଏ ସେନା ହାରିବା ପରେ ଆଉ ଗୋଟିଏ ସଂପ୍ରଦାୟର ସେନା ଆସିଛନ୍ତି ଓ ଶେଷରେ ଜିତିଛନ୍ତି ।

ଏ ସମସ୍ତ ବ୍ୟାପାରରୁ ମନେହୁଏ ରାମାୟଣର ଲେଖକଙ୍କ ଉଦ୍ଦେଶ୍ୟ ଅନ୍ୟ କିଛି । କେବଳ କିଛି ଚମତ୍କାରିତାର ବର୍ଣ୍ଣନା ପାଇଁ ଏତେ ବଡ କାବ୍ୟର ସୃଷ୍ଟି ହୋଇନାହିଁ । କ'ଣ ଉଦ୍ଦେଶ୍ୟ ? ରାମାୟଣର ବ୍ୟାପକ ପୃଷ୍ଠଭୂମି କଥା ଥରେ ଚିନ୍ତା କରନ୍ତୁ । ସମଗ୍ର ଭାରତବର୍ଷ ଆଫଗାନସ୍ଥାନ, ଇରାନ, ସିନ୍ଧୁ ଉପତ୍ୟକାରୁ ଆରମ୍ଭ କରି ହିମାଳୟର ତିବ୍ଦତ, ନେପାଳ ଅଞ୍ଚଳ ତଥା ଓଡିଶା ବଙ୍ଗରୁ ଆରମ୍ଭ କରି ପଶ୍ଚିମରେ ଆରବସାଗର ଓ ପୂର୍ବରେ ବଙ୍ଗୋପସାଗର ଓ ଦକ୍ଷିଣରେ ଲଙ୍କା ପର୍ଯ୍ୟନ୍ତ ବ୍ୟାପ୍ତ । ଅଚ୍ଚ ବହୁତେ ସମସ୍ତ ଅଞ୍ଚଳର କିଛି ନା କିଛି ଅବଦାନ, ସଂପୃକ୍ତି ରାମାୟଣରେ ରହିଛି । ସମସ୍ତ ଅଞ୍ଚଳର ଅଧିକାରୀ, ସେମାନେ ଶାକ୍ୟ ହୁଅନ୍ତୁ ବା ଯବନ, ରାକ୍ଷସ ବା ବାନର ହୁଅନ୍ତୁ, ସମସ୍ତଙ୍କ ଉଲ୍ଲେଖ ଏଥିରେ ଅଛି । କିଛି ନା କିଛି ସଂପୃକ୍ତି ସେଥିରେ ରହିଛି । ଏତେବଡ ବିସ୍ତୃତ ଅଞ୍ଚଳ, ଏତେ ପ୍ରକାର ସଂପ୍ରଦାୟ ଓ ସଭ୍ୟତାର ପୃଷ୍ଠଭୂମି ଉପରେ ରାମାୟଣ ଯେ ରଚିତ ହୋଇଛି ତାହା କୌଣସି ସଂକୀର୍ଣ୍ଣ, ଅକିଞ୍ଚନ ଉଦ୍ଦେଶ୍ୟ ପାଇଁ ନୁହେଁ । ଏହି ବିସ୍ତୃତ ଅଞ୍ଚଳର ସାମାଜିକ ମନ୍ଥନରୁ ରାମାୟଣର ସୃଷ୍ଟି ଓ ସେହି ବ୍ୟାପକ ବିସ୍ତାର ହେଉଛି ତା'ର ପୃଷ୍ଠଭୂମି । ବରଂ ରାମାୟଣକୁ ଏକ ସାମାଜିକ ଇତିହାସ ବୋଲି ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ । ଏକଥା ସତ୍ୟ ଯେ ହଜାର ହଜାର ବର୍ଷ ଧରି ବିଭିନ୍ନ ବାଖ୍ୟାକାରଙ୍କ ଦ୍ୱାରା ବାରମ୍ବାର ଲିଖିତ ଓ ବର୍ଣ୍ଣିତ ହେବା ପରେ ସେଥିରେ ଅନେକ କିଛି ପ୍ରକ୍ଷିପ୍ତ । ତା' ଭିତରୁ ମଞ୍ଜିଟି ଖୋଜି ବାହାର କରିବା ଏକଦମ୍ ହୁଏତ ଅସମ୍ଭବ । ମାତ୍ର ମଞ୍ଜିଟି ଅଛି ଓ ତା'ହେଉଛି ସେ ସମୟର ପରମ୍ପରା, ସଂପ୍ରଦାୟ, ସଭ୍ୟତା, ସମାଜର ଏକ ବାଖ୍ୟା, ଏକ ଇତିହାସ ।

ଏହି ପୃଷ୍ଠଭୂମିରେ ବଶିଷ୍ଠ ବିଶ୍ୱାମିତ୍ର ଦ୍ୱନ୍ଦ୍ୱ କଥା ପରୀକ୍ଷା ଯୁକ୍ତିଯୁକ୍ତ । ବିଶ୍ୱାମିତ୍ର କ୍ଷତ୍ରୀୟ, ଅହଂକାରୀ । ରାଜ୍ୟ ବିସ୍ତାର ନିଶା ହୁଏତ ରହିଛି । ଯେପରି ଅନେକ ଆର୍ଯ୍ୟ ନରପତିମାନଙ୍କର ରହିଛି । ସେଥିପାଇଁ ଅନୁସୃତ ପନ୍ଥା ହିସାବରେ ବ୍ରାହ୍ମଣ ଗୋଷ୍ଠୀର ସାହାଯ୍ୟ ସେ ନିଅନ୍ତି । ସେମାନଙ୍କୁ ସୁରକ୍ଷା ଦେବାକୁ ମଧ୍ୟ ସେ ଆଗ୍ରହୀ ଓ ତତ୍ପର । ତା ଯୋଗୁଁ ଅନେକ ଧନ ଜୀବନ କ୍ଷୟ ପାଇଁ ତାଙ୍କର ଶୋଚନା ନାହିଁ । ରାଜ୍ୟ ବିସ୍ତାର ଓ ଆର୍ଯ୍ୟ ସଂସ୍କୃତିର ପ୍ରଚାର ପାଇଁ ଅନେକଙ୍କ ପରି ତାଙ୍କର ଲକ୍ଷ୍ୟ ରହିଛି । ମନେହୁଏ ବଶିଷ୍ଠ ଏ ପ୍ରକାର ଲକ୍ଷ୍ୟ ନେଇ

ଏକମତ, ମାତ୍ର ଏ ପନ୍ଥାର ପୃଷ୍ଠପୋଷକ ନୁହନ୍ତି । ଆଶ୍ରମଟିଏ ସ୍ଥାପନ କରି ଯଥାସମ୍ଭବ ଶାନ୍ତ ବାତାବରଣ ଭିତରେ ଶିକ୍ଷା ଦାନ, ଧ୍ୟାନ, ଧାରଣା, ଯାଗଯଜ୍ଞ ତାଙ୍କର ଦୈନନ୍ଦିନ କାମ । ତା' ସହିତ ଆର୍ଯ୍ୟ ନୃପତିଙ୍କୁ ଉଚିତ୍ ଦିଗ୍‌ଦର୍ଶନ ଦେଇ ରାଜ୍ୟ ଶାସନରେ ସାହାଯ୍ୟ କରିବା ମଧ୍ୟ ତାଙ୍କ କାର୍ଯ୍ୟ ପ୍ରଣାଳୀର ଅନ୍ତର୍ଗତ । ସମାଜ ଶୃଙ୍ଖଳିତ ରହି, ସମସ୍ତ ନୀତି ନିୟମ ମାନି ଆଧ୍ୟାତ୍ମିକ ମାର୍ଗରେ, ଉତ୍କର୍ଷତା ଲାଭ କରିବା ତାଙ୍କ ପାଇଁ ଆର୍ଯ୍ୟ ଧର୍ମ । ସାମୂହିକ ସାମାଜିକ ବିକାଶ ତାଙ୍କର ଲକ୍ଷ୍ୟ । ସେଥିପାଇଁ ଅଯୋଧ୍ୟା ରାଜବଂଶ ସହ ଜଡିତ ଓ ଶାସନକୁ ଧର୍ମାନୁମୋଦିତ ପନ୍ଥାରେ ଚଳାଇବାରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଏହିସବୁ ଆଶ୍ରମଗୁଡିକ ରାଜାନୁଗ୍ରହ ତ ପ୍ରାପ୍ତ ଥିଲେ, ତାହା ସହିତ ସାଧାରଣ ଜନତାଠାରୁ ମଧ୍ୟ ଶ୍ରଦ୍ଧା, ସମ୍ମାନ ଓ ଆନୁଗତ୍ୟ ପାଉଥିଲେ । ଏଗୁଡିକ ବୈଷୟିକ ଦୃଷ୍ଟିରୁ ଅନେକ ସମୃଦ୍ଧ ଥିଲେ । ଆଶ୍ରମର ବିସ୍ତୃତ ଅଞ୍ଚଳରୁ ଏମାନେ ଫଳ, ପୁଷ୍ପ ସଂଗ୍ରହ କରୁଥିଲେ । ଶସ୍ୟ ଉତ୍ପନ୍ନ କରୁଥିଲେ । ସାଧାରଣ ଜନତା ତଥା ଶାସକଙ୍କ ଅନୁଗ୍ରହରୁ ଏମାନଙ୍କର କୌଣସି ଅଭାବ ନଥିଲା ବରଂ ଏମାନଙ୍କର ଭଣ୍ଡାରଗୁଡିକ ପରିପୂର୍ଣ୍ଣ ଥିଲା ।

ଏମାନେ ଅନେକ ଗାଈ ପାଳନ କରୁଥିଲେ । ଗାଈର କ୍ଷୀର, ଦହି, ଘିଅ ସେମାନଙ୍କର ଦୈନନ୍ଦିନ ବହୁ ପରିମାଣରେ ଆବଶ୍ୟକ ଥିଲା । ଆହାର ପାଇଁ ତଥା ଯଜ୍ଞାନୁଷ୍ଠାନ ପାଇଁ । ତେଣୁ ସେମାନଙ୍କ ପାଇଁ ଗାଈ ପ୍ରାଚୁର୍ଯ୍ୟର ସଙ୍କେତ । ଗୋଧନ କାମଧେନୁ, ଶବଳା ଏମାନେ ଗୋଟିଏ ଗୋଟିଏ ଜାତିଆ ଗାଈର ନାମ । ଏମାନେ ପ୍ରଚୁର କ୍ଷୀର ପ୍ରଦାନ କରୁଥିଲେ । ସାଧାରଣ ଗାଈ ତ ଥିଲେ ମାତ୍ର ଯାହା ପାଖରେ ଅଧିକ କ୍ଷୀର ଦେଉଥିବା ସୁସ୍ଥ ସବଳ ଉନ୍ନତ କିସମ ଗାଈ ଥିଲା, ତାହା ତା' ପାଇଁ ଅମୂଲ୍ୟ ସମ୍ପଦ ଥିଲା । ହୁଏତ ବଶିଷ୍ଠଙ୍କ ଶବଳା ଏହି ଜାତିଆ (breed) ଗାଈର ପ୍ରତୀକ ଓ ବଶିଷ୍ଠଙ୍କ ପାଖରେ ଏହି ପ୍ରକାର ଜାତିଆ ଗାଈ ଯଥେଷ୍ଟ ଥିବାରୁ ଅତିଥି ଚର୍ଚ୍ଚା ତାଙ୍କ ପାଇଁ ଅନେକ ସହଜ ଥିଲା ।

ଆଗରୁ ଯାହା କହିଛି, ଏହି ଆଶ୍ରମଗୁଡିକ ଧନସମ୍ପଦ ଦୃଷ୍ଟିରୁ ଅନେକ ବିତ୍ତବଶାଳୀ ଓ ସମ୍ପନ୍ନ ଥିଲେ । ଏମାନଙ୍କ ଶସ୍ୟ ଭଣ୍ଡାର ପରିପୂର୍ଣ୍ଣ ଥିଲା । ହଜାର ହଜାର ଅତିଥିଙ୍କୁ ଉପଯୁକ୍ତ ଚର୍ଚ୍ଚା କରିବା ଏମାନଙ୍କ ପକ୍ଷେ କଷ୍ଟକର ନଥିଲା । ଗୋଟିଏ ଉନ୍ନତ କିସମର ଗାଈ ଏକ ପ୍ରମୁଖ ସମ୍ପଦ ହୋଇଥିବାରୁ ବିଶ୍ୱାମିତ୍ର ତାକୁ ନେବାକୁ ଚାହିଁଛନ୍ତି ଓ ତା'ବଦଳରେ ଆଉ ଅନେକ ଗାଈ (ଅନ୍ୟ କିସମ) ଓ ଧନ ସମ୍ପଦ ଦେବାକୁ ଚାହିଁଛନ୍ତି । ଗାଈ ଯେ ଏକ ଅମୂଲ୍ୟ ସମ୍ପଦ ରୂପେ ଗଣା ଯାଉଥିଲା ତା'ର ଉଦାହରଣ ଉପଲବ୍ଧ । ରାମ ବନବାସ କରିବାକୁ ପ୍ରସ୍ତୁତ ହେବା ସମୟରେ ତାଙ୍କ ପାଖରେ ଯାହା କିଛି ଥିଲା ସବୁ କିଛି ଦାନ କରିଦେଇ ଆସୁଛନ୍ତି ଏବଂ ଶେଷରେ ଏକ ଦରିଦ୍ର ବ୍ରାହ୍ମଣ ଆସି (ତ୍ରିଜଟ) ଦାନ ପାଇଁ ପହଞ୍ଚିଛି । ସେତେବେଳକୁ ରାମଙ୍କ ପାଖରେ ଏକ ହଜାର ଗାଈ ବ୍ୟତୀତ ଆଉ କିଛି ନାହିଁ ଏବଂ ସେତକ ସେ ତ୍ରିଜଟକୁ ଦାନ ଦେଇଛନ୍ତି ଓ ବ୍ରାହ୍ମଣ ଖୁସୀ ମନରେ ସେତକ ଗ୍ରହଣ କରି ଆଶୀର୍ବାଦ କରି ପ୍ରସ୍ଥାନ କରିଛି ।

କେବଳ ତ୍ରେତୟା ଯୁଗ ନୁହେଁ, ଦ୍ୱାପର ଯୁଗର କଥା ଦେଖାଯାଉ । ବିରାଟ ରାଜାଙ୍କ ସୌଭାଗ୍ୟର ହେତୁ ଅସଂଖ୍ୟ ଉନ୍ନତ କିସମର ଗାଈ । ଦୁର୍ଯ୍ୟୋଧନ ସେତକ ହରଣ କରିବାକୁ ସୈନ୍ୟ ସାମନ୍ତ ନେଇ ପହଞ୍ଚିଛି । ଲକ୍ଷ୍ୟ କରିବାର କଥା ଗୋଧନ ଏକ ପ୍ରମୁଖ ଧନ ଥିଲା ଓ ଯାହା ପାଖରେ ଉନ୍ନତ କିସମର ଗୋଧନ ଥିଲା, ସେ ବିତ୍ତବଶାଳୀରେ ଗଣା ଯାଉଥିଲା ଓ ଅନେକଙ୍କର ଈର୍ଷାର ପାତ୍ର ଥିଲା ।

ଏହି ଆଶ୍ରମଗୁଡିକ ଗୋଧନରେ ବିତ୍ତଶାଳୀ ତ ଥିଲେ ତା ସହିତ ଅନ୍ୟାନ୍ୟ ଖାଦ୍ୟ ଶସ୍ୟ ଇତ୍ୟାଦିରେ ମଧ୍ୟ ବିତ୍ତବଶାଳୀ ଥିଲେ । ତେଣୁ ଭରଦ୍ୱାଜ ବା ବଶିଷ୍ଠଙ୍କ ଆଶ୍ରମରେ ହଜାର ହଜାର ଅତିଥିଙ୍କ ଉପଯୁକ୍ତ ଚର୍ଚ୍ଚା ପାଇଁ ସ୍ୱଳ୍ପ ସମୟ ମଧ୍ୟରେ ଯେଉଁ ସୁବନ୍ଦୋବସ୍ତ ତାହା ପଛରେ ଏହି ପ୍ରାଚୁର୍ଯ୍ୟ ତଥା ସାଧାରଣ ଜନତାର ଅକୁଣ୍ଠ ସାହାଯ୍ୟ ତଥା ଆନୁଗତ୍ୟରୁ ହୁଏତ ସମ୍ଭବ ହୋଇ ଥାଇପାରେ । ଆମେ ଯଦି ଏହି ଯୁକ୍ତିଟି ଗ୍ରହଣ କରିବା ତେବେ ମାୟାଜାଲ, ସମ୍ମୋହନ, ଗାଈର ଯାଦୁଶକ୍ତି ଏ ସବୁର ଜାଲରେ ଆମକୁ ଛନ୍ଦିହେବାକୁ ପଡିବନାହିଁ ।

ବିଶ୍ୱାମିତ୍ର ବଶିଷ୍ଠ ବିବାଦର ଗୋଟିଏ କାରଣ ହେଲା ଯେ ବଶିଷ୍ଠଙ୍କ ଆଶ୍ରମରେ ଥିବା ଉନ୍ନତ କିସମର ଗାଈ (ଶବଳା) ଅଧିକାର ପାଇଁ ବିଶ୍ୱାମିତ୍ରଙ୍କର ଲୋଭ ଓ ବଳ ପ୍ରୟୋଗ । ବଳ ପ୍ରୟୋଗର ପରିଣାମ ସ୍ୱରୂପ ଯେଉଁ ଦ୍ୱନ୍ଦ ଉପୁଜିଛି, ଯେଉଁ ଯୁଦ୍ଧ ହୋଇଛି, ତାହା ରାମାୟଣରେ ଯେପରି ବର୍ଣ୍ଣିତ ହୋଇଛି ହୁଏତ ଘଟଣା ସେପରି ଘଟି ନାହିଁ । ଏ ଯୁଦ୍ଧ କେତେଦିନ, କେତେ ମାସ ଲାଗିଛି ତାହା ଉଲ୍ଲେଖ ନାହିଁ । ମାତ୍ର ବର୍ଣ୍ଣନାରୁ ମନେ ହେବ ଯେ ଶବଳା ଆଖି ପିଛୁଳାକେ ହଜାର ହଜାର ସୈନ୍ୟ ସୃଷ୍ଟି କରିଛି ଓ ସେମାନେ ପରାସ୍ତ ହେବା ମାତ୍ରକେ ଆଖି ପିଛୁଳାକେ ଅନ୍ୟ ଏକ ସମ୍ପ୍ରଦାୟର ସୈନ୍ୟଙ୍କୁ ସୃଷ୍ଟି କରି ଯୁଦ୍ଧକୁ ପଠାଇଛି । ମନେହୁଏ ଏ ଯୁଦ୍ଧ ମାତ୍ର କେତେ ଘଣ୍ଟା ମଧ୍ୟରେ ଶେଷ ହୋଇଯାଇଛି । ଯଦିଓ ସମୟ କଥାଟା ରାମାୟଣରେ କେଉଁଠାରେ ଉଲ୍ଲେଖ ନାହିଁ । ତେଣୁ ଏ ଯୁଦ୍ଧର ସ୍ୱରୂପ କ'ଣ ହୋଇଥିବା ସମ୍ଭବ ତାହା ରାମାୟଣ ପୃଷ୍ଠାରୁ ଖୋଜିବାକୁ ହେବ । ଶବଳା ଯେଉଁ ସବୁ ସୈନ୍ୟସାମନ୍ତ ଯୋଦ୍ଧାମାନଙ୍କୁ ସୃଷ୍ଟି କରିଥିଲା, ସେମାନେ ଥିଲେ ମୁଖ୍ୟତଃ ତିନୋଟି ଜାତିର -- ପହଲବା, ଯବନ (ଶାକ) ଓ କାମ୍ୱୋଜ । ମାତ୍ର କେଇ ଘଣ୍ଟାରେ ଏତେ ବଡ ବିଶାଳ ସୈନ୍ୟବାହିନୀ ଶବଳା ବାରମ୍ବାର ନିଜ ଶରୀରରୁ ଉପୁଜାଇ ଶେଷରେ ଯୁଦ୍ଧରେ ଜୟଲାଭ କରିବା ବର୍ଣ୍ଣନାକୁ ଏଇଠାରେ ରଖିଦେଇ ଏ ଯୁଦ୍ଧର ବିକଳ୍ପ ସମ୍ଭାବ୍ୟ ସ୍ୱରୂପ ଖୋଜିବା ଆବଶ୍ୟକ ।

ଏ ପହଲବା ଜାତି ବା ସଂପ୍ରଦାୟ କିଏ? ଏମାନେ ହେଉଛନ୍ତି ଇରାନ୍‌ର ବାସିନ୍ଦା । ଶାକ(Greek)ମାନଙ୍କୁ ସେତେବେଳେ ଯବନ ଆଖ୍ୟା ଦିଆଯାଉଥିଲା ।

କାମ୍ୱୋଜ ମଧ୍ୟ ଇରାନର ଆଉ ଗୋଟିଏ ସମ୍ପ୍ରଦାୟ । ଗ୍ରୀକ୍ ଆକ୍ରମଣର ପୂର୍ବରୁ ଓ ପରେ କାମ୍ୱୋଜମାନେ ଭାରତର ବିଭିନ୍ନ ଅଞ୍ଚଳ ବିଶେଷ କରି ଉତ୍ତରାଞ୍ଚଳ ଓ ଉତ୍ତର-ପୂର୍ବ

ଅଞ୍ଚଳରେ କ୍ଷୁଦ୍ର କ୍ଷୁଦ୍ର ବସତି ସ୍ଥାପନ କରି ଜଣେ ଜଣେ ଦଳପତିଙ୍କ ନେତୃତ୍ୱ ଶାସନରେ ରହିଥିଲେ । ସେମାନେ ଆର୍ଯ୍ୟ ଏବଂ କ୍ଷତ୍ରୀୟ । ମନେରଖିବାକୁ ହେବ ଯେ ଇରାନ ମଧ୍ୟ, ଏକଦା ଆର୍ଯ୍ୟମାନେ ଗାଂଗେୟ ଉପତ୍ୟକାରେ ପହଞ୍ଚିବା ପୂର୍ବରୁ ଆର୍ଯ୍ୟଭୂମି ଥିଲା । କ୍ରମେ କ୍ରମେ ସେଠାରୁ ବିଭିନ୍ନ କାରଣରୁ କିଛି ଆର୍ଯ୍ୟ ଗୋଷ୍ଠୀ ପୂର୍ବ ତଥା ଉତ୍ତରକୁ ଦେଶାନ୍ତରୀ ହୋଇଥିଲେ । କାମ୍ବୋଜମାନଙ୍କର ମୁଖ୍ୟ ଭୂମି ଥିଲା ଗାନ୍ଧାରର ପଶ୍ଚିମରେ ପୂର୍ବ ଓ ଉତ୍ତର ଆଫଗାନିସ୍ଥାନ ଅଞ୍ଚଳ । କାମ୍ବୋଜମାନେ ଚମତ୍କାର ଅଶ୍ୱାରୋହୀ ଥିଲେ । ସେମାନଙ୍କୁ ଅଶ୍ୱକା ବା Horseman ବୋଲି କୁହାଯାଉଥିଲା । ସେ ଅଞ୍ଚଳରୁ ଉନ୍ନତ କିସମର ଅଶ୍ୱ ସେମାନେ ଆଣି ଭାରତର ଶାସକମାନଙ୍କୁ ବିକ୍ରି କରୁଥିଲେ । ତେଣୁ ସାମଗ୍ରିକ ଭାବରେ ଦେଖିଲେ ଶହ ଶହ ବର୍ଷ ଭିତରେ ଯେଉଁ ଉତ୍ଥାନ ପତନ, ପରିବର୍ତ୍ତନ ଏ ଭୂମିରେ ଘଟିଛି ସେଥିରେ କାମ୍ବୋଜ, ଶାକ, ପହଲବା ଇତ୍ୟାଦି ଗୋଷ୍ଠୀ ଭାରତରେ ପ୍ରବେଶ କରି ସିନ୍ଧୁ, ସୌରାଷ୍ଟ୍ର, ରାଜସ୍ଥାନ, ପଞ୍ଜାବ ତଥା ଆହୁରି ଉତ୍ତର-ପୂର୍ବକୁ ଯାଇ ତିବ୍ବତର ଦକ୍ଷିଣାଞ୍ଚଳରେ କ୍ଷୁଦ୍ର କ୍ଷୁଦ୍ର ବସତି/ରାଜ୍ୟ ସ୍ଥାପନ କରି ଶାସନ କରୁଥିଲେ ।

ଏତକ ହେଉଛି ଇତିହାସର ବିଷୟବସ୍ତୁ । ଗବେଷକଙ୍କ ମତାମତ ଏଠାରେ ମୁଁ କିଛି କିଛି ଉଦ୍ଧାର କରିଛି, ଆଉ ତା'ରି ଭିତ୍ତିଭୂମି ଉପରେ ମୋର ସମୀକ୍ଷା ଠିଆ କରାଇବି । ଇତିହାସର ଏହି ସିଦ୍ଧାନ୍ତ ନେଇ ହୁଏତ ଦ୍ୱିମତ ଥାଇପାରେ । ମାତ୍ର ସେ ସମ୍ପର୍କରେ କିଛି ମତାମତ ଦେବା ମୋ ପ୍ରସଙ୍ଗ ପରିସର ବାହାରେ ।

ଏମାନେ ମୂଳତଃ ଆର୍ଯ୍ୟ ଥିଲେ । ମାତ୍ର ଭାରତର ଗାଙ୍ଗେୟ ଭୂମିରେ ବହୁ ବର୍ଷ ଧରି ରହି ଆସିଥିବା ଦେଶାନ୍ତରୀ ଆର୍ଯ୍ୟମାନଙ୍କଠାରୁ ସେମାନଙ୍କ ଆଚରଣ, ସ୍ୱଭାବ ଏତେ ବର୍ଷର ବ୍ୟବଧାନ ପରେ ବାରି ହୋଇ ପଡିବା ପରି ଭିନ୍ନ ହୋଇଥିବା କିଛି ଅସମ୍ଭବ ନୁହେଁ ।

ହୁଏତ ବ୍ରାହ୍ମଣ ଗୋଷ୍ଠୀଙ୍କ ମଧ୍ୟରୁ ଅନେକ ରକ୍ଷଣଶୀଳ ପୁରୋଧା ଏମାନଙ୍କୁ ପୂର୍ଣ୍ଣ ଆର୍ଯ୍ୟର ମର୍ଯ୍ୟାଦା ଦେବାକୁ ଇଚ୍ଛୁକ ନଥିଲେ । ତେଣୁ ସମାଜ, ସଭ୍ୟତା ସେ ସମୟରେ ଗୋଟାଏ ବଡ ଅସ୍ଥିର ଓ ତରଳ ଅବସ୍ଥା ଦେଇ ଗତି କରୁଥିଲା । ବିଶ୍ୱାମିତ୍ର ବଶିଷ୍ଠ ଦ୍ୱନ୍ଦ୍ୱ ଓ ଯୁଦ୍ଧର ସ୍ୱରୂପ ଏହି ପୃଷ୍ଠଭୂମିରେ ବିଚାର କଲେ ଅଧିକ ପ୍ରାସଂଗିକ ବୋଲି ମନେହେବ ।

ଏ ସବୁ ସମ୍ପ୍ରଦାୟ କ୍ଷୁଦ୍ର କ୍ଷୁଦ୍ର ବସତି ବା ରାଜ୍ୟ ସ୍ଥାପନ କରି ଜଣେ ଜଣେ ଦଳପତି ଅଧିନରେ ଶାସିତ ହେଉଥିଲେ । ଅନେକ ସମର୍ଥ ଆର୍ଯ୍ୟ କ୍ଷତ୍ରୀୟ ନୃପତି ଏମାନଙ୍କୁ ସମକକ୍ଷ ଆସନ ଦେବା ନେଇ ହୁଏତ ବିମୁଖ ଥିଲେ । ବିଶ୍ୱାମିତ୍ର ହୁଏତ ଏହି ପ୍ରକାର ଜଣେ ଅହଂକାରୀ ନୃପତି ଥିଲେ । ଏମାନଙ୍କୁ ନିଜ ଅଧିନରେ ଜଣେ ଜଣେ ସାମନ୍ତ ରାଜା ଭାବରେ ରଖିବାକୁ ହୁଏତ ବିଶ୍ୱାମିତ୍ର ଉଦ୍ୟମ ଜାରୀ ରଖିଥିଲେ । ମାତ୍ର ଏହି ଗୋଷ୍ଠୀ ବା ସେମାନଙ୍କର ଦଳପତି ଅତ୍ୟନ୍ତ ସମର୍ଥ ଯୋଦ୍ଧା ଏବଂ ଦୁର୍ଦ୍ଧର୍ଷ ସୈନିକ ହୋଇଥିବାରୁ ସେମାନେ କାହାରି ଅଧିନରେ ସାମନ୍ତ ରାଜା ହୋଇ ରହିବାକୁ ପସନ୍ଦ କରୁ ନଥିଲେ । ଏହି ମତଭେଦ, ଅହଂକାର ଭାବ ସମାଜରେ ସେତେବେଳେ ଅନେକ ବିଶୃଙ୍ଖଳା ସୃଷ୍ଟି କରିଥିବ

ଏବଂ ଆର୍ଯ୍ୟମାନଙ୍କ ଭିତରେ ଆଭ୍ୟନ୍ତରୀଣ ଶୃଙ୍ଖଳା ଓ ଶାନ୍ତି ବଜାୟ ରଖିବା ପାଇଁ ବଶିଷ୍ଠଙ୍କ ପରି ଅନେକ ହୁଏତ ବିଶ୍ୱାମିତ୍ରଙ୍କର ଏ ପ୍ରକାର ଉଦ୍ୟମକୁ ବିରୋଧ କରୁଥିଲେ ଓ ବିରୋଧୀ ଗୋଷ୍ଠୀର ପ୍ରମୁଖ ହୁଏତ ଥିଲେ ବଶିଷ୍ଠ। ତାଙ୍କୁ ଅବମାନନା କରି ଏହି ଦଳପତି ତଥା ସେମାନଙ୍କର କ୍ଷୁଦ୍ର ରାଜ୍ୟଗୁଡିକୁ ନିଜର ଅଧୀନକୁ ଆଣିବା ବିଶ୍ୱାମିତ୍ରଙ୍କ ପକ୍ଷରେ ସମ୍ଭବ ନଥିଲା। କାରଣ ବଶିଷ୍ଠଙ୍କ ପଛରେ ଥିଲା ଅଯୋଧ୍ୟା ରାଜଶକ୍ତି। ଏହି କ୍ଷୁଦ୍ର ରାଜ୍ୟଗୁଡିକ ଏବଂ ତାଙ୍କର ଶାସକ ସେ ଦୃଷ୍ଟିରୁ ବଶିଷ୍ଠଙ୍କ ପ୍ରତି ଅନୁଗତ ରହିଥିବା ସାଭାବିକ।

ଦ୍ୱନ୍ଦର ମୁଖ୍ୟ କାରଣ ହୁଏତ ଏଇଟି। ଶବଳା ପ୍ରତୀକ ମାତ୍ର।

ବଶିଷ୍ଠଙ୍କୁ ପ୍ରଭାବିତ କରିବା ଯେକୌଣସି ଉପାୟରେ ହେଉ ପଛେ, ବିଶ୍ୱାମିତ୍ରଙ୍କ ମୁଖ୍ୟ ଉଦ୍ଦେଶ୍ୟ। ତା ନହେଲେ ବିନା କାରଣରେ ସହସ୍ରାଧୀକ ସୈନ୍ୟସାମନ୍ତ, ହାତୀ ଘୋଡାର ପଲଟଣ ନେଇ ସେ ତାଙ୍କ ଆଶ୍ରମକୁ ଯିବା ପାଇଁ କୌଣସି ଜରୁରୀ ଆବଶ୍ୟକତା ନଥିଲା। ହୁଏତ ବଶିଷ୍ଠଙ୍କୁ ନିଜର ଶକ୍ତି, ସାମର୍ଥ୍ୟ ଓ ସାମରିକ ଶକ୍ତିର କିଛିଟା ପରିଚୟ ଦେବା ପାଇଁ ସେ ସେଠାକୁ ଯାଇଥିଲେ। ହୁଏତ ବଶିଷ୍ଠଙ୍କୁ ନିଜପଟକୁ ଆଣି ପାରିଲେ, ତାଙ୍କ ସମର୍ଥନ ହାସଲ କରି ପାରିଲେ ଏ ସମସ୍ତ ଦଳପତି ବା ସେମାନଙ୍କର କ୍ଷୁଦ୍ର ରାଜ୍ୟଗୁଡିକ ତାଙ୍କ ରାଜ୍ୟରେ ସାମିଲ ହେଇ ପାରିବ। ଏପରି ଗୋଟିଏ ଲୁକ୍କାୟିତ ଇଚ୍ଛା ବିଶ୍ୱାମିତ୍ରଙ୍କ ମନରେ ଥିଲା। ସେହି କାରଣରୁ ହୁଏତ ସେ ବଶିଷ୍ଠଙ୍କ ଆଶ୍ରମକୁ ଯାଇଥିଲେ। ବଶିଷ୍ଠ ତାଙ୍କ ପ୍ରସ୍ତାବରେ ହୁଏତ ରାଜି ହୋଇ ନାହାନ୍ତି। ବିଶ୍ୱାମିତ୍ର ଅହଂକାରୀ। ତାଙ୍କୁ ଏହା ବାଧିଛି ଓ ଶବଳାର ଦ୍ୱାହି ଦେଇ ସେ ବଶିଷ୍ଠଙ୍କୁ ପାନେ ଦେବା ପାଇଁ ନିଜର କ୍ଷତ୍ରୀୟ ରୂପ ଦେଖାଇଛନ୍ତି।

ବଶିଷ୍ଠଙ୍କ ଆଶ୍ରମର ଅତିଥି ଚର୍ଚ୍ଚାରେ ସେ ନିଜେ ଅଭିଭୂତ ହୋଇ ପଡିଲେ। ବଶିଷ୍ଠଙ୍କ ସମାଜ ଉପରେ, ଜନତା ଉପରେ ପ୍ରଭାବ ସେ ଆଗରୁ ଜାଣିଥିଲେ। ମାତ୍ର ତାଙ୍କ ଆଶ୍ରମର ବିଭବ ଯେ କୌଣସି ରାଜାଠାରୁ କମ୍ ନୁହେଁ ତାହା ସେ ନିଜ ଆଖିରେ ଦେଖି ବିସ୍ମିତ ହେଲେ।

ସେତେବେଳର ଅନେକ ଆଶ୍ରମ ସେହିପରି ବିଭବଶାଳୀ ଥିଲେ। ଆଜିକାର ଯୁଗରେ ମଧ୍ୟ ଆମର ଅନେକ ମଠ, ମନ୍ଦିରର ବିତ୍ତ ଅକଳ୍ପନୀୟ। ଉଦାହରଣ -ସ୍ୱରୂପ କେରଳର ସ୍ୱାମୀ ପଦ୍ମନାଭ ମନ୍ଦିର, ଗୁରୁବାୟୁର, ତିରୁପତି ଭେଙ୍କଟେଶ୍ୱର ଓ ସାଇବାବାଙ୍କ ଆଶ୍ରମକୁ ନିଆଯାଇପାରେ। ଏଥିରେ ବିସ୍ମିତ ହେବାର କିଛି ନାହିଁ। କାରଣ ସାଧାରଣ ଜନତାର ଶ୍ରଦ୍ଧା ଓ ବିଶ୍ୱାସ ଓ ଦାନରୁ ସେମାନଙ୍କର ସମୃଦ୍ଧି। ମାତ୍ର ଏ ସବୁ ମଠ ଆଶ୍ରମ ବା ମନ୍ଦିରର ସାଧାରଣ ଜନତା ଉପରେ ପ୍ରଭାବର କଳ୍ପନା କରି ହେବ ନାହିଁ। ଯଦି କେହି ଏ ସବୁ ଆଶ୍ରମ ଓ ମନ୍ଦିରର ପୃଷ୍ଠପୋଷକତା ଲାଭ କରେ, ସମର୍ଥନ ଲାଭ କରେ ତାହା ଗୋଟାଏ ରାଜ୍ୟକୁ ଜିଣି କରାୟତ କରିବା ସହ ସମାନ। କାରଣ ସାଧାରଣ ଜନତା/ଭକ୍ତ/ଆଶ୍ରିତ ବିନା ଦ୍ୱିଧାରେ ମଠ, ମନ୍ଦିର ବା ଆଶ୍ରମର ନିଷ୍ପତ୍ତି ହିଁ ଗ୍ରହଣ କରି ନିଅନ୍ତି। ଆମ ଓଡିଶା କଥା ଦେଖନ୍ତୁ। ଯଦି ଗଜପତି ମହାରାଜା ନିଜେ ବା ତାଙ୍କ ଅକୁଣ୍ଠିତ ସମର୍ଥନରେ କେହି

ଭୋଟ ମାଗେ, ଖୋର୍ଦ୍ଧାର ସମଗ୍ର ପାଇକବାହିନୀ ବିନା ବିଚାରରେ ସେମାନଙ୍କର ସମର୍ଥନ ଅଜାଡି ଦେବେ, ଅତୀତରେ ବହୁବାର ଏହା ପରିକ୍ଷିତ ହୋଇଛି। ସେହିପରି ମୁକ୍ତି ମଣ୍ଡପ ବା ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ। କୌଣସି ଜଟୀଳ ଧାର୍ମିକ ପରମ୍ପରା ନେଇ କିଛି ମତପାର୍ଥକ୍ୟ ଉପୁଜିଲେ ଜନତା ସେମାନଙ୍କ ଦିଗଦର୍ଶନକୁ ଆଜି ମଧ୍ୟ ଚାହିଁ ରହୁଛି ଓ ତାଙ୍କର ସିଦ୍ଧାନ୍ତ ହିଁ ବିନା ପ୍ରଶ୍ନରେ ଗ୍ରହଣ କରିଯାଉଛି।

ଆଜିକାର ଯୁଗରେ ଯଦି ଏକଥା ଘଟୁଛି, ପାଞ୍ଚ ହଜାର ବର୍ଷରୁ ଉର୍ଦ୍ଧ୍ୱ ସମୟ ପୂର୍ବେ ଅବସ୍ଥା କିପରି ଥିବ ତାହା ଅନୁମାନ କରାଯାଇପାରେ। ଏପରି ଆଶ୍ରମ/ମହର୍ଷିଙ୍କର ସାହାଯ୍ୟ ସମର୍ଥନ ହାସଲ କରାଯାଇପାରିଲେ, ଗୋଟାଏ ବିସ୍ତୀର୍ଣ୍ଣ ଅଞ୍ଚଳର ଜନତା ବା କ୍ଷୁଦ୍ର କ୍ଷୁଦ୍ର ଦଳପତିମାନଙ୍କର ସମର୍ଥନ ଓ ଆନୁଗତ୍ୟ ମଧ୍ୟ ମିଳିପାରିବ। ଏହା ହୁଏତ ବିଶ୍ୱାମିତ୍ରଙ୍କ ଲକ୍ଷ୍ୟ ଥାଇପାରେ। ସଠିକ୍ ଭାବରେ କ'ଣ ଥିଲା ତାଙ୍କର ଉଦ୍ଦେଶ୍ୟ ତାହା କହିବା ସମ୍ଭବ ନୁହେଁ। କେବଳ ସମୟ ଓ ପରିବେଶକୁ ବିଚାରକୁ ନେଇ କ'ଣ ହୋଇଥାଇପାରେ ତାହାହିଁ ଅନୁମାନ କରିବା କଥା।

ଇଏତ ହେଲା ଗୋଟିଏ ସମ୍ଭାବ୍ୟ କାରଣ। ଆଉ ମଧ୍ୟ ଏପରି ହୋଇପାରେ ବିଭବ ଓ ଐଶ୍ୱର୍ଯ୍ୟ ପ୍ରତି ଈର୍ଷା।

ସେ ଯାହାହେଉ ବିଶ୍ୱାମିତ୍ରଙ୍କୁ ବଶିଷ୍ଠଙ୍କର ବିଭବ ହୁଏତ ସହ୍ୟ ହୋଇନାହିଁ। ମନେ ରଖିବାର କଥା ସେତେବେଳକୁ ସେ ଜଣେ କ୍ଷତ୍ରୀୟ ନୃପତି ମାତ୍ର। ସ୍ୱାଭାବିକ ଭାବେ ଅହଂକାରୀ ଓ ଈର୍ଷାପରାୟଣ। ସନ୍ନ୍ୟାସୀ ହୋଇ ମହର୍ଷି ପଦ ପାଇବାକୁ ଅନେକ ଡେରି ଅଛି। ଏବଂ ଏ ସମୃଦ୍ଧି ଏ ବିଭବର ଉତ୍ସ ବଶିଷ୍ଠଙ୍କ ଗୋଧନ ବୋଲି ବୁଝିବା ପରେ ସେତକ ସେ ନେବା ପାଇଁ ଜିଦ୍ କରିଛନ୍ତି। (ରାମାୟଣରେ ଗୋଟିଏ ଗାଈ ଶବଳା ଏ ସବୁର ଉତ୍ସ ବୋଲି ବର୍ଣ୍ଣନା ରହିଛି। ଆମ ବିଚାରରେ ଶବଳା ମାତ୍ର ଗୋଟିଏ ଉନ୍ନତ କିସମର ଗାଈ ଓ ଏହି କିସମର ଅନେକ ଗୋଧନରେ ବଶିଷ୍ଠଙ୍କ ଆଶ୍ରମ ବିତ୍ତବଶାଳୀ ଥିଲା।) ଏଇଠୁ ଦ୍ୱନ୍ଦ୍ୱ ଆରମ୍ଭ ହୋଇଛି। ଯେଉଁ ଯୁଦ୍ଧ ହୋଇଛି ସେଥିରେ ଏଇ ପହଲବୀ, ଶାକ, କାମ୍ବୋଜ ଏମାନଙ୍କ ଦଳପତିମାନେ ବଶିଷ୍ଠଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି। ତେଣୁ ଏ ଯୁଦ୍ଧ କେଇ ଘଣ୍ଟାରେ ନିର୍ଣ୍ଣାୟକ ଅବସ୍ଥାରେ ପହଞ୍ଚି ନାହିଁ। କାରଣ ଥରକୁ ଥର ବିଭିନ୍ନ ସମ୍ପ୍ରଦାୟ ବଶିଷ୍ଠଙ୍କ ପ୍ରତି ଆନୁଗତ୍ୟ ସରୂପ ଆସି ଆଶ୍ରମକୁ ଆକ୍ରମଣରୁ ରକ୍ଷା କରିବାକୁ ଯୁଦ୍ଧ କରିଛନ୍ତି। ତେଣୁ ଏହା ନିର୍ଣ୍ଣାୟକ ସ୍ତରରେ ପହଞ୍ଚିବା ପାଇଁ ଅନେକ ଦିନ ଲାଗିଥିବ ନିଶ୍ଚୟ ଏବଂ ଏହାର ସମୟ ସୀମା ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ। ମାତ୍ର ଏହା କେଇ ଘଣ୍ଟାରେ ଶେଷ ହୋଇଛି ବୋଲି ବିଶ୍ୱାସ କରିବା ମଧ୍ୟ ସମ୍ଭବ ନୁହେଁ।

ବିଶ୍ୱାମିତ୍ର ଶେଷରେ ପରାସ୍ତ ହୋଇଛନ୍ତି। ସୈନ୍ୟସାମନ୍ତ, ପୁତ୍ର ହରାଇଛନ୍ତି ଓ ବ୍ରହ୍ମଶକ୍ତି ଆଗରେ ତାଙ୍କର କ୍ଷତ୍ରୀୟଶକ୍ତି ଅତ୍ୟନ୍ତ ମୂଲ୍ୟହୀନ ବୋଲି ସୀକାର କରି ବଶିଷ୍ଠଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ତପସ୍ୟା କରିବାକୁ ହିମାଳୟ ଯାଇଛନ୍ତି। ଏସବୁ ଏବଂ ଏହା ପରର ଘଟଣା ଏଠାରେ ଆଲୋଚ୍ୟ ନୁହେଁ।

# ଅହଲ୍ୟା ଉପାଖ୍ୟାନ

ଅହଲ୍ୟା ସୃଷ୍ଟିକର୍ତ୍ତାଙ୍କ ମାନସ କନ୍ୟା ଅର୍ଥାତ୍ ପାଳିତା କନ୍ୟା । ପିଲାଦିନୁ ମାତୃସ୍ନେହରୁ ବଞ୍ଚିତା । ପାଳକ ପିତା ଅନେକ କାର୍ଯ୍ୟ ବ୍ୟସ୍ତ । କନ୍ୟାର ଉପଯୁକ୍ତ ପାଳନ ପାଇଁ ତାଙ୍କ ପାଖରେ ସମୟ ଅଭାବ । ବାଳୁତ କାଳ ଅହଲ୍ୟାଙ୍କର କଟିଛି ଦାସଦାସୀ, ଧାଈମାନଙ୍କର ତତ୍ତ୍ୱାବଧାନରେ । ଝିଅର ମାନସିକତା ବୁଝିବା ପାଳକ ପିତା ପାଖରେ ସମ୍ଭବ ହୋଇନାହିଁ । ଦାସଦାସୀ ଗହଣରେ ପ୍ରତିପାଳିତା କନ୍ୟା କାହାପାଖରେ ମନଖୋଲି କଥା ହେବାର ସୁଯୋଗ ପାଇନାହିଁ । ଝିଅଟି ତା'ର ମନର କଥା ଏହି ବଢ଼ନ୍ତା ବୟସରେ ମା'ଙ୍କ ପାଖରେ ଯେପରି କହିପାରିବ, ଅନ୍ୟପାଖରେ ସେପରି କହିପାରିବ ନାହିଁ । ବାପା ପାଖରେ ତ କଦାପି ନୁହେଁ । ବାପା ଯଦି ବିଖ୍ୟାତ ହୋଇଥିବେ ତେବେ ତ ବ୍ୟବଧାନ ସେହି ଅନୁସାରେ ଲମ୍ବିଯିବ । ଝିଅଟିର ବୟସ ବଢ଼ିବା ସହିତ ବାଳୁତରୁ କିଶୋର, ତାପରେ ଯୌବନ ପ୍ରାପ୍ତି ପର୍ଯ୍ୟନ୍ତ ମାନସିକ ସ୍ତରରେ ଯେଉଁ ପରିବର୍ତ୍ତନ ଓ ମନ୍ଥନ ଚାଲୁଥାଏ ତା କେବଳ ମା'ଟି ବୁଝିପାରେ । ଝିଅର ମୁହଁ ଦେଖି ଯେ ଭିତରଟା ପଢ଼ିପାରେ ତାହା କେବଳ ଜଣଙ୍କ ଦ୍ୱାରା ସମ୍ଭବ, ସେ ହେଉଛି ମା' । ଆଉ ସେହି ଅନୁଯାୟୀ ମା' ଝିଅକୁ ବାଟ ଦେଖାଏ, ସାହସ ଦିଏ ବା ନିବୃତ୍ତ କରାଏ । ଯେଉଁ ବିଳାସ ଓ ସୌଭାଗ୍ୟରୁ ଅହଲ୍ୟା ଆଜନ୍ମ ବଞ୍ଚିତା ।

ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ କ୍ଷେତ୍ରରେ ଯୌବନ ପ୍ରାପ୍ତ କନ୍ୟାର ମାନସିକତା ବୁଝିବା ପାଇଁ ନା ଥିଲା ସମୟ ନା ଆଗ୍ରହ । କିଶୋର ଅବସ୍ଥାରୁ ଝିଅଟି ମନରେ ସଂଘଟିତ ହୋଇଚାଲେ ଅନେକ ମନ୍ଥନ । ବୟସ ବଢ଼ିବା ସହିତ ଯୌବନ ଆସିବା ସହିତ ସେହି ମନ୍ଥନରୁ ହୁଏତ ଅମୃତ ବାହାରେ ବା ବିଷ ବାହାରେ । ସେହି ସମୟ, ସେହି କେତୁଟା ବର୍ଷ ଗୋଟିଏ ଝିଅ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଉପଯୁକ୍ତ ମାର୍ଗ ଦର୍ଶନ, ଉପଯୁକ୍ତ ଅଭିଭାବକତ୍ୱ, ସମ୍ବେଦନଶୀଳତା ସେହି ସମୟରେ ଝିଅଟି ପାଇଁ ଅତ୍ୟନ୍ତ ଜରୁରୀ ।

ମାତ୍ର ବ୍ରହ୍ମା ସେ ସବୁର ଧାର ଧାରିନାହାନ୍ତି । ଚିରାଚରିତ ଢ଼ଙ୍ଗରେ ଲାଳନପାଳନ ଭାର, ଦୈନିକ ଦେଖାଶୁଣା ଦାୟୀତ୍ୱ ପରିଚାରିକାମାନଙ୍କ ହାତରେ ସମର୍ପି ଦେଇଥିଲେ ।

ପରିଚାରିକାଟିଏ ଆଉ ଯାହାହେଉ ମା' ହେବା ସମ୍ଭବ ନୁହେଁ। ତେଣୁ ଅହଲ୍ୟାଙ୍କର ମାନସିକତା ବୁଝିବା ଏବଂ ସେହି ଅନୁସାରେ ସାହାଯ୍ୟ କରିବା, ଉପଦେଶ ଦେବା ପରିଚାରିକା କ୍ଷେତ୍ରରେ ସମ୍ଭବ ହୋଇନାହିଁ। ଅହଲ୍ୟା ତାଙ୍କ ସମୟର ସର୍ବଶ୍ରେଷ୍ଠ ସୁନ୍ଦରୀ ଥିଲେ। ଯେ କୌଣସି ରୂପସୀ ଝିଅଟିଏ ପରି ଯୌବନ ଆରମ୍ଭରୁ ଅହଲ୍ୟାଙ୍କ ମନରେ ଜଣେ ଅନୁରୂପ, ରୂପବାନ ସୁପୁରୁଷଙ୍କୁ ପତି ରୂପେ ପାଇବା ପାଇଁ ମନ ଭିତରେ ସ୍ୱପ୍ନ ସୃଷ୍ଟି ହୋଇଥିବ ଓ ତାହା ଅସ୍ୱାଭାବିକ ନୁହେଁ। ଆଉ ସେ ସମୟରେ ସ୍ୱର୍ଗର ଦେବରାଜ ଇନ୍ଦ୍ରଙ୍କଠାରୁ ବଳି ଅଧିକ ରୂପବାନ, ସୁପୁରୁଷ ବା କିଏ ଥିଲା? ସ୍ୱାଭାବିକ ଭାବରେ ଇନ୍ଦ୍ରଙ୍କୁ ଅହଲ୍ୟା ପ୍ରେମ କରି ବସିଛନ୍ତି ଓ ଏହି ଦୁର୍ବଳତା ନିଜ ଛାତି ତଳେ ଲୁଚାଇ ରଖିଛନ୍ତି। ଏ ବ୍ୟାପାରରେ ତାଙ୍କ ମନକଥା କେହି ବୁଝିବାକୁ ନାହାନ୍ତି ବା କାହା ଆଗରେ ସେ ମନକଥା ଖୋଲି କହି ପାରିନାହାନ୍ତି। ଇନ୍ଦ୍ର ମଧ୍ୟ ଅହଲ୍ୟାଙ୍କ ପରି ସର୍ବଗୁଣସମ୍ପନ୍ନା ରୂପସୀ ପ୍ରତି ଆକୃଷ୍ଟ ହେବା କିଛି ଅସ୍ୱାଭାବିକ ନୁହେଁ। ତାଙ୍କ ମନ ଭିତରେ ମଧ୍ୟ ଲୁଚି ଛପି ଇଚ୍ଛାଟିଏ ଅହଲ୍ୟାଙ୍କୁ ପାଇବା ପାଇଁ ରହିଛି। ଅଜାଣତରେ ଦୁହେଁ ପରସ୍ପର ପ୍ରତି ଆକୃଷ୍ଟ ଓ ଆକର୍ଷିତ ହୋଇ ପଡ଼ିଛନ୍ତି। ମାତ୍ର ସେତିକ; ଲକ୍ଷ୍ମଣ ରେଖା କେହି ଡେଇଁ ନାହାନ୍ତି।

କନ୍ୟାର ବିଦ୍ୟାଶିକ୍ଷା ପାଇଁ ବ୍ରହ୍ମା ଗୌତମଙ୍କ ତତ୍ତ୍ୱାବଧାନରେ ତାଙ୍କ ଆଶ୍ରମରେ ଅହଲ୍ୟାଙ୍କୁ ଛାଡ଼ି ଦେଇଛନ୍ତି। ଗୌତମ ଋଷି ଅତ୍ୟନ୍ତ ଜ୍ଞାନୀ, ଗୁଣୀ, ପରମ ସାଧକ। ଉଚ୍ଚକୋଟୀର ତପସ୍ୱୀ। ଅହଲ୍ୟା ସେଠାରେ ଯେ କୌଣସି ଆଶ୍ରମ କନ୍ୟା ପରି ଶିକ୍ଷା ପାଇଛନ୍ତି ଓ ଦୈନନ୍ଦିନ କାର୍ଯ୍ୟ ସୁଚାରୁ ରୂପେ କରିଯାଇଛନ୍ତି। ବିବାହ ବୟସ ଆସିଛି। ଆଉ ବ୍ରହ୍ମା ବାଛବିଚାର ନକରି ମହର୍ଷି ଗୌତମଙ୍କୁ ଅହଲ୍ୟାଙ୍କ ପାଇଁ ବାଛିଛନ୍ତି। ଏହି ପରମ ତପସ୍ୱୀ ସାଧକଙ୍କ ପ୍ରତି ବ୍ରହ୍ମାଙ୍କ ମନରେ ଥିଲା ଅନେକ ଶ୍ରଦ୍ଧା ଓ ସମ୍ମାନ। ଅହଲ୍ୟାଙ୍କୁ ତାଙ୍କରି ହାତରେ ଦେବାକୁ ବ୍ରହ୍ମା ନିଷ୍ପତ୍ତି କରି ଆପଣାକୁ ଦାୟୀତ୍ୱ ମୁକ୍ତ କରିଛନ୍ତି। ଜଣଙ୍କର ବିଦ୍ୟାବୁଦ୍ଧି ଜ୍ଞାନ ଓ ସାଧନା ପାଇଁ ଶ୍ରଦ୍ଧା ସମ୍ମାନ ଗୋଟାଏ କଥା ଆଉ ସ୍ୱାମୀ ହିସାବରେ ନିଜ ଝିଅ ପାଇଁ ନିର୍ବାଚନ ଆଉ ଗୋଟାଏ କଥା।

ମାତ୍ର ଥରେ ହେଲେ ପିତା ଅହଲ୍ୟାଙ୍କ ମନ ବୁଝିବାକୁ ଚେଷ୍ଟା କରି ନାହାନ୍ତି। ଅହଲ୍ୟା କ'ଣ ଚାହାନ୍ତି? ରୂପସୀ ପୂର୍ଣ୍ଣଯୌବନା ଝିଅଟିଏ କ'ଣ ଚାହେଁ? ଜ୍ଞାନ, ତପସ୍ୟା, ସାଧନା ବାଦ ଆଉ କିଛି ଚାହେଁ। ଚାହେଁ ସୁନ୍ଦର ରୂପବାନ ଜଣେ ଅନୁରୂପ ତରୁଣ। ଗୌତମ ଆଉ ଯାହା ହୁଅନ୍ତୁ, ଏହାତ କଦାପି ନୁହନ୍ତି। ନା ସେ ରୂପବାନ ନା ସେ ତରୁଣ, ନା ସେ ସୁପୁରୁଷ।

ଗୌତମ ମଧ୍ୟ ଅତ୍ୟନ୍ତ ଖାମଖିଆଲି ଭାବେ ଏ ପ୍ରସ୍ତାବରେ ସ୍ୱୀକୃତି ଦେଇଛନ୍ତି। ସେଠାରେ ତାଙ୍କର ଅନେକ କିଛି ବିଚାର କରିବାର ଥିଲା। ପ୍ରଥମତଃ ଅହଲ୍ୟା ତାଙ୍କର

ଛାତ୍ରୀ, ତେଣୁ କନ୍ୟା ସଦୃଶା । ଦୁଇ, ବୟସରେ ତାରତମ୍ୟ ରହିଛି । ଅସମାନ୍ୟା ରୂପସୀ ଅହଲ୍ୟାଙ୍କ ପାଇଁ ସେ ନିଜେ ଉପଯୁକ୍ତ କି ନାହିଁ ତାହା ଗୌତମ ଯଦି ଥରେ ମାତ୍ର ଚିନ୍ତା କରିଥାନ୍ତେ ତେବେ ସେ ଏ ପ୍ରସ୍ତାବରେ ରାଜି ହୋଇନଥାନ୍ତେ । ମାତ୍ର ସେ ରାଜି ହୋଇଛନ୍ତି ଏବଂ ଏଥିରୁ ମନେହୁଏ ବିବାହଟାକୁ ଗୋଟାଏ ଅତ୍ୟନ୍ତ ଗୁରୁତ୍ୱହୀନ ବ୍ୟାପାର ଭାବେ ସେ ଗ୍ରହଣ କରିଛନ୍ତି । ସବୁଠାରୁ ଗର୍ହିତ ଅପରାଧ ସେ କରିଛନ୍ତି କନ୍ୟା ସଦୃଶା ଛାତ୍ରୀକୁ ବିବାହ କରିବାକୁ ରାଜି ହୋଇ ।

ସେ ଯାହାହେଉ ସେ ସ୍ୱୀକୃତି ଦେଇଛନ୍ତି ଓ ଅହଲ୍ୟା ତାଙ୍କର ସ୍ତ୍ରୀ ହୋଇ ଆଶ୍ରମ ଜୀବନ ବିତାଇଛନ୍ତି । ଋଷିପତ୍ନୀ ହିସାବରେ ଅହଲ୍ୟା ତାଙ୍କର ସମସ୍ତ ଦାୟୀତ୍ୱ ସୁଚାରୁ ରୂପେ ନିର୍ବାହ କରିଛନ୍ତି । ମାତ୍ର ଗୌତମଙ୍କୁ, ନିଜର ଗୁରୁଙ୍କୁ ଯଦି ସେ ପୂର୍ଣ୍ଣ ପ୍ରାଣରେ ସ୍ୱାମୀ ହିସାବରେ ଗ୍ରହଣ କରିପାରି ନଥିବେ ଓ ତାହା ଅସ୍ୱାଭାବିକ ମଧ୍ୟ ନୁହେଁ । ମାନସିକ ସ୍ତରରେ କୁଣ୍ଠା ରହିଲେ ଅନେକ ସମସ୍ୟା ସୃଷ୍ଟି ହୁଏ । ଗୌତମଙ୍କଠାରୁ ସେ ଯେ ପୂର୍ଣ୍ଣ ଦୈହିକ ସନ୍ତୋଷ ପାଇ ନାହାନ୍ତି, ତାହା ବୁଝି ହୁଏ । ଏ କ୍ଷେତ୍ରରେ ତାଙ୍କର ବିବାହ ପୂର୍ବରୁ ଗୋପନ ଇଚ୍ଛା ଉଙ୍କି ମାରିଛି ଓ ବଞ୍ଚି ରହିଛି । ସମସ୍ତ ଆନୁଷ୍ଠାନିକ, କର୍ମ ନିର୍ବାହ ସତ୍ତ୍ୱେ ତାଙ୍କ ମନରେ ଇନ୍ଦ୍ରଙ୍କ ପ୍ରତି ଦୁର୍ବଳତା ଜାଗ୍ରତ ରହିଛି ଓ ଏଥିରେ କୌଣସି ଅସ୍ୱାଭିକତା ନାହିଁ । ଗୌତମଙ୍କ ଔରସରୁ ତାଙ୍କର ଗୋଟିଏ ପୁତ୍ର ହୋଇଛି । ଶତାନନ୍ଦ । ସେ ଉପଯୁକ୍ତ ଶିକ୍ଷା ପାଇ ରାଜର୍ଷି ଜନକଙ୍କର କୁଳଗୁରୁ ହୋଇଛନ୍ତି । ଏଥିରୁ ମନେହୁଏ ଅହଲ୍ୟା, ସମସ୍ତ ଅସନ୍ତୋଷ, ଅପ୍ରାପ୍ତି ସତ୍ତ୍ୱେ ପତ୍ନୀ ହିସାବରେ, ଆଶ୍ରମର ତତ୍ତ୍ୱାବଧାରିକା ହିସାବରେ ତଥା ମା' ହିସାବରେ କୌଣସି ତ୍ରୁଟି କରିନାହାନ୍ତି । ନିଜର ଦାୟୀତ୍ୱ ସୁଚାରୁରୂପେ ତୁଲାଇଛନ୍ତି ।

ଏ ସବୁ ସତ୍ତ୍ୱେ ଇନ୍ଦ୍ରଙ୍କ ପ୍ରତି ତାଙ୍କର ଦୁର୍ବଳତା ମନ ଭିତରେ ଉଜ୍ଜିବିତ ରହିଛି । ଇନ୍ଦ୍ରଙ୍କ କ୍ଷେତ୍ରରେ ମଧ୍ୟ ଅହଲ୍ୟାଙ୍କ ପାଇଁ ଦୁର୍ବଳତା ରହିଛି । ଅନ୍ୟତ୍ର ବିବାହ ପରେ ମଧ୍ୟ ସେ ଅହଲ୍ୟାଙ୍କୁ ଭୁଲି ପାରି ନାହାନ୍ତି । ଇନ୍ଦ୍ରଙ୍କ ମନରେ ଶାଶ୍ୱତ ପ୍ରେମ ଅପେକ୍ଷା ସମ୍ଭୋଗ ଲାଳସା ବେଶୀ ରହିଛି । ସେ ଯାହାହେଉ ଇନ୍ଦ୍ର ସୁଯୋଗକୁ ଅପେକ୍ଷା କରିଛନ୍ତି ।

ସେ ସୁଯୋଗ ଆସିଛି । ଗୌତମଙ୍କ ସାମୟିକ ଅନୁପସ୍ଥିତିର ସୁଯୋଗ ନେଇ ରାତ୍ରିର ଶେଷ କାଳରେ ଲୁଚି ଲୁଚି (ଅନେକଙ୍କ ବର୍ଣ୍ଣନାରେ ଗୌତମଙ୍କ ଛଦ୍ମବେଶରେ) ଆଶ୍ରମରେ ପ୍ରବେଶ କରିଛନ୍ତି । ଅହଲ୍ୟା ଇନ୍ଦ୍ରଙ୍କୁ ଚିହ୍ନି ପାରିବା ସତ୍ତ୍ୱେ ମଧ୍ୟ (ଛଦ୍ମବେଶର ଦରକାର ନଥିଲା) ଇନ୍ଦ୍ରଙ୍କ ନିକଟରେ ନିଜକୁ ସମର୍ପଣ କରିଛନ୍ତି ଏବଂ ପ୍ରତିଟି ମୁହୂର୍ତ୍ତକୁ ଉପଭୋଗ କରିଛନ୍ତି । ଏଇଠାରେ ଅହଲ୍ୟାଙ୍କ ମାନସିକତାକୁ ବିଚାର କରାଯାଉ । ଅହଲ୍ୟା ଋଷି ପତ୍ନୀ ହିସାବରେ ସମସ୍ତ କର୍ତ୍ତବ୍ୟ ସୁଚାରୁରୂପେ ସମ୍ପାଦନ ସତ୍ତ୍ୱେ ମଧ୍ୟ ଅସନ୍ତୁଷ୍ଟ । ଅସମାନ୍ୟା ରୂପସୀ ବୃଦ୍ଧ ତପସ୍ୱୀ ଗୌତମଙ୍କ ସହ ଶାରୀରିକ ସମ୍ପର୍କରୁ ପୁତ୍ର ଲାଭକରିଛନ୍ତି ମାତ୍ର ସନ୍ତୋଷ ପାଇ ନାହାନ୍ତି । ମନ ଭିତରେ ସେଇ ସ୍ୱପ୍ନ-ପୁରୁଷ ପ୍ରତି ପ୍ରେମ ଜାଗ୍ରତ ଅଛି ।

ବୃଦ୍ଧ ଗୌତମ ତାଙ୍କୁ ଯୌନ ସମ୍ଭୋଗର ସୁଖ ପ୍ରଦାନ କରି ପାରି ନାହାନ୍ତି । ଯେଉଁ ଅତୃପ୍ତି ଯୋଗୁଁ ଅହଲ୍ୟା ଇନ୍ଦ୍ରଙ୍କୁ ସେଇ ପାହାନ୍ତା ପହରରେ ଚିହ୍ନି ପାରିବା ସତ୍ତ୍ୱେ ମଧ ନିଜକୁ ରୋକି ପାରି ନାହାନ୍ତି । ନିଜକୁ ସମର୍ପଣ କରିବାରେ ଦ୍ୱିଧା କରିନାହାନ୍ତି । ସେ ଯେ ଗୋଟାଏ ଅପରାଧ କରୁଛନ୍ତି ତାହା ବୁଝି ପାରିଲେ ମଧ ନିଜକୁ ଲଗାମ ଲଗାଇ ନାହାନ୍ତି । ସେଇ ଅପରାଧର ବିଷ ପାନ କରିଛନ୍ତି । ତା'ର କାରଣ ହେଉଛି ବର୍ଷ ବର୍ଷର ଅତୃପ୍ତି ।

ଅନେକ ବାଖ୍ୟାକାର ଏହାକୁ ଅଧିକ ରସାଳ କରି ପରିବେଷଣ କରିଛନ୍ତି । ଇନ୍ଦ୍ର ଅନେକ ପ୍ରତୀକ୍ଷା ପରେ ଏପରି ଏକ ବିରଳ ସୁଯୋଗ ପାଇଛନ୍ତି ଓ ସେଥିରୁ ମନ ଇଚ୍ଛା ଲାଭ ଉଠାଇବା ପାଇଁ ଦ୍ୱିତୀୟବାର ସମ୍ଭୋଗ କରିଛନ୍ତି ଏବଂ ଅହଲ୍ୟା ଏଥର ମଧ ତାଙ୍କୁ ବାଧା ଦେଇ ନାହାନ୍ତି । ସମ୍ଭୋଗ ଥରେ ହେଉ ବା ବାରମ୍ବାର ହେଉ ଏଥିରେ ଆମର ଉପସଂହାରରେ କିଛି ଫରକ ପଡୁନି । ଇନ୍ଦ୍ର କାମୁକ । ସେ ତାଙ୍କର କାମ ବାସନା ଚରିତାର୍ଥ ପାଇଁ ସୁଯୋଗର ଉପଯୋଗ କରିଛନ୍ତି । ଅହଲ୍ୟା ବର୍ଷ ବର୍ଷ ଧରି ଅତୃପ୍ତା । ଭଲମନ୍ଦ, ପାପପୁଣ୍ୟ, ସମାଜର ଲକ୍ଷ୍ମଣ ରେଖା ବୁଝିବା ସତ୍ତ୍ୱେ ମଧ ଇନ୍ଦ୍ରଙ୍କ ସହିତ ସହଯୋଗ କରିଛନ୍ତି । ବର୍ଷ ବର୍ଷର ତୃଷା ମେଣ୍ଟାଇଛନ୍ତି ।

ଏ ଘଟଣାଟି ସେ ସମୟର ସାମାଜିକ ନିୟମ କାନୁନରେ ଅତ୍ୟନ୍ତ ଗର୍ହିତ ଅପରାଧ, ଏଥିରେ ସନ୍ଦେହ ନାହିଁ । ମାତ୍ର ଅପରାଧୀ କିଏ ? ଅହଲ୍ୟାଙ୍କୁ ଅସତୀ, କୁଳଟା, ପତିତା ବୋଲି ବର୍ଣ୍ଣନା କରାଯାଇଛି; ଗୌତମଙ୍କ ଅଚାନକ ଆଗମନ ହେତୁ ଇନ୍ଦ୍ର ଧରାପଡି ଅଭିଶପ୍ତ ହୋଇଛନ୍ତି । ସେ ଅନ୍ୟ ପ୍ରସଙ୍ଗ ।

ଅହଲ୍ୟାଙ୍କୁ ମଧ ଋଷି ଅଭିଶାପ ଦେଇଛନ୍ତି । ସମାଜ ପରିତ୍ୟକ୍ତା ହୋଇ, ସାମାଜିକ ବାସନ୍ଦ ହୋଇ ଜୀବନ ବିତାଇ ଆପଣା କର୍ମ ପାଇଁ ଅନୁତାପ କରି ଏକ ପରିତ୍ୟକ୍ତାର ଜୀବନ ବିତାଇବାକୁ ତାଙ୍କୁ ଛାଡି ଦେଇ ଗୌତମ ତପସ୍ୟା କରିବାକୁ ଚାଲି ଯାଇଛନ୍ତି ।

ଅହଲ୍ୟାଙ୍କ ଦୋଷାଦୋଷ ବିଚାର କରାଯାଉ । ଯାହା ପ୍ରଥମରୁ କୁହାଯାଇଛି, ଅହଲ୍ୟାଙ୍କୁ ତାଙ୍କ ଇଚ୍ଛା ବିରୁଦ୍ଧରେ ଗୌତମଙ୍କ ସହ ବିବାହ ଦିଆଯାଇଛି । ନିଜର ଶିକ୍ଷାଗୁରୁଙ୍କୁ ମାନସିକ ସ୍ତରରେ ସେ ସ୍ୱାମୀ ରୂପେ ଗ୍ରହଣ କରି ପାରି ନାହାନ୍ତି । ତା ଉପରେ, ବୃଦ୍ଧ ଗୌତମ ତାଙ୍କୁ ଶାରୀରିକ ସୁଖ ମଧ ଦେଇ ପାରିନାହାନ୍ତି । ସାମାଜିକ ସ୍ୱୀକୃତି, ଋଷି ପତ୍ନୀର ଗୌରବ ଏ ସବୁ ଗୌତମଙ୍କୁ ବିବାହ କରି ସେ ପାଇଛନ୍ତି ମାତ୍ର ତଥାପି ସେ ଅତୃପ୍ତ ରହି ପ୍ରଥମ ପ୍ରେମକୁ ଝୁରି ହୋଇଛନ୍ତି । ଏହା କ'ଣ ଏପରି ଏକ ଗୁରୁତର ଦୋଷ ? ଗୌତମ କ'ଣ ଦୋଷୀ ନୁହନ୍ତି । କନ୍ୟା ସମାନ ଛାତ୍ରୀକୁ, ଯାହା ସହିତ ଅନେକ ଅନେକ ବର୍ଷ ବୟସର ବ୍ୟବଧାନ, ତା୍ ସତ୍ତ୍ୱେ ବିବାହ କରିବାକୁ ରାଜି ହେଲେ କିପରି ? ବ୍ରହ୍ମା ଏପରି ପ୍ରସ୍ତାବ ଦେଇ ଯେପରି ଭୁଲ କରିଛନ୍ତି, ଗୌତମ ପ୍ରସ୍ତାବକୁ ସ୍ୱୀକୃତି ଦେଇ ମଧ ଭୁଲ କରିଛନ୍ତି ।

ତାପରେ ଦେଖନ୍ତୁ, ଅହଲ୍ୟା ମିଥ୍ୟାଚାରର ଆଶ୍ରୟ ନେଇ ନାହାନ୍ତି । ଅଚାନକ ଯେତେବେଳେ ଇନ୍ଦ୍ର ଧରାପଡି ଯାଇଛନ୍ତି ସେତେବେଳେ ଅହଲ୍ୟା ଋଷିଙ୍କ ଆଗରେ ଅଭିନୟ କରି ସେ ଯେ ଇନ୍ଦ୍ରଙ୍କ ଦ୍ୱାରା ପ୍ରତାରିତା ବା ବଳପୂର୍ବକ ଧର୍ଷିତା ହୋଇଛନ୍ତି ତାହା କହିପାରିଥାନ୍ତେ । ତାହା ତାଙ୍କୁ ଋଷି କୋପରୁ ରକ୍ଷା କରି ପାରିଥାଆନ୍ତା । ଅନେକଙ୍କ ପକ୍ଷରେ ଏପରି ଅଭିନୟ ସ୍ୱାଭାବିକ ହୋଇଥାଆନ୍ତା । ମାତ୍ର ସେ ସେକଥା କରି ନାହାନ୍ତି । ସେ ସତ୍ୟ ଘଟଣାଟିକୁ ସ୍ୱୀକାର କରିଛନ୍ତି ଓ ଋଷିଙ୍କ ଦ୍ୱାରା ଅଭିଶପ୍ତା ହୋଇଛନ୍ତି ।

ସେ ସାମାଜିକ ବାସନ୍ଦ ହୋଇଛନ୍ତି । ଆଶ୍ରମ ପରିତ୍ୟକ୍ତ ହୋଇ ଯାଇଛି । ଗୌତମ ଚାଲି ଯାଇଛନ୍ତି । ଜନତାର ଯିବା ଆସିବା ବନ୍ଦ ହୋଇଯାଇଛି । ଯାଗ ଯଜ୍ଞ ହେଉନାହିଁ । ବେଦ ପାଠ ଶୁଭୁ ନାହିଁ । ହୋମାଗ୍ନି ପ୍ରଜ୍ୱଳିତ ହେଉନାହିଁ । ସ୍ୱାମୀ ପରିତ୍ୟକ୍ତା, ସମାଜ ପରିତ୍ୟକ୍ତା ହୋଇ ଅହଲ୍ୟା ଏକାକୀ ସେ ଆଶ୍ରମରେ ପାପର ପ୍ରାୟଶ୍ଚିତ କରିବାକୁ ପଡ଼ି ରହିଛନ୍ତି ।

ଏ ପ୍ରକାର ଦୃଷ୍ଟାନ୍ତ ଆମ ସମୟରେ ମଧ ବିରଳ ନୁହେଁ । ସମାଜରୁ ଗାଁରୁ ବାସନ୍ଦ ହୋଇ ଗାଁ ବାହାରେ ପରିତ୍ୟକ୍ତା ହୋଇ ଅନେକ ଅପରାଧୀକୁ ରଖାଯିବାର ଦୃଷ୍ଟାନ୍ତ ରହିଛି ଏବଂ ଅବଧି ସରିଗଲା ପରେ ସମାଜ ପୁଣି ସେମାନଙ୍କୁ ଗ୍ରହଣ କରୁଛି । ବର୍ତ୍ତମାନ ଅସମାନ୍ୟା ରୂପସୀ ଅହଲ୍ୟା ଧୂଳି ଶଯ୍ୟାରେ ଶୟନ କରି ଆଶ୍ରମରୁ ମିଳୁଥିବା ଫଳମୂଳ ଉପରେ ନିର୍ଭର କରି ନିକାଞ୍ଚନ/ଏକାକୀ ଜୀବନ କଟାଇ ପ୍ରାୟଶ୍ଚିତ କରୁଛନ୍ତି । ବର୍ଷ ବର୍ଷ ବିତି ଯାଇଛି । ଜନ ମାନସରେ ଏ ଘଟଣା ବାରମ୍ବାର ଆଲୋଚିତ ହୋଇଛି । ପ୍ରକାଶ ଥାଉକି, ଗୌତମଙ୍କ ଆଶ୍ରମଟି ଥିଲା ରାଜର୍ଷି ଜନକଙ୍କ ରାଜଧାନୀ ମିଥିଳା ଠାରୁ ଅଳ୍ପ ଦୂରରେ । ତାପରେ ଅହଲ୍ୟାଙ୍କ ପୁତ୍ର ଜନକଙ୍କ କୁଳଗୁରୁ । ତେଣୁ ସତାନନ୍ଦ ମଧ ମା'ଙ୍କ ପ୍ରତି ଯେ ଅନ୍ୟାୟ କରାଯାଇଛି ତାହା ମଧ ଅନୁଭବ କରିଛନ୍ତି । କ୍ରମେ ଜନତା, ସମାଜ ଅହଲ୍ୟାଙ୍କ ପ୍ରତି ସମ୍ବେଦନଶୀଳ ହୋଇଛି । ଏ ସମସ୍ତ ବ୍ୟାପାରରେ ବ୍ରହ୍ମାଙ୍କର ଯେପରି ଦୋଷ ରହିଛି, ତାଠାରୁ ଅଧିକ ଦୋଷ ରହିଛି ଗୌତମଙ୍କର । ବୃଦ୍ଧ କାଳରେ ରୂପସୀ ପତ୍ନୀ ଗ୍ରହଣ କରି ସେ ଯେ ଘୋର ଅବିଚାର କରିଛନ୍ତି ତାହା କ୍ରମେ ସମାଜ ମଗଜରେ ପ୍ରବେଶ କରିଛି । ସମାଜ କ୍ରମେ ଉଭୟ ବ୍ରହ୍ମା ଓ ଗୌତମଙ୍କ ଏ ବିଚାର ବିଭ୍ରାଟକୁ ସ୍ୱୀକାର କରିଛି । ଅହଲ୍ୟା ଯେ ନିଜକୁ ରକ୍ଷା ପାଇଁ ମିଥ୍ୟା ଅଭିନୟର ଆଶ୍ରୟ ନେଇ ନାହାନ୍ତି, ସତ୍ୟ କହିଛନ୍ତି, ଅଭିଶପ୍ତ ହେବେ ଜାଣି ସୁଦ୍ଧା, ତାହା ସମାଜକୁ ଅହଲ୍ୟାଙ୍କ ପ୍ରତି କ୍ରମେ ସମ୍ବେଦନଶୀଳ କରିଛି ।

ଏହା ଦିନ ଅଧକରେ ହୋଇନି । ସମୟ ଅନେକ ଅନେକ କିଛି ଘଟଣାକୁ କ୍ରମେ ମାନସ ପଟରୁ ଲିଭାଇ ଦିଏ । ଯାହା ଆଜି ଅତ୍ୟନ୍ତ ଗର୍ହିତ ବୋଲି ସମାଜ ମାତି ଉଠିଛି ତାହା ପୁଣି ସମୟ କ୍ରମେ ସାଧାରଣ ବୋଲି ବିବେଚିତ ହୁଏ । ଜନତା ସୁଅରେ ପଡ଼ି ଗୋଟାଏ ଗୋଷ୍ଠୀ ହିସାବରେ ଅନେକ ସମୟରେ ଭାସିଯାଏ ମାତ୍ର ସେ ମୁହୂର୍ତ୍ତର

ଭାବପ୍ରବଣତା, ସେହି ସମୟର ବିଚାରର ମାପକାଠି ସମୟ ଅନୁସାରେ ବଦଳିବାକୁ ଆରମ୍ଭ କରେ ।

ଯେଉଁ ଜର୍ମାନୀରେ ହିଟ୍‌ଲର ଇହୁଦୀ ଗଣହତ୍ୟା ପାଇଁ ହିଟ୍‌ଲର ଘୃଣାର ପାତ୍ର ହୋଇ ପଡ଼ିଥିଲା, ସେଇ ଆଜି ଜର୍ମାନୀରେ ଯୁବଗୋଷ୍ଠି ବାହାରିଲେଣି ହିଟ୍‌ଲରକୁ ପ୍ରଶଂସା କରିବା ପାଇଁ ।

ଯେଉଁ ମାଓ ଜେ ଦଙ୍ଗ ତୁଙ୍ଗଙ୍କ ନାଁରେ ଶହେ କୋଟି ଚୀନାବାସୀ ମାତି ଉଠୁଥିଲେ, ଆଜି ତାଙ୍କ ବାଟରୁ ବାହାରି ଓଲଟା ବାଟରେ ଚାଲିବାକୁ ଆରମ୍ଭ କଲେଣି ଓ ମାଓଙ୍କୁ ପ୍ରକାଶ୍ୟରେ ସମାଲୋଚନା ନକଲେ ମଧ ତାଙ୍କ ପ୍ରଦର୍ଶିତ ରାସ୍ତାରୁ କ୍ରମେ ନିଜକୁ ଦୂରେଇ ଦେଲେଣି । ଏପରି ଘଟେ । ଏଥିରେ ବିସ୍ମିତ ହେବାର କିଛି ନାହିଁ । ଅସାଭିକତା କିଛି ନାହିଁ ।

କେହି କେବେ କ'ଣ ଆଶା କରିଥିଲା, ଆମେରିକା-ଚୀନ ଶତ୍ରୁତାକୁ ପଛକୁ ରଖି କାମଚଳା ବନ୍ଧୁତା କରିବେ ବୋଲି । କେହି କ'ଣ ଭାବିଥିଲା ଆମେରିକାରେ କୃଷ୍ଣକାୟ ବ୍ୟକ୍ତିଟିଏ ରାଷ୍ଟ୍ରପତି ଦୁଇ ଦୁଇଥର ହେବ ବୋଲି । ଏହା ସମୟର ଖେଳ । ସମୟ ସବୁଠୁ ବଳବାନ । ସବୁକିଛିକୁ ବଦଳାଇଦିଏ ।

ଅହଲ୍ୟାଙ୍କ ବ୍ୟାପାରରେ ସେଇଆ ଘଟିଛି । ଜନତା ଘଟଣାର ଗାମ୍ଭୀର୍ଯ୍ୟରେ ହଠାତ୍ ପ୍ରତିକ୍ରିୟାଶୀଳ ହୋଇ ଉଠିଥିଲା ଓ ସାମାଜିକ ବାସନ୍ଦ ଜାରି କରିଥିଲା । କାରଣ ଏ ଘଟଣା ପୁରୁଷ-ପ୍ରଧାନ ସମାଜ ପ୍ରତି ଏକ ଆହ୍ୱାନ ସଦୃଶ ଥିଲା ଏବଂ ଏ ଘଟଣା ଛାଇରେ ସମାଜର କର୍ଣ୍ଣଧାରମାନେ ନିଜ ନିଜ ପରିବାରର ନିରାପତ୍ତା ବିପନ୍ନ ବୋଲି ଅବଚେତନ ମନରେ ବୁଝି ପାରୁଥିଲେ । କଠିନ ଦଣ୍ଡକୁ ସମର୍ଥନ କରି ନିଜ ପରିବାର ପାଇଁ ନିରାପତ୍ତାର ପାଚେରୀ ସେମାନେ ଗଢୁଥିଲେ । କ୍ରମେ ଜନତା/ସମାଜ ଆପଣା ବିଚାରରେ ଉଦାରତା ଆଣିଲା । ସେହି ସମୟର ଉତ୍ତାପ ଭାଙ୍ଗି ଯିବା ପରେ, ଧୀରସ୍ଥିର ଭାବରେ ସମସ୍ତ ବିଷୟ ଜନତା ବିଚାର କରିଥିବ । ଗୌତମଙ୍କୁ ଜଣେ ଅବିଶ୍ୱସ୍ତା ପତ୍ନୀର ସ୍ୱାମୀ ହିସାବରେ ଗ୍ରହଣ କରି ସମାଜ ଗୌତମଙ୍କ ଦୋଷାଦୋଷ ବିଚାର ସେ ସମୟରେ କରି ନାହିଁ । ଋଷିଙ୍କର ଯେଉଁ ଦୋଷଗୁଡ଼ିକ ସେ ସମୟରେ ଧର୍ତ୍ତବ୍ୟ ବୋଲି ମନେ ହୋଇ ନଥିଲା, ବର୍ତ୍ତମାନ ତାହା ଯେ ଏ ଦୁର୍ଘଟଣା ପାଇଁ ଦାୟୀ ତାହା ସମାଜ ବୁଝିବାକୁ ଆରମ୍ଭ କରିଥିବ । ଆଉ ରହିଲା ଅହଲ୍ୟାଙ୍କ କଥା । ହଁ, ଦୋଷ କରିଛନ୍ତି, ମାତ୍ର ଦୋଷ କରିବା ପାଇଁ ଯେଉଁ ଇନ୍ଧନ ଦରକାର ତାହାତ ପ୍ରଥମେ ଋଷିଙ୍କ ଠାରୁ ଆସିଛି । ଏତେ ବର୍ଷ ଧରି ସମସ୍ତ ପ୍ରତିକୂଳ ଅବସ୍ଥା, ଅତୃପ୍ତି ସତ୍ତ୍ୱେ ସେ ଆପଣା ଆଶ୍ରମିକ କର୍ମରେ କିଛି ମାତ୍ର ଅବହେଳା କରିନାହାନ୍ତି । ସେଠାରେ ବିଦ୍ୟାର୍ଥୀମାନଙ୍କଠାରୁ ଆରମ୍ଭ କରି ଯାଗଯଜ୍ଞ ଇତ୍ୟାଦି ପାଇଁ ତାଙ୍କ ପାଇଁ ନିର୍ଦ୍ଧାରିତ କର୍ତ୍ତବ୍ୟରେ କିଛି ତ୍ରୁଟୀ କରି ନାହାନ୍ତି । ସମାଜ ମନେ କରିଥିବ ଯେ ମନୁଷ୍ୟ ମାତ୍ରକେ ଦୁର୍ବଳତା ଅଛି । ଏ ଦୁର୍ବଳତା ପାଇଁ ଋଷିଙ୍କୁ ସମାଜ

ମନେ ମନେ ଯେତିକି ଦାୟୀ କରୁଥିବ, ଅହଲ୍ୟାଙ୍କ ଦୋଷ ସେହି ପରିମାଣରେ ମାଫ୍ କରୁଥିବ ଏବଂ ଦୋଷ ଅନୁସାରେ ଦଣ୍ଡ ଯେ ଅନେକ ଗୁଣ କଠୋର ହୋଇ ଯାଇଛି ସମାଜ ତାହା ହୃଦୟଙ୍ଗମ କରିଥିବ ଏବଂ ଏଥିପାଇଁ ଆପଣାକୁ କିଛି ପରିମାଣରେ ଦୋଷୀ ବୋଲି ମନେକରି ସେ ଦୋଷୀ-ମନ୍ୟତାରୁ ମୁକ୍ତ ହେବା ପାଇଁ ବାଟ ଖୋଜୁଥିବ । ଅହଲ୍ୟାଙ୍କର ଆଉ ଗୋଟିଏ ଗୁଣ ଯାହା ସମାଜକୁ ପ୍ରଭାବିତ କରିଥିବ ତାହା ହେଉଛି ସତ୍ୟବାଦିତା । ସମ୍ଭୋଗ ପରେ ଇନ୍ଦ୍ର ଧରା ପଡିବା ପରେ ଗୌତମଙ୍କୁ ଅହଲ୍ୟା ମିଛ କହି ଇନ୍ଦ୍ରଙ୍କ ଉପରେ ଧର୍ଷଣ ଓ ବଳତ୍କାରର ଦୋଷ ଆରୋପ କରି ନିଜକୁ ଅଭିଶାପରୁ ବଞ୍ଚାଇ ପାରିଥାଆନ୍ତେ । ମାତ୍ର ତାହା ସେ କରିନାହାନ୍ତି । ମିଥ୍ୟାଚାର କରିନାହାନ୍ତି । ଦୋଷ ସ୍ୱୀକାର କରିଛନ୍ତି ଓ ଅଭିଶାପ, ବାସନ୍ଦ ମୁଣ୍ଡ ପାତି ଗ୍ରହଣ କରିଛନ୍ତି । ଅହଲ୍ୟାଙ୍କର ଏହି ଦୁର୍ଲ୍ଲଭ କାର୍ଯ୍ୟ, ସମାଜ ପରବର୍ତ୍ତୀ ସମୟରେ ବିଚାର କରି ଏତେବଡ଼ ଦଣ୍ଡ ଦେଇଥିବାରୁ ବା ଦେବାରେ ସାମିଲ ହୋଇଥିବାରୁ ନିଜକୁ ଦୋଷୀ ମନେ କରିଥିବ ଓ ଅହଲ୍ୟା ଏଥିରୁ ମୁକ୍ତି ପାଇ ସମାଜରେ ମିଶନ୍ତୁ ଏହା ମାନସିକ ସ୍ତରରେ ସେମାନେ ସ୍ଥିର କରିସାରିଥିବେ । ମାତ୍ର ଏଥିପାଇଁ ଆଗକୁ ବାହାରି ପଡି ସମାଜକୁ ସମାଲୋଚନା କରି, କରିଥିବା ଭୁଲର ପ୍ରାୟଶ୍ଚିତ କରି ଅହଲ୍ୟାଙ୍କୁ ସମାଜରେ ଗ୍ରହଣ କରିନେବା ପାଇଁ ପ୍ରରୋଚିତ କରିପାରିବା ପରି ବ୍ୟକ୍ତିତ୍ୱ ସେଠାରେ କାହାରି ନଥିଲା । ତେଣୁ ସମସ୍ତେ ଜଣେ ସଂସ୍କାରକ/ପଥପ୍ରଦର୍ଶକ ବା ସେତେବେଳର ଭାଷାରେ ଜଣେ ଅବତାର ପୁରୁଷର ଅପେକ୍ଷା ରଖୁଥିଲେ ।

ବିଶ୍ୱାମିତ୍ର ଗୋଟିଏ ଯୋଜନା ମୁତାବକ ହିଁ କାମ କରିଛନ୍ତି ଓ ସେ ନିଜ ଭାଷାରେ କହିଛନ୍ତି ଯେ ପାଞ୍ଚ ହଜାର ବର୍ଷ ଧରି ସରସ୍ୱତୀ ନଦୀ ତଟରେ ତପସ୍ୟାରତ ଥିଲେ । ଗୁରୁଙ୍କ ଆଦେଶରେ ଜନପଦକୁ ଆସିଛନ୍ତି । କ'ଣ ସେହି ଆସିବାର କାରଣ ? ତାହା ଅନ୍ୟ ପ୍ରସଙ୍ଗରେ ଆଲୋଚିତ ହେବ । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ବିଶ୍ୱାମିତ୍ର ଜଣେ ସଂସ୍କାରକ । ପ୍ରଚଳିତ ପରମ୍ପରା ଧାରା ଆଗକୁ ଯାଇ ଚିନ୍ତା କରି ସେହି ଅନୁସାରେ ସମାଜକୁ ବାଟ କଢ଼େଇବାରେ ତାଙ୍କର ଦ୍ୱିଧା ନାହିଁ । ସେଥିପାଇଁ ରାମ ହିଁ ତାଙ୍କର ଅସ୍ତ୍ର ହୋଇଛନ୍ତି । ଦଶରଥଙ୍କଠାରୁ ତାଙ୍କୁ ମାଗି ଆଣିଛନ୍ତି । ତାଙ୍କୁ ଅବତାର ପୁରୁଷ ହିସାବରେ ପ୍ରତିଷ୍ଠିତ କରାଇବାର ଗୁରୁ ଦାୟୀତ୍ୱ ନେଇଛନ୍ତି ଓ ସେହି ଅନୁସାରେ ନୀରବରେ କାର୍ଯ୍ୟ କରି ଚାଲିଛନ୍ତି ।

ବିଶ୍ୱାମିତ୍ରଙ୍କର ଚରିତ୍ର ଓ ତାଙ୍କର ବୃହତ୍ତର ଯୋଜନା ବୁଝିବା ପାଇଁ ରାଜା ତ୍ରିଶଙ୍କୁଙ୍କ କଥା ବିଚାର କରାଯାଉ । ଇକ୍ଷ୍ୱାକୁ ବଂଶର ସମ୍ରାଟ ତ୍ରିଶଙ୍କୁ । ଧର୍ମ, ନ୍ୟାୟ, ଦାନପୁଣ୍ୟ ସମସ୍ତ ନୀତି ନିୟମ ମାନି ସେ ରାଜ୍ୟ ଶାସନ ଚଳାଇଛନ୍ତି । ମାତ୍ର ତାଙ୍କର ସଦେହରେ ସ୍ୱର୍ଗକୁ ଯିବା ଇଚ୍ଛା ତାଙ୍କୁ ମହଙ୍ଗା ପଡିଛି । କୁଳଗୁରୁ ବଶିଷ୍ଠ ତାଙ୍କର ଏ ଯୋଜନାରେ ପୁରୋଧା ହେବାକୁ ମନା କରି ଦେଇଛନ୍ତି । ବଶିଷ୍ଠଙ୍କ ପୁତ୍ରମାନେ ମଧ୍ୟ ତାଙ୍କୁ ନିରାଶ କରିଛନ୍ତି । ପରନ୍ତୁ ରାଜାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ତାଙ୍କୁ ଚଣ୍ଡାଳ ହୋଇଯିବା ପାଇଁ ଅଭିଶାପ ଦେଇଛନ୍ତି । ଏ ଅଭିଶାପର ଫଳ କିପରି ଫଳେ ତାହା ଅନ୍ୟ ଏକ ବିଚାର ।

ମାତ୍ର ବର୍ଣ୍ଣନା ଅନୁଯାୟୀ ରାଜା କୁରୂପ କୃଷ୍ଣବର୍ଣ୍ଣ ହୋଇଯାଇଛନ୍ତି ଓ ଚଣ୍ଡାଳ ପରି ଇତସ୍ତତଃ ଭ୍ରମଣ କରିଛନ୍ତି । ପାତ୍ର ମନ୍ତ୍ରୀ ସମସ୍ତେ ତାଙ୍କର ଏ ଦଶା ଦେଖି ତାଙ୍କୁ ପରିତ୍ୟାଗ କରିଛନ୍ତି ।

ଶେଷରେ ସେ ବିଶ୍ୱାମିତ୍ରଙ୍କର ଶରଣାଗତ ହୋଇଛନ୍ତି ଏବଂ ବିଶ୍ୱାମିତ୍ର ତାଙ୍କ ଯୋଜନାରେ ପୁରୋଧା ହେବାକୁ ରାଜି ହୋଇଛନ୍ତି । ଯଜ୍ଞ ହୋଇଛି ଓ ବିଶ୍ୱାମିତ୍ର ତ୍ରିଶଙ୍କୁଙ୍କୁ ସେଇ କୁରୂପ ଚଣ୍ଡାଳ ରୂପରେ ସ୍ୱର୍ଗକୁ ପଠାଇଛନ୍ତି, ମାତ୍ର ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତାଗଣ ତାଙ୍କୁ ସ୍ୱର୍ଗରେ ପଶିବାକୁ ନଦେଇ ପେଲି ତଳେ ପକାଇ ଦେଇଛନ୍ତି । ଏହା ଦେଖି ବିଶ୍ୱାମିତ୍ର ତପୋବଳରେ ତାଙ୍କୁ ମଝିରେ ଅଟକାଇ ଏକ ନୂତନ ସ୍ୱର୍ଗର ରଚନା କରିଛନ୍ତି । ଏହା ସବୁ ପ୍ରତୀକ ମାତ୍ର । ଏହାର ପ୍ରଚ୍ଛଦପଟର କାହାଣୀ କ'ଣ ? କ'ଣ ଏହି ସବୁ ପ୍ରତୀକର ତାତ୍ପର୍ଯ୍ୟ ?

ବର୍ଣ୍ଣନା କାଗଜ କଲମରେ ଯାହା ହୋଇଥାଉ, ଆମର ମନେହୁଏ ଘଟଣାମାନ ହୁଏତ ଏହିପରି । ସଦେହରେ ସ୍ୱର୍ଗକୁ ଯିବା ପାଇଁ କିଛି କଟକଣା ସେ ସମୟରେ ହୁଏତ ଥିଲା । ସ୍ୱର୍ଗର ସ୍ୱରୂପ ବା ଅବସ୍ଥିତି ଯେଉଁଠି ହୋଇଥାଉ, ସେଇଟା ହୁଏତ ଗୋଟାଏ ଏଲିଟ୍ କ୍ଲବ, ସେଥିରେ ଯେ କେହି ପ୍ରବେଶ କରିବା ନିଷିଦ୍ଧ । ସେଥିପାଇଁ ନୀତି ନିୟମ ରହିଛି । ଉଦାହରଣସ୍ୱରୂପ, ଏପରି କେତେକ କ୍ଲବ ରହିଛି, ଆମ ଦେଶରେ, ବାହାରେ ମଧ୍ୟ, ସେଥିରେ ପଶିବା ପାଇଁ ଧନ ଅପେକ୍ଷା ବଂଶ ପରମ୍ପରା, ବୁନିଆଦି, ଆଭିଜାତ୍ୟ ତଥା ସାମାଜିକ ପ୍ରତିଷ୍ଠା ଆବଶ୍ୟକ । ହୁଏତ ଏଇପରି କିଛି ମାପକାଠି ସ୍ୱର୍ଗରେ ସଦେହରେ ପ୍ରବେଶ କରିବା ପାଇଁ ଥିବ । ମାତ୍ର ତ୍ରିଶଙ୍କୁ ଆପଣାର ଯୋଗ୍ୟତାକୁ ନିଜେ ତଉଲି ଏଥିପାଇଁ ନିଜକୁ ଯୋଗ୍ୟ ବୋଲି ନିଜେ ପ୍ରମାଣପତ୍ର ଦେଇ ଆବଶ୍ୟକ ଯଜ୍ଞାନୁଷ୍ଠାନ ପାଇଁ କୁଳଗୁରୁ ବଶିଷ୍ଠଙ୍କୁ ଅନୁରୋଧ କରିଛନ୍ତି । ସଦେହରେ ସ୍ୱର୍ଗକୁ ଯିବାର ଯୋଗ୍ୟତା ତ୍ରିଶଙ୍କୁ ଅର୍ଜନ କରିଛନ୍ତି କି ନାହିଁ ତାହା ତାଙ୍କ କୁଳଗୁରୁଙ୍କଠାରୁ ଅଧିକ କିଏ ଜାଣିବ । ବଶିଷ୍ଠ ତାଙ୍କର ମତାମତ ରଖିଛନ୍ତି ଓ ତାଙ୍କୁ ସଦେହରେ ସ୍ୱର୍ଗକୁ ପଠାଇବା ଅନୁଷ୍ଠାନରେ ପୁରୋଧା ହେବା ପାଇଁ ଅସମ୍ମତି ପ୍ରକାଶ କରିଛନ୍ତି ଓ ଏପରି ଅପଚେଷ୍ଟାରୁ ନିବୃତ୍ତ ରହିବାକୁ ପରାମର୍ଶ ଦେଇଛନ୍ତି । ତ୍ରିଶଙ୍କୁ ଗୁରୁଙ୍କ ଉପଦେଶର ଅବମାନନା କରି ତାଙ୍କ ପୁତ୍ରମାନଙ୍କୁ ଏ ଅନୁଷ୍ଠାନର ପୁରୋଧା ହେବାକୁ ଅନୁରୋଧ କରିଛନ୍ତି । ସ୍ୱାଭାବିକ୍ ଭାବେ ପୁତ୍ର ମଧ୍ୟ ମନା କରିଛନ୍ତି । ଗୁରୁଙ୍କୁ ଅବମାନନା କରି ଯୋଗ୍ୟତା ନଥାଇ ଅହଙ୍କାରର ବଶବର୍ତ୍ତୀ ହୋଇ ସଦେହରେ ସ୍ୱର୍ଗକୁ ଯିବାକୁ ଚାହିଁବା ଏକ ଅପରାଧ । ତାପରେ ପିତାଙ୍କ ନିଷେଧାଦେଶକୁ ହେୟ ଜ୍ଞାନ କରି କାମଟି ତାଙ୍କ ପୁଅ ଦ୍ୱାରା କରାଇ ନେବାର ଅପଚେଷ୍ଟା ଏକ ଅସୁସ୍ଥ ମାନସିକତାର ପରିଚୟ ଦେଇଛି । ଏ ନେଇ ତ୍ରିଶଙ୍କୁଙ୍କୁ ଅଭିଶାପ ମିଳିଛି । ଚଣ୍ଡାଳ ହୋଇ ଯିବାର ଅଭିଶାପ । ତା'ର ଅର୍ଥ ହୁଏତ ସାମାଜିକ ବାସନ୍ଦ । ସେ ସାମାଜିକ ଶୃଙ୍ଖଳା ଭାଙ୍ଗି ଗୁରୁଦ୍ରୋହ କରିଥିବାରୁ ସମାଜ ତାଙ୍କୁ ଯେଉଁ ଉଚ୍ଚାସନରେ ବସାଇଥିଲା ସେଥିରୁ ତାଙ୍କୁ ବହିଷ୍କାର କରାଯାଇଛି । ସେ ରାଜା ହୋଇପାରନ୍ତି ମାତ୍ର

ଯେଉଁ ସାମାଜିକ ସ୍ୱୀକୃତି ମିଳିଥିଲା, ପ୍ରଜାମାନଙ୍କର ଯେଉଁ ଆନୁଗତ୍ୟ ମିଳିଥିଲା, ସେ ସମସ୍ତ ଗୌରବ ଓ ବିଭବରୁ ସେ ନିର୍ବାସିତ ହୋଇଛନ୍ତି । ରାଜ୍ୟ ଯାଇଛି, ମାନ ସମ୍ମାନ, ମର୍ଯ୍ୟାଦା ସବୁ ସେ ହରାଇ ଚଣ୍ଡାଳ ପରି ଇତସ୍ତତଃ ବୁଲିଛନ୍ତି ଓ ଏଥିରୁ ମୁକ୍ତି ପାଇ ପୁଣି ସମାଜରେ ଗ୍ରହଣୀୟ ହେବା ପାଇଁ ହୁଏତ ଆଗ୍ରହ ପ୍ରକାଶ କରିଛନ୍ତି । ଅନେକ ତପସ୍ୱୀଙ୍କୁ ହୁଏତ ସେ ଅନୁରୋଧ କରିଥିବେ । ମାତ୍ର କେହି ତାଙ୍କ କଥାରେ ରାଜି ହୋଇ ନାହାନ୍ତି । କାରଣ ବଶିଷ୍ଠଙ୍କୁ ଅପମାନିତ କରିଥିବାରୁ ଗୁରୁ ଦ୍ରୋହରେ ସେ ଦୋଷୀ । ବିଶ୍ୱାମିତ୍ର ସେହିଠାରେ ଘଟଣା ପରିଧିକୁ ଆସିଛନ୍ତି । ଜଣେ ଉତ୍ତମ, ପ୍ରଜାପାଳକ ରାଜାର ଗୋଟାଏ ସୀମା ବାହାର ଅଭିଳାଷ ପାଇଁ ତାକୁ ଏତେ ବଡ ଦଣ୍ଡ ପୁଣି ଏତେ ଲମ୍ବା ସମୟ ପାଇଁ ତାହା ତାଙ୍କର ଗ୍ରହଣୀୟ ହୋଇନାହିଁ । ସେ ତ୍ରିଶଙ୍କୁଙ୍କୁ ପୂର୍ବ ଅବସ୍ଥାକୁ ଫେରାଇ ଆଣିବାକୁ ଚାହିଁଛନ୍ତି । ବିଶ୍ୱାମିତ୍ରଙ୍କ ଏହି ନିଷ୍ପତ୍ତି ପଛରେ ବଶିଷ୍ଠଙ୍କ ସହ ତାଙ୍କର ଅତୀତରେ ବହୁ ଚର୍ଚ୍ଚିତ ବିବାଦ କାମ କରିଥାଇପାରେ । ଏହା ବ୍ୟତୀତ ବିଶ୍ୱାମିତ୍ର ନିଜେ କ୍ଷତ୍ରୀୟ ହୋଇଥିବାରୁ (ବର୍ତ୍ତମାନ ଜଣେ ସିଦ୍ଧ ତପସ୍ୱୀ ହୋଇ ସାରିଥିଲେ ମଧ୍ୟ କ୍ଷତ୍ରୀୟ ରାଜାଙ୍କ ପ୍ରତି ଗୋଟାଏ ଦୁର୍ବଳତା ରହିଥାଇପାରେ ।) ଜଣେ କ୍ଷତ୍ରୀୟର ମାନସିକତା ବୁଝିବା ହୁଏତ ତାଙ୍କ ପକ୍ଷରେ ଅଧିକ ସହଜ ହୋଇଥିବ ।

ସେ ତ୍ରିଶଙ୍କୁଙ୍କୁ ସମାଜକୁ ଫେରାଇ ଆଣିବାରେ ବଶିଷ୍ଠ ତଥା ସେହିପରି ଅନେକ ଏଥିରେ ବାଧା ଦେଇଥିବେ । ତାହା ଚିତ୍ରିତ ହୋଇଛି ଦେବଗଣ ତାଙ୍କୁ ସ୍ୱର୍ଗରୁ ପୁଣି ମର୍ତ୍ତ୍ୟକୁ ପେଲି ଦେଇଛନ୍ତି ବୋଲି । ସେ ଯାହାହେଉ ସମାଜରୁ ନିର୍ବାସନ ବାସନ୍ଦ ବ୍ୟବସ୍ଥା ତାଙ୍କ ଉପରୁ ନହଟିବାରୁ ବିଶ୍ୱାମିତ୍ର ତାଙ୍କ ପାଇଁ ଏକ ନୂତନ ସମାଜ/ରାଜ୍ୟ ସ୍ଥାପନରେ ଅଗ୍ରଣୀ ହୋଇଛନ୍ତି । ଏହାର ବର୍ଣ୍ଣନା ହୋଇଛି ବିଶ୍ୱାମିତ୍ର ଅଧା ସ୍ୱର୍ଗରେ ତାଙ୍କୁ ସ୍ଥାପନ କରାଇଲେ ବୋଲି । ଏହି ପ୍ରତୀକର ଅର୍ଥ ଏହି ଯେ ଧର୍ମରକ୍ଷକମାନଙ୍କର ଗୋଟିଏ ଦଳ ରକ୍ଷଣଶୀଳ ହୋଇ ତାଙ୍କୁ ଆଉ ପୂର୍ବ ସମ୍ମାନ ଦେବାକୁ ପ୍ରସ୍ତୁତ ନଥିବା ବେଳେ ଆଉ ଗୋଟିଏ ଉଦାର ଗୋଷ୍ଠୀ ତାଙ୍କ ଉପରୁ ବାସନ୍ଦ ଉଠାଇ ତାଙ୍କୁ ସ୍ୱୀକୃତି ଦେଇଛନ୍ତି । ସେ ଯାହାହେଉ ବିଶ୍ୱାମିତ୍ର ଯେ ଜଣେ ଅତ୍ୟନ୍ତ ରକ୍ଷଣଶୀଳ ବ୍ରାହ୍ମଣ, ତପସ୍ୱୀ ନୁହନ୍ତି ତାହାହିଁ ବୁଝାଇବା ଆମର ଉଦ୍ଦେଶ୍ୟ । ଏହି ପ୍ରକାର ମନୋଭାବ ତାଙ୍କର ଅହଲ୍ୟା ଉଦ୍ଧାରରେ ପ୍ରକାଶ ପାଉଛି ।

ଏଇଠାରେ ଆଜିକାର ଗୋଟିଏ ଘଟଣା ଉଲ୍ଲେଖ କରାଯାଇପାରେ । ପ୍ରଲୋଭନରେ ହେଉ ବା ଯେ କୌଣସି କାରଣରୁ ହେଉ କଳାପାହାଡ (ହିନ୍ଦୁ ଯୁବକ) ମୁସଲମାନ ଶାସକର ଭଉଣୀକୁ ବିବାହ କରିଛି । ରକ୍ଷଣଶୀଳ ହିନ୍ଦୁ ସମାଜ ତାକୁ ଧର୍ମଦ୍ରୋହୀ କହି ବାସନ୍ଦ କରିଛି । ସେ ଅନୁତାପ କରି ହିନ୍ଦୁ ଧର୍ମକୁ ଫେରିବାକୁ ଚାହିଁଛି । ମାତ୍ର ରକ୍ଷଣଶୀଳ ହିନ୍ଦୁ ସମାଜର ପ୍ରତିନିଧି ମୁକ୍ତିମଣ୍ଡପର ବ୍ରାହ୍ମଣ ପଣ୍ଡିତମାନେ ତା'ର ଆବେଦନ ନାକଚ କରି ଦେଇଛନ୍ତି ।

ଆଉ ତା'ର ଫଳ କ'ଣ ହେଲା ଜଣାଅଛି । ତାହା ଇତିହାସରେ ଲିପିବଦ୍ଧ । ମାତ୍ର ସେ ଇତିହାସର ଆଲୋଚନା ଆମର ଉଦ୍ଦେଶ୍ୟ ନୁହଁ । ଆମର କହିବାର କଥା -- ସମାଜକୁ, ଜନତାକୁ ଶୃଙ୍ଖଳିତ କରି ରଖିବା ପାଇଁ ବିଧି ବ୍ୟବସ୍ଥା ଓ ତା'ର ଅବମାନନାରେ କିଛିଟି ଦଣ୍ଡ ତଥା କଠୋରତାର ଆବଶ୍ୟକତା ଅଛି । ମାତ୍ର ଅନୁପାତ ଓ ଦୋଷ ଅନୁସାରେ ଦଣ୍ଡର ପରିମାଣ ସ୍ୱଚ୍ଛ ଓ ନିରପେକ୍ଷ ହେବା ଚାହି ।

ତା'ଠାରୁ ବଡ କଥା ହେଉଛି କ୍ଷଣକର ଉତ୍ତେଜନାରେ ଯଦି କେହି ଭୁଲ ବାଟଟି ଆପଣାଇ ନେଇଛି, ତାକୁ ଦଣ୍ଡ ଭୋଗ ପରେ, ଅନେକ କଷ୍ଟ ଯନ୍ତ୍ରଣାର ପ୍ରାୟଶ୍ଚିତ ପରେ ସମାଜ ଗ୍ରହଣ କରି ନେବା ଉଚିତ୍ ।

ତେବେ ଏଠାରେ ପ୍ରାସଙ୍ଗିକ ହେଉଚି ବିଶ୍ୱାମିତ୍ର ନିଜେ ଜଣେ ସମାଜ ସଂସ୍କାରକ, ଉଦାରଚେତା ତପସ୍ୱୀ, ମାତ୍ର ତାଙ୍କର କ୍ଷେତ୍ର ହେଉଛି ଯାଗଯଜ୍ଞ ତପସ୍ୟା ଇତ୍ୟାଦି । ତାଙ୍କ ଦ୍ୱାରାରେ, ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଜଣେ କ୍ଷତ୍ରୀୟ ରାଜପୁତ୍ର ତାଙ୍କର ଆବଶ୍ୟକ ଥିଲା । ଚାଣକ୍ୟଙ୍କ ପାଇଁ ଚନ୍ଦ୍ରଗୁପ୍ତ ପରି ରାମ ସେହି ଆବଶ୍ୟକତା ପୂରଣ କରିଛନ୍ତି ।

ପରମ୍ପରା ବାହାରକୁ ଯାଇ ଗୌତମଙ୍କ ଦ୍ୱାରା କରାଯାଇଥିବା ଅନ୍ୟାୟର ସମାଧାନ କରି ସମାଜର ଚେତନାକୁ ଜାଗ୍ରତ କରିବା ସେ ରାମଙ୍କ ଦ୍ୱାରା କରାଇଛନ୍ତି । କାରଣ ସମାଜର ମନସ୍ତତ୍ୱ ସେ ବୁଝିଛନ୍ତି ଓ ସମାଜର ସାମଗ୍ରିକ ଭାବେ ଅହଲ୍ୟାଙ୍କୁ ଗ୍ରହଣ କରିବା ପାଇଁ ଜଣେ ଅବତାର ପୁରୁଷର ପ୍ରତୀକ ହିଁ ଦରକାର ।

ଶ୍ରୀରାମ ହିଁ ସେଇ ଅବତାର ପୁରୁଷର ବହୁ ପ୍ରତିକ୍ଷିତ କାମଟି କଲେ । କ'ଣ ପାଇଁ ବିନା ପ୍ରତିବାଦରେ ଶ୍ରୀରାମଙ୍କ ପ୍ରରୋଚନାକୁ ସମାଜ ମାନି ନେଲା, ଗୌତମ ନିଜେ ରାମଙ୍କ ନିଷ୍ପତ୍ତି ବିନା ସଙ୍କୋଚରେ ଗ୍ରହଣ କରିଗଲେ, କେଉଁ ଯାଦୁ ବଳରେ ସମଗ୍ର ପରିବେଶ, ସାମାଜିକ ବ୍ୟବସ୍ଥାଟା ରାମଙ୍କ ମାତ୍ର ପଦେ କଥାରେ ବଦଳିଗଲା ତାହା ବିଚାର୍ଯ୍ୟ ।

ରାମଙ୍କ ଜନ୍ମଠାରୁ ହିଁ ଘଟଣା ଗଡାଇ ଅଣାଯାଉ । ଆଉ ପାଞ୍ଚ ଜଣଙ୍କର ପୁଅ ଜନ୍ମ ହେବା ପରି ରାମଙ୍କ ଜନ୍ମ ହୋଇନାହିଁ । ହୋମ ଯଜ୍ଞ ପରେ ଚରୁ ସେବନ ପରେ କୌଶଲ୍ୟା ଗର୍ଭ ଧାରଣ କରିଛନ୍ତି । ରାମଙ୍କର ବାଲୁତ ବୟସରୁ ମଧ ତାଙ୍କର ଚାଲିଚଳଣ, ବ୍ୟବହାର, ଶିକ୍ଷା, ଦୀକ୍ଷା ସମସ୍ତଙ୍କୁ ମୋହିତ କରିଛି ।

ବାଲ୍ମୀକି ନିଜେ ରାମଙ୍କ ଆଗମନକୁ ଅପେକ୍ଷା ରଖିଛନ୍ତି ନାରଦଙ୍କ ଭିବଷ୍ୟତ ବାଣୀର ପ୍ରତ୍ୟକ୍ଷ କରିବା ପାଇଁ । ସେ ସେତେବେଳକୁ ରାମାୟଣ ରଚନା କରିସାରିଲେଣି । ମାତ୍ର ତାହା ଜନ ସମାଜରେ ପ୍ରସାରିତ ନକରି ଅପେକ୍ଷା ରଖିଛନ୍ତି । ମାତ୍ର ତାଙ୍କର ରାମାୟଣର ବିଷୟବସ୍ତୁ ଓ ନାରଦଙ୍କ ଭବିଷ୍ୟତ ବାଣୀ ଯେ କେତେକ ବିଶିଷ୍ଟ ମହଲରେ ଜ୍ଞାତ ଓ ଚର୍ଚ୍ଚିତ ନହୋଇଥିବ କିଏ କହିବ । ତା ହୋଇଥିବା ବହୁତ ସମ୍ଭବ । ବାଲ୍ମିକୀଙ୍କ ପରି

ଅନେକ ଋଷି ହୁଏତ ସମୟ ସମୟରେ ନୈରାଶ୍ୟରେ ପଡିଥିବେ ଓ ନାରଦ ତାଙ୍କୁ ଅନ୍ତେ ବହୁତ ରାମଙ୍କ ଆଗମନର ବାଣୀ ଶୁଣାଇଥିବା ସମ୍ଭବ । କାରଣ ମୁନିଋଷିମାନଙ୍କ ମନରୁ ନୈରାଶ୍ୟ, ବିଷାଦ ଦୂର କରି ଭବିଷ୍ୟତ ଉପରେ ଆସ୍ଥା ରଖି ଆର୍ଯ୍ୟ ଧର୍ମକୁ ବଞ୍ଚାଇ ରଖିବା ଓ ପ୍ରସାରିତ କରିବା ଉଦ୍ୟମରେ ନାରଦ ନିଜେ ମଧ ସଂଶ୍ଲିଷ୍ଟ ।

ଅନ୍ୟ ପକ୍ଷରେ, ବଶିଷ୍ଠଙ୍କ ଠାରୁ ଶିକ୍ଷା ପ୍ରାପ୍ତି ପରେ ଦୀର୍ଘ ଦୁଇ ବର୍ଷ ସେ (ରାମ) ବିଭିନ୍ନ ତୀର୍ଥ ସ୍ଥାନ/ଆଶ୍ରମ ଇତ୍ୟାଦି ବୁଲି ଆର୍ଯ୍ୟାବର୍ତ୍ତ ଉପରେ, ତା'ର ସମସ୍ୟା, ତା'ର ଜନସମାଜ, ସୁବିଧା ଅସୁବିଧା ଉପରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଛନ୍ତି । ଏହି ଭ୍ରମଣକୁ ଏକ ଜନ ସମ୍ପର୍କ ଯାତ୍ରା ବୋଲି ଅବହିତ କରାଯାଇପାରେ । ଏହି ଯାତ୍ରା କାଳରେ ବିଭିନ୍ନ ମୁନି ଋଷିଙ୍କ ଆଶ୍ରମରେ ସମୟ କଟାଇବା ଭିତରେ ନିଜ ବ୍ୟାପାରରେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରି ସାରିବେଣି । ଯେଉଁମାନେ ନାରଦଙ୍କଠାରୁ ବା ବାଲ୍ମୀକିଙ୍କ ଠାରୁ ସିଧା ସଳଖ ହେଉବା, ପରୋକ୍ଷରେ ହେଉ ଭବିଷ୍ୟତ ବାଣୀ ବିଷୟରେ କିଛି ଜାଣିଥିବେ, ସେମାନେ ରାମଙ୍କ ଏହି ଭ୍ରମଣକୁ ଅଧିକ ଗୁରୁତ୍ୱ ଦେଇ ତାଙ୍କୁ ଆଶ୍ରମରେ ସ୍ୱାଗତ କରିଥିବେ ଏବଂ ତାଙ୍କ ବ୍ୟବହାରରେ ମୋହିତ ହୋଇ ରାମଙ୍କ ଅବତାରତ୍ୱରେ ବିଶ୍ୱାସ କରିଥିବେ ତାହା ମଧ ଜନପଦରେ ପ୍ରଚାର କରିବାରେ ସହାୟକ ହୋଇଥିବ ।

ଆଉ ଗୋଟିଏ ଦିଗରୁ ଦେଖାଯାଉ । ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ନେଇ ଯଜ୍ଞ ରକ୍ଷା କରିବାକୁ ଅଗ୍ରସର ହୋଇଛନ୍ତି । ବାଟରେ ସେ ରାମଙ୍କୁ ଅନେକ ଦୁର୍ଲ୍ଲଭ ଶିକ୍ଷା ଦେଇଛନ୍ତି । ଅନେକ ଅସ୍ତ୍ରଶସ୍ତ୍ର ଜ୍ଞାନ ଓ ନିୟନ୍ତ୍ରଣ ଇତ୍ୟାଦି ଶିକ୍ଷା ଦେଇଛନ୍ତି । ରାମ ବିଭିନ୍ନ ଅସୁର ଅସୁରୁଣୀଙ୍କୁ ମାରି ଯଜ୍ଞ ରକ୍ଷା କରିଛନ୍ତି । ମାରୀଚ ସୁବାହୁ ପ୍ରଭୃତି ଦୁର୍ଦ୍ଧର୍ଷ ରାକ୍ଷସମାନଙ୍କୁ ମାରି ପକାଇଛନ୍ତି । ସେମାନଙ୍କର ସମଗ୍ର ସେନାକୁ ନିପାତ କରିଛନ୍ତି । ଏ ସମସ୍ତ ପବନ ଗତିରେ ସମଗ୍ର ଆର୍ଯ୍ୟାବର୍ତ୍ତରେ ପ୍ରଚାରିତ ହୋଇଥିବ । ଏପରିକି ରାମଙ୍କ କୃତିତ୍ୱ ଓ ଶକ୍ତି ବହୁଗୁଣିତ ହୋଇ ଲୋକ ମୁଖରେ ପ୍ରଚାରିତ ହୋଇଥିବ । ଆମର କହିବାର କଥା ରାମ ଗୌତମ ଆଶ୍ରମକୁ ଆସିବା ପୂର୍ବରୁ ଜନସମାଜରେ ସମ୍ମାନ ଓ ଆଦୃତି ଓ ସ୍ୱୀକୃତି ଲାଭ କରିସାରିଲେଣି ।

ଏଣେ ବିଶ୍ୱାମିତ୍ର ଋଷି, ଯାହାଙ୍କର ତପୋବଳ ଅମାପ ଏବଂ ଯେ ଜନସମାଜରେ ଅତ୍ୟନ୍ତ ସମ୍ମାନିତ ଓ ବଶିଷ୍ଠଙ୍କ ସମକକ୍ଷ ବୋଲି ଆଦୃତ, ସେ ରାମଙ୍କ ପ୍ରତି ଅତି ମାତ୍ରାରେ ସ୍ନେହଶୀଳ ଓ ତାଙ୍କ ପ୍ରଶଂସାରେ ଅତ୍ୟନ୍ତ ଉଦାର । ବିଶ୍ୱାମିତ୍ର ନିଜେ ମଧ କହୁଛନ୍ତି ଯେ ସେ ପାଞ୍ଚ ହଜାର ବର୍ଷ ଧରି ସରସ୍ୱତୀ ନଦୀ କୂଳରେ ହିମାଳୟରେ ତପସ୍ୟା କରୁଥିଲେ ମାତ୍ର ଗୁରୁଆଜ୍ଞାରେ ତପସ୍ୟା ଛାଡି ସମତଳକୁ ଆସିଛନ୍ତି, ଆର୍ଯ୍ୟାବର୍ତ୍ତର ସମସ୍ୟା ଦୂରକରି ଧର୍ମ ରକ୍ଷା କରିବା ପାଇଁ ତାଙ୍କର ଏ ଘୋଷଣା ଆର୍ଯ୍ୟାବର୍ତ୍ତ ଗ୍ରହଣ କରିଥିବ ଏବଂ ତା ସହିତ ଧର୍ମ ରକ୍ଷା ଅଭିଯାନରେ ସେ ସେନାପତିତ୍ୱ ରାମଙ୍କୁ ଦେଇଛନ୍ତି ଯିଏ ମାତ୍ର ୧୬/୧୭ ବର୍ଷର । ଏଥିରୁ ରାମଙ୍କ ଅବତାରତ୍ୱ ନେଇ ଜନତା ସ୍ଥିର ନିଶ୍ଚିତ ହୋଇଥିବ ।

ଏ ସମସ୍ତ ରାମଙ୍କ ଅବତାରତ୍ୱ; ଜନତାର ସେଥିପାଇଁ ତାଙ୍କ ଉପରେ ଆସ୍ଥା ଓ ମୁଗ୍ଧ ଆନୁଗତ୍ୟ ସେ ଗୌତମ ଆଶ୍ରମରେ ପାଦଦେବା ପୂର୍ବରୁ ପ୍ରତିଷ୍ଠିତ ହୋଇସାରିଲାଣି ।

ବିଶ୍ୱାମିତ୍ରଙ୍କ ଠାରୁ ରାମ ଅହଲ୍ୟା ବୃତ୍ତାନ୍ତ ଶୁଣି ଅତ୍ୟନ୍ତ ସମ୍ବେଦନଶୀଳ ହୋଇ ଉଠିଛନ୍ତି । ଆଗରୁ ହୁଏତ ଏ ବ୍ୟାପାରରେ ସେ ଶୁଣି ଥାଇପାରନ୍ତି ମାତ୍ର ଜନକଙ୍କ ରାଜଧାନୀକୁ ଯିବା ବାଟରେ ଆଶ୍ରମରେ ପାଦ ଦେଇ ଅହଲ୍ୟାଙ୍କ ଅବସ୍ଥା ଦେଖି ତାଙ୍କର ହୃଦୟ ବିଗଳିତ ହୋଇଛି । ଦୋଷ ତୁଳନାରେ ଦଣ୍ଡ ଯେ ସୀମା ଲଂଘନ କରିଛି, ତାହା ସେ ବୁଝିଛନ୍ତି ଓ ହାତ ଧରି ଅହଲ୍ୟାଙ୍କୁ ଧୂଳିରୁ ଉଠାଇଛନ୍ତି । ଯେଉଁ ଅହଲ୍ୟା ସମ୍ପୂର୍ଣ୍ଣ ପରିତ୍ୟକ୍ତା ଥିଲେ, କାହାରି ପାଦ ପାଖରେ ପଡୁ ନଥିଲା, ସମ୍ପୂର୍ଣ୍ଣ ଉପେକ୍ଷିତା ହୋଇ ବର୍ଷ ବର୍ଷ ଧରି କଟାଇଥିଲେ; ରାମଙ୍କ ପରି ଜଣେ ଅବତାର ପୁରୁଷ ତାଙ୍କୁ ସେ ଧୂଳି, ପାଉଁଶରୁ ଉଠାଇ ଆଣିବାରେ ତତ୍‌କ୍ଷଣାତ୍ ଉପସ୍ଥିତ ଜନତା ତାଙ୍କୁ ସ୍ୱୀକାର କରି ନେଉଛି ଓ ସମାଜରେ ଗ୍ରହଣ କରିନେଇଛି । ଏହାଦ୍ୱାରା ନିଜ ମନତଳେ ଥିବା ଦୋଷୀ-ମନ୍ୟତାରୁ ମଧ୍ୟ ସମାଜ ନିଜକୁ ମୁକ୍ତ କରିପାରି ଆଶ୍ୱସ୍ତ ହୋଇଛି ।

ଏ ତ ଗଲା ଘଟଣା ପ୍ରବାହ । ଏଠାରେ ଅହଲ୍ୟାଙ୍କ ପ୍ରତି ରାମଙ୍କର ସମ୍ବେଦନଶୀଳତାର ମଧ୍ୟ ଅନେକ ଯଥାର୍ଥ କାରଣ ରହିଛି । ରାମଙ୍କ ମାନସିକତା ବିଚାର୍ଯ୍ୟ । ତାଙ୍କ ନିଜ ମା' କୌଶଲ୍ୟାଙ୍କ କଥା । ସେ ନିଜେ ଏକ ସମୃଦ୍ଧ ରାଜ୍ୟର ରାଜକନ୍ୟା ଏବଂ ଏକ ବିଶାଳ ସମୃଦ୍ଧ ଉନ୍ନତ ରାଜ୍ୟର ପାଟରାଣୀ । ସମ୍ରାଟ ଦଶରଥଙ୍କର ପଟ୍ଟମହିଷୀ । ମାତ୍ର ଆପଣାର ପ୍ରାସାଦରେ ଦାସଦାସୀ ପରିପୂର୍ଣ୍ଣ ହୋଇ ମଧ୍ୟ ଏକ ପରିତ୍ୟକ୍ତାର ଜୀବନ ସେ ବିତାଇଛନ୍ତି । କୈକେୟୀଙ୍କ ଆବିର୍ଭାବ ପରେ ଦଶରଥଙ୍କ ଉପେକ୍ଷା ତାଙ୍କୁ ଯେଉଁ ମାନସିକ ଯନ୍ତ୍ରଣା ବର୍ଷ ବର୍ଷ ଧରି ଦେଇଛି ଓ ଏହି ସବୁ ଉପେକ୍ଷା, ହେୟ ଜ୍ଞାନ ଗରଳକୁ ଢୋକି ଦେଇ ସେ ପାଟରାଣୀ ହିସାବରେ ନିଜର ସମସ୍ତ କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦନ କରିଛନ୍ତି, ତାହା ରାମଙ୍କ ଆଖିରୁ ବାଦ ଯାଇ ନଥିବ । ତାଙ୍କ ମା'ଙ୍କ କାହାଣୀ ରାମଙ୍କ ମନରେ ସାମଗ୍ରିକ ଭାବେ ଗୋଟିଏ ନିର୍ଯ୍ୟାତିତା, ଉପାୟହୀନା ମାତୃତ୍ୱ ପ୍ରତି ସମ୍ବେଦନଶୀଳତା ସୃଷ୍ଟି କରିବାରେ କିଛି ଅସାଭିକତା ନାହିଁ ।

ଅହଲ୍ୟାଙ୍କ ଦୁଃଖ ଦେଖି ସେ ନିଜ ମାତା କୌଶଲ୍ୟାଙ୍କ ଦୁଃଖ ଅସହାୟତା ମନେ ପକାଇଛନ୍ତି ଏବଂ ଅହଲ୍ୟାଙ୍କୁ ଉଦ୍ଧାର କରି ଏକ ମାତୃଋଣ ଶୁଝିବା ପରି କାମ କରିଛନ୍ତି ।

ଆଉ ଗୋଟିଏ କଥା ବିଚାରକୁ ନିଆଯାଇପାରେ । ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ନେଇ ଅହଲ୍ୟା ସ୍ୱୀକାର/ଉଦ୍ଧାର ପରେ ମିଥିଳାକୁ ଯାଇଛନ୍ତି । ଗୌତମ ଆଶ୍ରମ ଠାରୁ ମିଥିଳାର ଦୂରତା ବେଶୀ ନୁହେଁ । ଏମାନେ ପହଞ୍ଚିବା ପୂର୍ବରୁ ଅହଲ୍ୟା-ଉଦ୍ଧାର ଖବର ସେଠାରେ ପ୍ରଚାରିତ ହୋଇ ସାରିବଣି । ଜନକ ଓ ତାଙ୍କର କୁଳଗୁରୁ ଶତାନନ୍ଦ ବିଶ୍ୱାମିତ୍ରଙ୍କୁ ଅର୍ଘ୍ୟ ଦେଇ ପାଛୋଟି ନେବାକୁ ଆଗେଇ ଆସିଛନ୍ତି । ଶତାନନ୍ଦ ହେଉଛନ୍ତି ଗୌତମ-ଅହଲ୍ୟା

ପୁତ୍ର । ଜନକଙ୍କ କୁଳଗୁରୁ ହେବା କିଛି କମ୍ କଥା ନୁହେଁ । ତେଣୁ ଶତାନନ୍ଦ ଯେ ଜଣେ ଉଚ୍ଚକୋଟୀର ସାଧକ ଓ ତପସୀ ହୋଇଥିବେ ତାହା ଅନସ୍ୱୀକାର୍ଯ୍ୟ । ରାମ ଜଣେ ସାଧାରଣ ୧୬/୧୭ ବର୍ଷର ଯୁବକ ହୋଇଥିବା ସତ୍ତ୍ୱେ ସେ ତାଙ୍କର ପାଦଛୁଇଁ ପ୍ରଣାମ କରି ନିଜ ମା'ଙ୍କୁ ଉଦ୍ଧାର କରିଥିବାରୁ କୃତଜ୍ଞତା ପ୍ରକାଶ କରିଛନ୍ତି ।

ଶତାନନ୍ଦଙ୍କର ଏହି କାର୍ଯ୍ୟରୁ ଆମର ବୁଝିବାରେ କିଛି ଅସୁବିଧା ନାହିଁ ଯେ ସେ ତାଙ୍କର ମା'ଙ୍କ ଦୋଷକୁ ଏପରି ଗୁରୁତର ବୋଲି ମନେ କରିନାହାନ୍ତି, ଯେପରି ଗୌତମ ନେଇଥିଲେ । ଗୌତମଙ୍କ ଅଭିଶାପ ଯେ ମା'ଙ୍କ ପ୍ରତି ଅତ୍ୟନ୍ତ କଠୋର ଓ ଅଯଥା ବେଶୀ ତାହା ସେ ମନ ମଧ୍ୟରେ ରଖିଛନ୍ତି । ମାତ୍ର ପିତାଙ୍କ କଥା ବା କାମରେ ପ୍ରତିବାଦ କରିପାରିନାହାନ୍ତି କି ମା'ଙ୍କୁ ଦୋଷୀ ମନେକରି ମନରୁ ଆଡେଇ ଦେଇ ପାରିନାହାନ୍ତି ।

ତେଣୁ ରାମଙ୍କୁ ଦେଖିବା ମାତ୍ରେ ନିଜର ନିର୍ଦ୍ଦୋଷ ମାତାଙ୍କୁ ଉଦ୍ଧାର କରିଥିବା ହେତୁ ସେ ଏ ପ୍ରକାର ଅଶ୍ରୁଳ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଶତାନନ୍ଦଙ୍କର ଏ ସ୍ୱାଭାବିକ ପ୍ରତିକ୍ରିୟା ମଧ୍ୟ ରାମଙ୍କ ଅବତାରତ୍ୱ ପ୍ରଚାରକୁ ପୁଷ୍ଟ କରିଛି ।

# ଶିବଧନୁ ଭଙ୍ଗ ଓ ପର୍ଶୁରାମ ଦର୍ପଦଳନ

ବିଶ୍ୱାମିତ୍ର ସିଦ୍ଧ ଆଶ୍ରମରେ ଯଜ୍ଞ ସମାପ୍ତି ପରେ ରାମ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ମିଥିଳା ଯାଇଛନ୍ତି । ରାସ୍ତାରେ ଗୌତମଙ୍କ ଆଶ୍ରମରେ ଅହଲ୍ୟାଙ୍କୁ ଶାପମୁକ୍ତ କରିଛନ୍ତି । ସାମାଜିକ ବାସନ୍ଦରୁ ମୁକ୍ତି ଦେଇ ସମାଜରେ ଗ୍ରହଣୀୟ କରାଇଛନ୍ତି । ସ୍ୱାମୀ ଓ ସମାଜ ପରିତ୍ୟକ୍ତା ହୋଇ ଅତ୍ୟନ୍ତ ଦୀନହୀନ ଜୀବନ ବିତାଉଥିବା ଅହଲ୍ୟାଙ୍କୁ ନୂତନ ଜୀବନ ଦେଇଛନ୍ତି । ଦୁଃଖ, କଷ୍ଟ, ଉପେକ୍ଷାରେ ପଥର ହୋଇଯାଇଥିବା ନାରୀଟି ପୁଣି ଜୀବନ୍ୟାସ ପାଇଛି ।

ଏଣେ ଜନକ ନିଜର ପାଳିତା କନ୍ୟା ସୀତାର ବିବାହ ପାଇଁ ଏକ ସର୍ତ୍ତ ରଖିଛନ୍ତି । ସର୍ତ୍ତ ହେଉଛି ପୁରୁଷ ପୁରୁଷ ଧରି ତାଙ୍କ ବଂଶରେ ପୂଜା ପାଉଥିବା ଏକ ଅନନ୍ୟ ଧନୁ ଯାହା ମହାଦେବ ଶିବଙ୍କଠାରୁ ତାଙ୍କ ପୂର୍ବ ପୁରୁଷ ପ୍ରାପ୍ତ ହୋଇଥିଲେ ସେଥିରେ ଯେ ଗୁଣ ଚଢ଼ାଇବ ତାହାକୁ ସୀତା ବରଣମାଳା ଦେବେ । ଜନକ ତାଙ୍କର ଅଳିଅଳି ରୂପବତୀ ସର୍ବଗୁଣସମ୍ପନ୍ନା କନ୍ୟା ପାଇଁ ଏକ ଅନନ୍ୟ ପାତ୍ରର ସନ୍ଧାନରେ ଥିଲେ । ରୂପ, ଗୁଣ, ବଂଶ ପରମ୍ପରା ବାଦ ସେ ଚାହୁଁଥିଲେ ଏକ ଅତ୍ୟନ୍ତ ସମର୍ଥ ପାତ୍ର । ତେଣୁ ଏହି ଶିବଧନୁ ସର୍ତ୍ତ । ଶିବଧନୁ ଲୌହ ନିର୍ମିତ । ସାଧାରଣ କେହି ସେଥିରେ ଗୁଣ ଚଢ଼େଇବା ତ ଦୂରର କଥା ତାକୁ ଉଠାଇବା ମଧ ସମ୍ଭବ ନଥିଲା ।

ସୀତାଙ୍କୁ ଜନକ ପାଇବା ପରଠାରୁ ତାଙ୍କ ବଂଶ ତଥା ରାଜ୍ୟର ପ୍ରକୃତ ଉନ୍ନତି ଘଟିଛି । ଦୁର୍ବିପାକ ଘଟିନାହିଁ । ଠିକ୍ ସମୟରେ ବର୍ଷା ହେଉଛି । ଶତ୍ରୁ ଆକ୍ରମଣ ନାହିଁ । ରାଜ୍ୟରେ ଶାନ୍ତି ଶୃଙ୍ଖଳା ବେଶ୍ ରହିଛି । ପ୍ରଜାମାନେ ବେଶ୍ ଖୁସୀରେ ଅଛନ୍ତି । ରାଜ୍ୟର ସମୃଦ୍ଧି ଏଇ କେତେଟା ବର୍ଷରେ ଅନେକ ବଢ଼ିଯାଇଛି । ଏପରି ଶୁଭଦାୟୀନୀ ଲକ୍ଷ୍ମୀବନ୍ତ କନ୍ୟା ପାଇଁ ଯେ କେହି ପିତା ଚିନ୍ତିତ ହେବା ସ୍ୱାଭାବିକ, ଜନକଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ତାଙ୍କ ପାରୁପର୍ଯ୍ୟନ୍ତ ସେ ଚେଷ୍ଟା କରିଛନ୍ତି ଜଣେ ଉପଯୁକ୍ତ ପାତ୍ର ହାତରେ ସୀତାଙ୍କୁ ଦେବା ପାଇଁ ଏବଂ ଏଥିପାଇଁ ତାଙ୍କର ଏ ସ୍ୱୟମ୍ବର ଯୋଜନା ।

ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ନେଇ ମିଥିଳା ଯିବା ପଛରେ ସ୍ୱୟମ୍ବରରେ ଅଂଶଗ୍ରହଣର ଉଦ୍ଦେଶ୍ୟ ରହିଛି । ଜନକ ତାଙ୍କ କୁଳଗୁରୁ ସତାନନ୍ଦ (ଅହଲ୍ୟାଙ୍କ ପୁତ୍ର)ଙ୍କ ସହିତ ଆସି

ମହର୍ଷି ବିଶ୍ୱାମିତ୍ରଙ୍କ ପଦ ବନ୍ଦନା କରି ଯଥାମାନ୍ୟ ପାଛୋଟି ନେଇଛନ୍ତି । ମାତ୍ର ସେଇକ୍ଷଣରେ ରାମଙ୍କୁ ଦେଖି ଜନକଙ୍କ ମନରେ ଭାବାନ୍ତର ସୃଷ୍ଟି ହୋଇଛି । ତାଙ୍କ ଅନ୍ତର ଭିତରୁ ସତେ ଯେପରି ସେ ଶୁଣି ପାରୁଛନ୍ତି, ଏଇ ରାମ ସୀତା ପାଇଁ ଉପଯୁକ୍ତ । ଏଇ ରାମ ହିଁ ଏକମାତ୍ର ଆଶାନୁରୂପ ପାତ୍ର ।

ଶ୍ରାନ୍ତ, କ୍ଲାନ୍ତ ରାମ ଲକ୍ଷ୍ମଣ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଶିବିରରେ ବିଶ୍ରାମ ଓ ରାତ୍ରୀ ଯାପନ କରିଛନ୍ତି । ପ୍ରାତଃକାଳରେ ରାମ ଖୋଲା ପବନରେ ବୁଲିବାକୁ ବାହାରିଥିବା ସମୟରେ ନଗର ପ୍ରାନ୍ତରେ ରାଜପ୍ରାସାଦ ଡେଙ୍ଗ ବଗିଚାରେ ପ୍ରାତଃ ଭ୍ରମଣ କରିବା ଅବସରରେ ସୀତାଙ୍କ ଉପରେ ଦୃଷ୍ଟି ପଡିଛି । ସୀତା ମଧ୍ୟ ରାମଙ୍କୁ ଦେଖିଛନ୍ତି । ରାମ ବ୍ରହ୍ମଚାରୀ, ସଂଯତ । ମାତ୍ର ସେଇ ଗୋଟିଏ କ୍ଷଣରେ ସେ ସୀତାଙ୍କ ପାଖରେ ବାନ୍ଧି ହୋଇ ପଡିଛନ୍ତି । ଏକ ଅଦ୍ଭୁତ ଅନୁଭବ ତାଙ୍କର ଆସିଛି । ସେ ହୃଦୟଙ୍ଗମ କରିଛନ୍ତି ଯେ ଇଏ ଯେ କେହି ନାରୀ ନୁହଁନ୍ତି । ଏଇ ନାରୀଟି ସହ ତାଙ୍କର ଜନ୍ମ ଜନ୍ମାନ୍ତରର ସମ୍ପର୍କ । ଅନେକ ଜନ୍ମରୁ ସେମାନେ ଏକାଠି, ଆଉ ଏ ଜନ୍ମରେ ମଧ୍ୟ ତା'ର ପୁନରାବୃତ୍ତି ଘଟିବାକୁ ଯାଉଛି । ଏହା ବିଧି ନିର୍ଦ୍ଦେଶିତ ବୋଲି ତାଙ୍କର ଦୃଢ଼ ଧାରଣା ହୋଇଯାଇଛି । ଏହି ଆନ୍ତରିକ ଅନୁଭବ, ଏହି ଦୃଢ଼ ଧାରଣା ତାଙ୍କୁ ଏକାଗ୍ର କରିଛି ଏବଂ ଶିବଧନୁ ଦେଖିବା ବେଳେ ଏହି ଏକାଗ୍ରତା, ଏକମନ୍ୟତା ଓ ଦୃଢ଼ ମାନସିକତା ତାଙ୍କୁ ସାହାଯ୍ୟ କରିଛି ।

ବିଶ୍ୱାମିତ୍ରଙ୍କଠାରୁ ସେ ଶିକ୍ଷା କରିଛନ୍ତି ଚେତନାକୁ ଏକାଗ୍ର କରି ଶତ୍ରୁ ସମ୍ମୁଖରେ ଅବିଚଳିତ, ନିଶ୍ଚଳ ରହି ବାହ୍ୟ ପ୍ରଭାବରୁ ମନକୁ ସମ୍ପୂର୍ଣ୍ଣ ନିବୃତ୍ତ/ମୁକ୍ତ ରଖି, ଅସ୍ତ୍ରକୁ ଅଭିମନ୍ତ୍ରିତ କରିବାର ଉପାୟ ଓ ତଦ୍ୱାରା ଅସ୍ତ୍ରର ସାମର୍ଥ୍ୟ ସହସ୍ରଗୁଣ ବୃଦ୍ଧି କରି ଶତ୍ରୁ ସଂହାରର ଗୁପ୍ତ କୌଶଳ ।

ଶିବଧନୁ ଉଠାଇବାକୁ ଯିବା ସମୟରେ ରାମ ସେହି କୌଶଳ ହିଁ ଅବଲମ୍ବନ କରିଛନ୍ତି । ପ୍ରଥମତଃ ସୀତାଙ୍କୁ ଦେଖିବା ପରଠାରୁ ତାଙ୍କ ଭିତରେ ଏ ଦୃଢ଼ତା ଆସିଯାଇଛି ଯେ ସୀତାଙ୍କ ସହିତ ତାଙ୍କର ବିବାହ ବିଧି ପ୍ରେରିତ । ତେଣୁ ସେ ସ୍ଥିର ନିଶ୍ଚିତ ଯେ ଏ ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହେବା ମଧ୍ୟ ବିଧି ନିର୍ଦ୍ଦିଷ୍ଟ । ଶିବଧନୁ ପାଖରେ ସେ ନିଜକୁ ଏକାଗ୍ର କରି, ଏକକ, ସ୍ଥିରମନସ୍କ ହୋଇ ସମସ୍ତ ସ୍ନାୟବିକ ପ୍ରକ୍ରିୟାକୁ ଏକ ବିନ୍ଦୁରେ ଠୁଳ କରି ଶିବଧନୁରେ ଯେତେବେଳେ ହାତ ଦେଇଛନ୍ତି ସେତେବେଳେ ତାଙ୍କୁ ଆଉ କିଛି ଦେଖାଯାଇନାହିଁ । ନା, ଉପସ୍ଥିତ ରାଜନ୍ୟ ବର୍ଗ, ନା ସମବେତ ଜନତା ଓ ଅତିଥି ସମୂହ । ତାଙ୍କ ମନ ଭିତରେ କେବଳ ରହିଛି ଶିବଧନୁ । ତାଙ୍କୁ ଦେଖାଯାଉଛି କେବଳ ଶିବଧନୁ । ସମସ୍ତ ଶକ୍ତି ଗୋଟିଏ ବିନ୍ଦୁରେ ଠୁଳ କରି ସେ ଶିବଧନୁରେ ହାତ ଦେଇଛନ୍ତି ଓ ସେଇଟି ତାଙ୍କ ହାତର ସ୍ପର୍ଶ ପାଇ ଫୁଲ ପରି ହୋଇଯାଇଛି । ରାମ ଅବଲୀଳାକ୍ରମେ ସେଇଟି ଉଠାଇ ଗୁଣ ଚଢ଼ାଇବାକୁ ଯିବା ସମୟରେ ଚାପ ପାଇ ସେଇଟି ମଡ ମଡ ହୋଇ ଦୁଇ ଖଣ୍ଡ ହୋଇଯାଇଛି । ଏହାହିଁ ଘଟେ । ଏକାଗ୍ର ହୋଇ ସମସ୍ତ ଇନ୍ଦ୍ରିୟ ଏକ

କରି ଗୋଟିଏ ବିନ୍ଦୁରେ ଠୁଳ କରିପାରିଲେ ଅମାପ ଐଶ୍ୱରିକ ଶକ୍ତି ଓ ସାମର୍ଥ୍ୟ ହାସଲ କରିହୁଏ । ରାମଙ୍କ କ୍ଷେତ୍ରରେ ତାହାହିଁ ଘଟିଛି ।

ଏଠାରେ ଦୈବ ସଂଯୋଗ କୁହନ୍ତୁ ବା ବିଶ୍ୱାମିତ୍ରଙ୍କ ପୂର୍ବକଳ୍ପିତ ଯୋଜନା ଦେଖନ୍ତୁ, ଏ କଳା ରାମଙ୍କୁ ବିଶ୍ୱାମିତ୍ର ହିଁ ଅଯୋଧ୍ୟାରୁ ଦଶରଥଙ୍କ ଠାରୁ ଯଜ୍ଞ ରକ୍ଷା ପାଇଁ ମାଗି ଆଣିବା ବେଳେ ବାଟରେ ଶିଖାଇଛନ୍ତି । ମନେହୁଏ ବିଶ୍ୱାମିତ୍ର ଏକ ବୃହତ୍ତର ଲକ୍ଷ୍ୟ ହାସଲ ପାଇଁ ରାମଙ୍କୁ ପ୍ରସ୍ତୁତ କରୁଛନ୍ତି ଏବଂ ଶିବଧନୁ ଭାଙ୍ଗି ସୀତାଙ୍କୁ ବିବାହ କରିବା ସେ ଲକ୍ଷ୍ୟ ପଥରେ ଗୋଟିଏ ସୋପାନ ମାତ୍ର । ହୁଏତ ପର୍ଶୁରାମ ଦର୍ପଦଳନ ପାଇଁ ବିଶ୍ୱାମିତ୍ରଙ୍କ ବୃହତ୍ତର ସୁପରିକଳ୍ପିତ ଯୋଜନାର ଏକ ଅଂଶ ହୋଇଥାଇପାରେ ।

ଏହି ଏକ ପ୍ରକାର ଧନୁ, ସମାନ ଓଜନ, ସମାନ ଲମ୍ବ, ଏକଇ ଧାତୁର ସମାନ ଶକ୍ତିର ଧନୁ ଥିଲା ଦୁଇଟି । ଗୋଟିଏ ଥିଲା ଶିବଙ୍କ ପାଖରେ, ଆଉ ଗୋଟିଏ ଥିଲା ବିଷ୍ଣୁଙ୍କ ପାଖରେ । ଗୋଟିଏ ଆସିଥିଲା ଜନକଙ୍କ ପୂର୍ବ ପୁରୁଷଙ୍କ ପାଖକୁ, ଆଉ ଗୋଟିଏ ଆସିଥିଲା ପର୍ଶୁରାମଙ୍କ ପାଖକୁ ।

ଶିବଧନୁ ଭଙ୍ଗ ଯେହେତୁ ଗୋଟିଏ ଛୋଟିଆ ଘଟଣା ନଥିଲା, ତାହା ଦାବାନଳ ପରି ଲୋକ ତୁଣ୍ଡରେ ମାତ୍ର ଦିନ କେଇଟାରେ ଚାରିଆଡେ ବ୍ୟାପିଗଲା । ବିଶ୍ୱାମିତ୍ର ଚାହିଁଥିବା ପରି କଥାଟା ପର୍ଶୁରାମଙ୍କ କାନରେ ମଧ୍ୟ ପଡିଲା । ସେ ଦର୍ପୀ, ଆପଣା ସାମର୍ଥ୍ୟ ନେଇ ଅତ୍ୟନ୍ତ ଅହଂକାରୀ । ତା' ସହିତ ଅତ୍ୟନ୍ତ ଅଯୌକ୍ତିକ ଭାବେ କ୍ଷତ୍ରୀୟ ବିଦ୍ୱେଷୀ । ଶିବଧନୁ ଭଙ୍ଗ ଖବର ତାଙ୍କ କାନରେ ପଡିବା ପରେ ସେ ଅତ୍ୟନ୍ତ କ୍ରୋଧୀ ହୋଇପଡିଲେ । ସେ ଶିବଭକ୍ତ । ତେଣୁ ଶିବଧନୁ ଭଙ୍ଗ ପରି ଅକ୍ଷମଣୀୟ ଅପରାଧ କରିଥିବା ମୂଢ଼ ରାମଙ୍କୁ ଦଣ୍ଡିତ କରିବା ପାଇଁ ସେ ନିଜର ଆସ୍ଥାନ ମହେନ୍ଦ୍ର ଗିରିରୁ ବାହାରି ଆସିଲେ । ରାମ ସୀତାଙ୍କୁ ବିବାହ କରି ଅଯୋଧ୍ୟା ଫେରିବା ବାଟରେ ଦୁଇ ଜଣଙ୍କର ମୁହାଁମୁହିଁ ।

ରାମ ପର୍ଶୁରାମ ମୁହାଁମୁହିଁ ହେବେ, ଦ୍ୱନ୍ଦ୍ୱ ଉପୁଜିବ ତାହା ବିଶ୍ୱାମିତ୍ରଙ୍କୁ ଜଣା ଥିଲା । ସେ ମଧ୍ୟ ଜାଣିଥିଲେ ଏ ଦ୍ୱନ୍ଦ୍ୱର ପରିଣାମ କ'ଣ ହେବ । ଏହାର ପରିଣାମ ସମାଜ ପାଇଁ, ଆର୍ଯ୍ୟ ଧର୍ମ ପାଇଁ ମଙ୍ଗଳକାରୀ ହେବ ବୋଲି ସେ ଜାଣିଥିଲେ । ତା' ନହେଲେ ସେ ସୀତାଙ୍କ ବିବାହ ପରେ ରାମଙ୍କୁ ବଶିଷ୍ଠଙ୍କ ହାତରେ ସମର୍ପି ଦେଇ ଆପଣା କାମ ସମ୍ପୂର୍ଣ୍ଣ ହୋଇଛି, ଆଉ ତାଙ୍କର ଏ ସମତଳ ଭୂମିରେ ରହିବାର ଆବଶ୍ୟକତା ନାହିଁ କହିଦେଇ ହିମାଳୟକୁ ସରସତୀ (କୌଶୁକୀ) ନଦୀ କୂଳକୁ ତପସ୍ୟା ପାଇଁ ଚାଲି ଯାଇ ନଥାନ୍ତେ ।

ବର୍ତ୍ତମାନ ଆମେ ଦେଖିବା କ'ଣ ଥିଲା ବିଶ୍ୱାମିତ୍ରଙ୍କ ଉଦ୍ଦେଶ୍ୟ, କ'ଣ ପାଇଁ ସେ ଗୁରୁ ଆଜ୍ଞାରେ ହିମାଳୟ ଛାଡି ସମତଳକୁ ଆସିଲେ, ଆଉ ବର୍ତ୍ତମାନ ତାଙ୍କ ଦାୟୀତ୍ୱ ସରିଗଲା କହି ଫେରିଗଲେ ।

ପ୍ରଥମରୁ ବିଶ୍ୱାମିତ୍ର ନିଜ ମୁହଁରେ କହିଛନ୍ତି ଯେ ସେ ଦୀର୍ଘ ପାଞ୍ଚ ହଜାର ବର୍ଷ ଧରି କୌଶୁକୀ (ସରସତୀ/ସତ୍ୟବତୀ) ନଦୀ ତଟରେ ତପସ୍ୟା କରୁଥିଲେ । ଗୁରୁଙ୍କ ଆଜ୍ଞାରେ

ବିଶେଷ କାର୍ଯ୍ୟ ସାଧନ ପାଇଁ ସମତଳକୁ ଆସିଛନ୍ତି । ସେହି ବିଶେଷ କାର୍ଯ୍ୟର ଆରମ୍ଭ ସେ କରିଛନ୍ତି ରାମଙ୍କୁ ଦଶରଥଙ୍କ ପାଖରୁ ଯଜ୍ଞ ରକ୍ଷା ପାଇଁ ମାଗି ଆଣିବାଠାରୁ । ବାଟରେ ରାମଙ୍କୁ ବିଭିନ୍ନ ଗୋପନୀୟ କଳ, କୌଶଳ, ଅସ୍ତ୍ର, ଶସ୍ତ୍ରର ରହସ୍ୟ ଶିଖାଇଛନ୍ତି । ନିଜର ମନକୁ ନିୟନ୍ତ୍ରଣ କରି ସାମର୍ଥ୍ୟ କିପରି ଶତ ସହସ୍ର ଗୁଣ ବୃଦ୍ଧି କରିହେବ, କିପରି ଏକାଗ୍ର ହେଲେ ଅସମ୍ଭବକୁ ସମ୍ଭବ କରିହେବ, କିପରି ବର୍ଷ ବର୍ଷ ଧରି ନଖାଇ ନପିଇ ନଶୋଇ ମଧ୍ୟ ଅକ୍ଳାନ୍ତ ରହିହେବ, ସେ ସବୁ ଶିକ୍ଷା ଦେଇଛନ୍ତି । ତାଙ୍କ ପାଖରେ ଥିବା ସମସ୍ତ ଶକ୍ତିଶାଳୀ ଅସ୍ତ୍ର, ଅକ୍ଷୟ ତୂଣୀର ସହିତ ତାଙ୍କୁ ପ୍ରଦାନ କରିଛନ୍ତି ଓ ସେଗୁଡିକର ସାମର୍ଥ୍ୟ ବହୁଗୁଣିତ କରିବା ପାଇଁ ଅଭିମନ୍ତ୍ରିତ କରି ପ୍ରୟୋଗର ବିଦ୍ୟା ଶିଖାଇଛନ୍ତି ।

ତାଙ୍କର ଉଦ୍ଦେଶ୍ୟ ଥିଲା ଆର୍ଯ୍ୟ ଧର୍ମର ପରମ୍ପରାର ରକ୍ଷା ତଥା ପ୍ରସାର । ପର୍ଶୁରାମଙ୍କ ଦର୍ପ ଦଳନ ସେହି ଉଦ୍ଦେଶ୍ୟ ପୂରଣ ପାଇଁ ଅତ୍ୟାବଶ୍ୟକ ଥିଲା । ରାମ-ସୀତା ବିବାହ ପରେ ସେ ଜାଣିଗଲେ ବର୍ତ୍ତମାନ ଯୁଗ ପୁରୁଷ ରାମ ତାଙ୍କର ଉଦ୍ଦେଶ୍ୟ ପୂରଣ ପାଇଁ ସମ୍ପୂର୍ଣ୍ଣ ସମର୍ଥ । ଆଉ ତାଙ୍କୁ ବାଟ ଦେଖାଇବା ଆବଶ୍ୟକ ନାହିଁ । ସେଥିପାଇଁ ସେ ମିଥିଳାରୁ ସରସତୀ ନଦୀ କୂଳକୁ ପୁଣି ଫେରିଗଲେ ।

ଏ ସମସ୍ତ ବିଷୟ ଟିକେ ବିସ୍ତାରିତ ଭାବେ ଜାଣିବା ଦରକାର ହେଉଛି । ସେ ସମୟଟା ହେଉଛି ଆର୍ଯ୍ୟ ଧର୍ମ/ସଭ୍ୟତା ପାଇଁ ଏକ ଘଡିସନ୍ଧି ମୁହୂର୍ତ୍ତ । ଆର୍ଯ୍ୟ ନରପତିଗଣ ଯେତେବେଳେ ସାମ୍ରାଜ୍ୟ ବିସ୍ତାର କରୁଥିଲେ ସେତେବେଳେ ସେମାନେ ସଙ୍ଗରେ ବ୍ରାହ୍ମଣ, ମୁନିଋଷି, ତପସୀମାନଙ୍କୁ ନେଉଥିଲେ । କିଛି ଅଞ୍ଚଳ ଅଧିକାର କରି ସେଠାରେ ଏହି ତପସୀମାନଙ୍କୁ ଥଇଥାନ କରି ସେ ଅଞ୍ଚଳକୁ ସାଂସ୍କୃତିକ ଦିଗରୁ ଆର୍ଯ୍ୟ ପରମ୍ପରାକୁ ଆଣିବାକୁ ପ୍ରୟାସ କରୁଥିଲେ । ଏହି ତପସୀମାନେ ଆଶ୍ରମ ସ୍ଥାପନ କରି ଯାଗଯଜ୍ଞ, ହୋମ ବେଦପାଠ, ଶିକ୍ଷାଦାନ କରି ସେ ଅଞ୍ଚଳର ଆଦିମ ଅଧିବାସୀମାନଙ୍କୁ ଆର୍ଯ୍ୟ ଧର୍ମ, ପରମ୍ପରା ତଥା ଜୀବନଯାତ୍ରା ପ୍ରଣାଳୀକୁ ଆକୃଷ୍ଟ କରୁଥିଲେ । ଏହା ଦ୍ୱାରା ସାମୁହିକ ହିତ ମଧ୍ୟ ସାଧିତ ହେଉଥିଲା । ଅନାର୍ଯ୍ୟ ଅଶିକ୍ଷିତ ଜନଜାତି ଶିକ୍ଷାର ଆଲୋକ ପାଉଥିଲେ, କ୍ରମେ ଏକ ସଙ୍ଗଠିତ ସାମାଜିକ, ସଭ୍ୟ ସମ୍ପ୍ରଦାୟରେ ପରିଣତ ହେଉଥିଲେ । ଅନାର୍ଯ୍ୟମାନଙ୍କୁ ଆର୍ଯ୍ୟ କରିବା କିଛି ମୁନିଋଷିଙ୍କର ଏକ ପ୍ରକାର ଜୀବନର ଲକ୍ଷ୍ୟ ହୋଇ ଯାଇଥିଲା । ସେଥିପାଇଁ ସେମାନେ ଅନେକ ଅସୁବିଧା ସତ୍ତ୍ୱେ ବଣ ଜଙ୍ଗଲରେ ଆଶ୍ରମ ସ୍ଥାପନ କରି ରହୁଥିଲେ ।

ଆମ ସମୟରେ ମଧ୍ୟ ସେ ପ୍ରକାର ମିଶନାରୀ ଉତ୍ସାହର ଦୃଷ୍ଟାନ୍ତ ମଧ୍ୟ ରହିଛି । ମୁନିଋଷିଙ୍କ ଆଉ ଗୋଟିଏ ସ୍ରୋତ ଏ ସାମୁହିକ ସମାଜ-ବିକାଶ ପ୍ରତି ଅତି ବେଶୀ ଆଗ୍ରହ ଦେଖାଉ ନଥିଲେ । ସେମାନେ ଆଶ୍ରମ ତ ସ୍ଥାପନ କରିଥିଲେ ମାତ୍ର ସେ ସବୁ ଆର୍ଯ୍ୟ ନରପତିମାନଙ୍କର ରାଜଧାନୀ ନିକଟବର୍ତ୍ତୀ ଥିଲା । ଅନାର୍ଯ୍ୟଙ୍କୁ ଆର୍ଯ୍ୟକୁ ରୂପାନ୍ତରିତ କରିବା ନେଇ ବେଶୀ ମନସ୍କ ନଥିଲେ । ବରଂ ଯାଗ ଯଜ୍ଞ, ଅଧ୍ୟୟନ, ଶିକ୍ଷାଦାନ ତପସ୍ୟା, ନୂତନ

ଜ୍ଞାନ ଆହରଣ ତଥା ରାଜାମାନଙ୍କୁ ସଠିକ୍ ଉପଦେଶ ଦେଇ ସମାଜକୁ ଠିକ୍ ରାସ୍ତାରେ ନେବାରେ ବେଶୀ ଆଗ୍ରହୀ ଥିଲେ। ଯେପରି ବଶିଷ୍ଠ ଓ ତାଙ୍କର ଆଶ୍ରମ ବା ଗୌତମ ଓ ତାଙ୍କର ଆଶ୍ରମ।

ସେ ଯାହାହେଉ, ବିଶ୍ୱାମିତ୍ର ପ୍ରଥମ ଦଳର ପୃଷ୍ଠପୋଷକ ଥିଲେ। ସେଥିପାଇଁ ସେ ଦୀର୍ଘ ପାଞ୍ଚ ହଜାର ବର୍ଷର ତପସ୍ୟାରୁ ଗୁରୁ ଆଜ୍ଞାରେ ଉଠି କୌଶୁକୀ (ସତ୍ୟବତୀ) ନଦୀ ତଟ ଛାଡି ସମତଳ ଅଞ୍ଚଳକୁ ଆସିଥିଲେ। ଅନ୍ୟତ୍ର କହିଛି ଏଇ ଜଙ୍ଗଲରେ ଆଶ୍ରମ ସ୍ଥାପନ କରିଥିବା ମୁନି ଋଷିମାନେ ନିଜ ସାଧନା ବଳରେ ଯଦିଓ ଶକ୍ତିଶାଳୀ ଥିଲେ, ବାହ୍ୟ ଆକ୍ରମଣରୁ ଅନାର୍ଯ୍ୟ ରାକ୍ଷସ ଆକ୍ରମଣରୁ ବିଶେଷ ଭାବେ ସେମାନଙ୍କର ସୁରକ୍ଷା ଦରକାର ହେଉଥିଲା। ସେଥିପାଇଁ ସେମାନେ ନିକଟସ୍ଥ କ୍ଷତ୍ରିୟ ନରପତିଙ୍କ ଉପରେ ନିର୍ଭରଶୀଳ ଥିଲେ। ତପସ୍ୟାପ୍ରାପ୍ତ ଶକ୍ତି ମଧ୍ୟ ସୀମିତ ଓ ସର୍ତ୍ତମୂଳକ। ମନଇଚ୍ଛା ଯେ କୌଣସି ସମୟରେ ତାହା ବ୍ୟବହାର କରିବା ନେଇ ମଧ୍ୟ ସୀମା ସରହଦ, କଟକଣା ଅଛି। ତେଣୁ ଆର୍ଯ୍ୟ ନୃପତିମାନଙ୍କ ଉପରେ ସେମାନେ ଆଶ୍ରମର ନିରାପତ୍ତା ପାଇଁ ନିର୍ଭରଶୀଳ ଥିଲେ ଓ କ୍ଷତ୍ରିୟ ନରପତିମାନେ ମଧ୍ୟ ନିଜ ଇଲାକାର ତପସୀମାନଙ୍କ ଆଶ୍ରମର ସୁରକ୍ଷା ପାଇଁ ଅଙ୍ଗୀକାର ବଦ୍ଧ ଥିଲେ।

ଏ ସବୁ ବିଧି, ବ୍ୟବସ୍ଥା, ନିରାପତ୍ତାର ପ୍ରତିଶ୍ରୁତି ସତ୍ତ୍ୱେ ଦୂର ଦୂରାନ୍ତରେ ଥିବା ତପସୀ ଓ ତାଙ୍କର ଶିକ୍ଷାର୍ଥୀ ଓ ଆଶ୍ରମଗୁଡିକ ସମ୍ପୂର୍ଣ୍ଣ ନିରାପଦ ନଥିଲେ। ଆର୍ଯ୍ୟ ବସତି କେବଳ ଗାଙ୍ଗେୟ ଉପତ୍ୟକାର କିଛି ଅଞ୍ଚଳରେ ପ୍ରଭାବଶାଳୀ ଥିଲା। ଏହି ନୃପତିମାନେ ସେମାନଙ୍କ ରାଜ୍ୟର ପରିସୀମା ବଢ଼ାଇବାକୁ ଚେଷ୍ଟା କରୁଥିଲେ। ମାତ୍ର ଆର୍ଯ୍ୟ ଅଧିକୃତ ଅଞ୍ଚଳ ଅପେକ୍ଷା, ତା' ବାହାରେ ଥିବା ଅଞ୍ଚଳ ବହୁଗୁଣ ବିସ୍ତୃତ ଥିଲା। ସେ ସମସ୍ତ ଅଞ୍ଚଳ ମୁଖ୍ୟତଃ ଲଙ୍କାର ଅସୁର ରାଜା ରାବଣର ଉପନିବେଶ ଥିଲା। ତାହାର ନାମ ଥିଲା ଜନସ୍ଥାନ। ତାହା ଆଜିର ପଶ୍ଚିମରେ ନାସିକ ଠାରୁ ବ୍ୟାପି ପୂର୍ବରେ ଓଡିଶାର କୋରାପୁଟ ଓ ଦକ୍ଷିଣରେ ସମୁଦ୍ର ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା। ମଝିରେ ମଝିରେ ଅନେକ ବେଶ୍ ସଭ୍ୟ, ସମର୍ଥ, ସାଧୀନ ବସତି ଥିଲା। ସେଗୁଡିକ ମୁଖ୍ୟତଃ ଆର୍ଯ୍ୟେତର ନୃପତିମାନଙ୍କ ଦ୍ୱାରା ଶାସିତ ହେଉଥିଲା। ଯଥା କିଷ୍କିନ୍ଧା। ଏଗୁଡିକ ଅନାର୍ଯ୍ୟ ବା ରାକ୍ଷସ ରାଜ୍ୟ ନଥିଲା। ମାତ୍ର ସମ୍ପୂର୍ଣ୍ଣ ଆର୍ଯ୍ୟ ବସତି ମଧ୍ୟ ନଥିଲା। ମୁଖ୍ୟତଃ ଏମାନଙ୍କୁ ଆର୍ଯ୍ୟ ପରମ୍ପରାରେ ଅଭିଷିକ୍ତ କରିବା, ଆର୍ଯ୍ୟ ଜୀବନ ଯାତ୍ରାକୁ ଆକୃଷ୍ଟ କରିବା କ୍ଷେତ୍ରରେ ଆଶ୍ରମମାନେ ଭୂମିକା ଗ୍ରହଣ କରିଥିଲେ।

ଆର୍ଯ୍ୟମାନଙ୍କର ଏହି ସାଂସ୍କୃତିକ ଅଭିଯାନକୁ ରାକ୍ଷସମାନେ ସେମାନଙ୍କର ସଭ୍ୟତା ଉପରେ, ଆର୍ଯ୍ୟମାନଙ୍କର ଆକ୍ରମଣ ଓ ସେମାନଙ୍କ ରାଜ୍ୟ (ଜନସ୍ଥାନ)କୁ ଆର୍ଯ୍ୟମାନଙ୍କର ଅନୁପ୍ରବେଶ ବୋଲି ମନେ କରୁଥିଲେ। ସେଥିପାଇଁ ଅନେକ ସମୟରେ ରାବଣର ସାମନ୍ତ ଯଥା ଖର, ଦୂଷଣ, ସୁବାହୁ, ମାରୀଚ, ସୂର୍ପଣଖା ଇତ୍ୟାଦି ଜନସ୍ଥାନରେ ନିଜର

ସାର୍ବଭୌମତ୍ୱ ଅକ୍ଷୁର୍ଣ୍ଣ ରଖିବା ପାଇଁ ଆଶ୍ରମ ଓ ତପସୀମାନଙ୍କୁ କ୍ରମାଗତ ଆକ୍ରମଣ, ଉତ୍ପୀଡନ କରୁଥିଲେ। ସେମାନଙ୍କ ଯାଗଯଜ୍ଞରେ ବାଧା ସୃଷ୍ଟି କରୁଥିଲେ। ଏପରିକି ସେମାନେ ସୁଯୋଗ ପାଇଲେ ପ୍ରତିଷ୍ଠିତ ଆର୍ଯ୍ୟ ଜନପଦକୁ ମଧ ଆକ୍ରମଣ କରିବାକୁ ପଛଉ ନଥିଲେ। ସେମାନେ ଏକ ସମୟରେ ମିଥିଳାକୁ ଘେରାଉ କରିଥିଲେ ମାତ୍ର ସେଥିରେ ସଫଳ ହୋଇ ନଥିଲେ। ରାକ୍ଷସମାନଙ୍କର, ବିଶେଷ କରି ରାବଣର ଶକ୍ତି, ସାମ୍ରାଜ୍ୟ କ୍ରମେ ବୃଦ୍ଧି ପାଉଥିଲା। ଏକ ସମୟରେ କେକେୟ ରାଜ୍ୟ (ଗାନ୍ଧାର ଗିଲଗଟ) ଅଞ୍ଚଳ ପର୍ଯ୍ୟନ୍ତ ମଧ ଏମାନେ ମାଡି ଯାଇଥିଲେ।

ପ୍ରଶ୍ନ ଉଠୁଛି -- ଏମାନଙ୍କୁ, ଏହି ଅପସଂସ୍କୃତିକୁ ପ୍ରତିରୋଧ କରାଯିବ କିପରି? ଆର୍ଯ୍ୟ ସଂସ୍କୃତିର ଅସ୍ତିତ୍ୱ ମଧ ବିପନ୍ନ ହେବା ପରି ଅନେକ ସମୟରେ ମନେ ହୋଇଛି। ଏଥିପାଇଁ କୌଣସି ସହଜ ସରଳ ଉପାୟ ନଥିଲା। କେବଳ ମୁନିଋଷିମାନେ ନିଜ ଜୀବନକୁ ବିପନ୍ନ କରି ଘୋର ଅରଣ୍ୟ ମଧରେ ଆଶ୍ରମ ସ୍ଥାପନ କରି, ବନବାସୀଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଯାଗଯଜ୍ଞ, ହୋମ ତଥା ଆର୍ଯ୍ୟ ପରମ୍ପରାରେ ଅଭ୍ୟସ୍ତ କରାଇବା ଦ୍ୱାରା ହିଁ ମହାମାରୀ ସଦୃଶ ମାଡି ଚାଲିଥିବା ଏହି ଅପସଂସ୍କୃତିକୁ ଆଡ଼େଇ ରଖାଯାଇ ହେବ। ଖରା ଆସିଲେ ଛାଇ ହଟି ଯିବା ପରି କ୍ରମେ ଆର୍ଯ୍ୟେତର ସଂପ୍ରଦାୟରେ ଶିକ୍ଷାର ବିସ୍ତାରରେ ହିଁ ଏ ଅପସଂସ୍କୃତି ହଟିବ, ଅନ୍ୟଥା ନୁହେଁ। ସେପରି ଆଦର୍ଶକୁ ଲକ୍ଷ୍ୟ ରଖି, ବଣ ଜଙ୍ଗଲରେ ଆଶ୍ରମ ସ୍ଥାପନ କରି ସାଧନା କରିବା ପାଇଁ ତ୍ୟାଗୀ ଓ ଅଙ୍ଗୀକାର ବଦ୍ଧ ଆଦର୍ଶ ବ୍ୟକ୍ତିଙ୍କର ଅଭାବ ନଥିଲା। ମାତ୍ର ତାଙ୍କୁ ନିରାପତ୍ତା ଦେବ କିଏ? ତାହାହିଁ ହୋଇଛି ବଡ ସମସ୍ୟା। ସେମାନେ ନିଜେ ତପସୀ, ଶାନ୍ତି ପ୍ରିୟ। ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ ଯଥା ଧାନ, ଅଧୟନ, ଅଧାପନା, ଯାଗ, ଯଜ୍ଞ ଇତ୍ୟାଦିରେ କୌଣସି ପ୍ରକାର ବ୍ୟତିକ୍ରମ ସେମାନେ ଚାହାନ୍ତି ନାହିଁ। ହଁ, ନିଜ ତପସ୍ୟା, ଆରାଧନା ବଳରେ ସେମାନେ ଅନେକ ଶକ୍ତିର ଅଧିକାରୀ। ସେହି ତପ ଶକ୍ତି ବଳରେ ହୁଏତ ସେମାନେ ନିଜକୁ କିଛି କାଳ ନିରାପତ୍ତା ଦେଇପାରିବେ। ମାତ୍ର ପ୍ରଶ୍ନ ତ କେବଳ ଜଣଙ୍କର ନିରାପତ୍ତା ନୁହେଁ। ବର୍ତ୍ତମାନ ସମସ୍ୟା ହେଉଛି ସମଗ୍ର ଆଶ୍ରମ ଓ ତା'ର ଅନ୍ତେବାସୀମାନଙ୍କର ସୁରକ୍ଷା। ସମସ୍ତ ଦୈନନ୍ଦିନ କାର୍ଯ୍ୟକ୍ରମର ସୁଚାରୁ ପାଳନର ନିରାପତ୍ତା, ତା' ବ୍ୟତୀତ ଯେଉଁ ଆର୍ଯ୍ୟେତରମାନେ ଏହି ଆଶ୍ରମ ଓ ତପସୀମାନଙ୍କ ଦ୍ୱାରା ପ୍ରଭାବିତ ହୋଇ କ୍ରମେ ଆର୍ଯ୍ୟ ପରମ୍ପରାକୁ ଆଦରିଲେଣି ସେମାନଙ୍କର ସୁରକ୍ଷା। ଏ ସବୁ ଏଇ ବ୍ରାହ୍ମଣ ତପସୀମାନେ କରିବା ସମ୍ଭବ ନଥିଲା। ତାହା କରିବାକୁ ବାହାରିଥିଲେ ଏମାନେ ତପସ୍ୟା, ସାଧନା, ଶିକ୍ଷାଦାନ ପାଇଁ ସମୟ ଓ ଶକ୍ତି ପାଆନ୍ତେ ନାହିଁ। ଏ କାମ କ୍ଷତ୍ରୀୟର, ନିରାପତ୍ତା ଯୋଗାଇବା ଦାୟିତ୍ୱ ରାଜାର।

ମାତ୍ର ଗୋଟାଏ ସମୟରେ ଏହି ନିରାପତ୍ତା ବିପନ୍ନ ହୋଇଛି। ଆର୍ଯ୍ୟ ଧର୍ମ ଓ ସଂସ୍କୃତିର ଇତିହାସରେ ତାହା ଏକ ଅତ୍ୟନ୍ତ ସର୍ଶକାତର ସମୟ। ଯେଉଁ କ୍ଷତ୍ରୀୟ ରାଜଶକ୍ତି ଆର୍ଯ୍ୟ ଧର୍ମର ଧ୍ୱଜାଧାରୀ ତପସୀଙ୍କୁ ସୁରକ୍ଷା ଦେଇ ପାରିଥାନ୍ତା, ତାକୁ ପ୍ରଥମରୁ ଟିକିଏ

ମୁଣ୍ଡ ଟେକିବା ବେଳକୁ ପର୍ଶୁରାମ ହତ୍ୟା କଲେ । ସମଗ୍ର ଆର୍ଯ୍ୟାବର୍ତ୍ତରେ ଅନେକ କ୍ଷତ୍ରୀୟ ବୀରଙ୍କୁ ଆପଣାର ଅସ୍ମିତା ପାଇଁ ବିନା ବିଚାରରେ ହତ୍ୟା କଲେ । ଏହା ଦ୍ୱାରା ସେ ପରୋକ୍ଷରେ ଦାନବ ସଂସ୍କୃତିକୁ ପ୍ରୋତ୍ସାହନ ଦେଲେ । କ୍ରୋଧରେ ଅନ୍ଧ ହୋଇ କାହିଁ କେତେ ବର୍ଷ ତଳେ ଜଣେ କ୍ଷତ୍ରୀୟ ଦ୍ୱାରା ସଂଘଟିତ ଏକ ଅନ୍ୟାୟ ପାଇଁ ସମସ୍ତଙ୍କୁ ଦାୟୀ କରିବା ଏବଂ ସେଥିପାଇଁ ଆର୍ଯ୍ୟାବର୍ତ୍ତକୁ କ୍ଷତ୍ରୀୟଶୂନ୍ୟ କରିବାର ଶପଥ ନେବା ଏବଂ ସେହି ଅନୁସାରେ କାମ କରିବା ଯେ ଅନୁଚିତ ଓ ଏକ ରୁଗ୍‌ଣ ମାନସିକତା ତାହା ସେ ବୁଝିବା ଅବସ୍ଥାରେ ନଥିଲେ । ସେ ବ୍ରାହ୍ମଣ, ଉଚ୍ଚକୂଳସଂଭୂତ । ନିଜର ଜପ, ତପ ତଥା ମୁଖ୍ୟ କର୍ମ ଭୁଲି ସେ ଯେଉଁ ଶପଥ ନେଲେ ତାହା ସମଗ୍ର ଆର୍ଯ୍ୟାବର୍ତ୍ତ ପାଇଁ ଅଭିଶାପ ହୋଇପଡିଲା ।

ପର୍ଶୁରାମଙ୍କୁ କ୍ଷାନ୍ତ କରିବାକୁ ହେବ । କ୍ଷତ୍ରୀୟ ଶକ୍ତିକୁ ପ୍ରୋତ୍ସାହନ ଦେବାକୁ ହେବ, ଗୋଟାଏ ଶକ୍ତିଶାଳୀ କ୍ଷତ୍ରୀୟ ଗୋଷ୍ଠୀ ଗଢ଼ିବାକୁ ହେବ । ତେବେ ଯାଇ ଆର୍ଯ୍ୟ ଧର୍ମ ନିରାପଦ ରହିବ ଓ ପ୍ରସାରିତ ହେବ । ଏହି ଉଦ୍ଦେଶ୍ୟରେ ବିଶ୍ୱାମିତ୍ର ପାଞ୍ଚ ହଜାର ବର୍ଷର ତପସ୍ୟା ଛାଡି, ଗୁରୁ ଆଜ୍ଞାରେ ସମତଳକୁ ଚାଲି ଆସିଛନ୍ତି । ସେହି କାର୍ଯ୍ୟକ୍ରମର ପ୍ରଥମ ସୋପାନ ରୂପେ ସେ ରାମଙ୍କୁ ଯୁଗ ପୁରୁଷ, ଅବତାର ରୂପେ ଜନ ସମାଜରେ ଗ୍ରହଣୀୟ କରାଇଛନ୍ତି । ଅସ୍ତ୍ର, ଶସ୍ତ୍ରର ଗୁଢ଼ ରହସ୍ୟ ତାଙ୍କୁ ବତାଇଛନ୍ତି । ଅକ୍ଷୟତୂଣୀର ଦେଇଛନ୍ତି । ତାଡକା ବଧ, ସିଦ୍ଧି ଆଶ୍ରମରେ ଯଜ୍ଞ ରକ୍ଷା ତଥା ସୁବାହୁ, ମାରୀଚଙ୍କୁ ବଧ, ବିଶ୍ୱାମିତ୍ରଙ୍କ ଯୋଜନା ମୁତାବକ ରାମଙ୍କୁ ଅବତାର ପୁରୁଷ, ଆର୍ଯ୍ୟ ଧର୍ମର ରକ୍ଷାକାରୀ, ଯୁଗ ପୁରୁଷ ରୂପେ ପ୍ରତିଷ୍ଠିତ କରିବାର ଗୋଟିଏ ଗୋଟିଏ ସଫଳ ସୋପାନ ।

ଆର୍ଯ୍ୟ ଧର୍ମର ପ୍ରଚାର ପ୍ରସାର ତଥା ନିରାପତ୍ତା ପାଇଁ ଯେଉଁ ଶକ୍ତିଶାଳୀ କ୍ଷତ୍ରୀୟ ଗୋଷ୍ଠୀର ଅଭ୍ୟୁଦୟର ଆବଶ୍ୟକତା ଥିଲା ତାହାକୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱ ବିଶ୍ୱାମିତ୍ର ନେଇଛନ୍ତି ଓ ରାମଙ୍କୁ ପ୍ରତୀକ କରି ତାଙ୍କ ଯୋଜନାରେ ଆଗେଇ ଯାଇଛନ୍ତି । ଅହଂକାରୀ ପର୍ଶୁରାମଙ୍କ ଦର୍ପଦଳନ କ୍ଷତ୍ରୀୟ ଗୋଷ୍ଠୀର ଅଭ୍ୟୁଦୟ ପାଇଁ ଅତ୍ୟାବଶ୍ୟକ ଥିଲା । ଆଉ ସେଥିପାଇଁ ବିଶ୍ୱାମିତ୍ର କ୍ଷେତ୍ର ପ୍ରସ୍ତୁତ କରି ରାମଙ୍କୁ ଉପଯୁକ୍ତ କରି ଗଢ଼ି, ଅସ୍ତ୍ର ଶସ୍ତ୍ର ଶିକ୍ଷା ଦେଇ ନିଜ ପୂର୍ବ ତପସ୍ୟାକୁ ଫେରି ଯାଇଛନ୍ତି । ସେ ଜାଣିଛନ୍ତି, ତାଙ୍କ କାମ ସରି ଯାଇଛି । ଏଣିକି ଯୋଜନା ମୁତାବକ ଚକ ଗଡି ଚାଲିବ । ରାମ ହିଁ ବିଭିନ୍ନ ପରିସ୍ଥିତି ନେଇ ଆର୍ଯ୍ୟ ଧର୍ମର ସୁରକ୍ଷା ପାଇଁ, ମୁନିଋଷି ତପସୀମାନଙ୍କର ଯେଉଁ ନିରାପତ୍ତା ଦରକାର ତାହା ଯୋଗାଇବାକୁ ସମର୍ଥ ହେବେ । ଅନ୍ତିମ ପରିଣତି ତାହାହିଁ ଘଟିଛି ।

ବିଶ୍ୱାମିତ୍ର ଦୂରଦ୍ରଷ୍ଟା । ସେ କେବଳ ତପସୀ ନଥିଲେ, ସେ କ୍ଷତ୍ରୀୟ । ସେ ପୂର୍ବରୁ ଜଣେ ଶକ୍ତିଶାଳୀ ନୃପତି ଥିଲେ । ତେଣୁ ଆର୍ଯ୍ୟ ଧର୍ମର ସଙ୍କଟର କାର୍ଯ୍ୟକାରଣ ସେ ସଠିକ୍ ବୁଝିଥିଲେ ଏବଂ ଗୁରୁ ଆଜ୍ଞାରେ ସମତଳକୁ ଆସି ମଞ୍ଜିଟି ପୋତିଲେ । ଗଛଟିକୁ ଯତ୍ନର ସହିତ ବଢ଼ାଇଲେ । ମୂଳରେ ଖତ, ମାଟି ଦେଇ ଦମ୍ଭିଲା କରିଦେଇ ପୁଣି ନିଜ ସାଧନା ସ୍ଥଳକୁ ଚାଲିଗଲେ । ସୀତା ବିବାହ, ଶିବଧନୁ ଭଙ୍ଗ, ପର୍ଶୁରାମ ଦର୍ପଦଳନ ଏ

ସବୁ ଆର୍ଯ୍ୟ ସଂସ୍କୃତିର ପ୍ରଚାର ପ୍ରସାର ତଥା ସାମୁହିକ ସାମାଜିକ ଉତ୍‌ଥାନ ପାଇଁ ବୃହତ୍ତର ବ୍ୟାପକ ଆନ୍ଦୋଳନର ଏକ ଏକ ସୋପାନ ରୂପେ ବିଚାର କରିବା ଅଧିକ ଗ୍ରହଣୀୟ ହେବ ।

(ଆଜିକାର ସମୟରେ ଏପରି ଦୃଷ୍ଟାନ୍ତ ମଧ୍ୟ ରହିଛି । ଶଙ୍କରାଚାର୍ଯ୍ୟଙ୍କର ହିନ୍ଦୁ ଧର୍ମର ସୁରକ୍ଷା ପାଇଁ ଚାରି ପୀଠରେ ଆଶ୍ରମ ସ୍ଥାପନ ସ୍ୱାମୀ ଦୟାନନ୍ଦଙ୍କ ଆନ୍ଦୋଳନ, ଇତ୍ୟାଦି)

ବିଶ୍ୱାମିତ୍ର କ୍ଷତ୍ରୀୟ ଥିଲେ । ନୃପତି ଥିଲେ । ଅମାପ ଶକ୍ତିଶାଳୀ ଥିଲେ । ପ୍ରଭୁତ ପ୍ରାଚୁର୍ଯ୍ୟର ଅଧିକାରୀ ଥିଲେ । ମାତ୍ର ବଶିଷ୍ଠଙ୍କ ସହ ଦ୍ୱନ୍ଦରେ, ସେ ବଶିଷ୍ଠଙ୍କ ଶକ୍ତି ଆଗରେ ଟେକି ପାରି ନାହାନ୍ତି । ତା କେବଳ ନୁହେଁ ବଶିଷ୍ଠଙ୍କ ଗାଈଟି ଠାରୁ ମିଳୁଥିବା ପ୍ରାଚୁର୍ଯ୍ୟ ଐଶ୍ୱର୍ଯ୍ୟ ମଧ୍ୟ ତାଙ୍କୁ ଆଶ୍ଚର୍ଯ୍ୟ କରିଛି । ଏ ସବୁ ଦେଖି ବ୍ରାହ୍ମଣ ଶକ୍ତି ଆଗରେ ମୁଣ୍ଡ ନୁଆଁଇ ସେ ରାଜଗାଦି ଛାଡି ତପସ୍ୟା କରିବାକୁ ଚାଲି ଯାଇଛନ୍ତି ଓ କ୍ରମେ ଘଟଣା ପ୍ରବାହରେ ବଶିଷ୍ଠଙ୍କ ଅନୁରୂପ ମହର୍ଷି ଆସନ ପାଇଛନ୍ତି ।

ମାତ୍ର ତାଙ୍କ ଶରୀରରେ ବହୁଥିବା କ୍ଷତ୍ରୀୟ ରକ୍ତ ତାଙ୍କୁ ସମାଜର ନିରାପତ୍ତା ବିପନ୍ନ ହେଉଥିବା ଦେଖି ସହ୍ୟ କରି ପାରିନାହିଁ । ତା'ର ଉପାୟ ବାହାର କରିବାକୁ ସେ ଆଗଭର ହୋଇଛନ୍ତି । କ୍ଷତ୍ରୀୟ ସମୂହ ଉପରେ ଯେଉଁ ବ୍ରାହ୍ମଣ-ପର୍ଶୁରାମ ରୂପକ ବିପଦ ଯମ ପରି ଠିଆ ହୋଇଛି ତାହାର ନିରାକରଣ ପାଇଁ ତାଙ୍କର କ୍ଷତ୍ରୀୟ ରକ୍ତ ତାଙ୍କୁ ହୁଏତ ପ୍ରୋତ୍ସାହିତ କରିଛି । ବ୍ରାହ୍ମଣ (ପର୍ଶୁରାମ) ଦର୍ପ ଦଳନ ଜଣେ କ୍ଷତ୍ରୀୟ ଦ୍ୱାରା କରାଇ ସାମୁହିକ ଭାବେ ସମାଜର ମଙ୍ଗଳ ତ କରିଛନ୍ତି, ତା ସହିତ ହୁଏତ ତାଙ୍କର ଅବଚେତନ ମନରେ ବଶିଷ୍ଠଙ୍କ ଠାରୁ ଅତୀତରେ ପାଇଥିବା ପରାଭବର ଗ୍ଲାନି ମଧ୍ୟ କାମ କରିଛି ଓ ବର୍ତ୍ତମାନ ତାହା ଅନେକ ମାତ୍ରାରେ ଧୋଇ ହୋଇ ଯାଇ ତାଙ୍କୁ ଗୋଟାଏ ପ୍ରାପ୍ତିର ଅନୁଭବ ଓ ସନ୍ତୋଷ ଦେଇଥିବା କିଛି ଅସ୍ୱାଭାବିକ ନୁହେଁ ।

ଫେରିବା ବାଟରେ ପର୍ଶୁରାମ ବାଟ ଓଗାଳି ଠିଆ ହୋଇଛନ୍ତି । ତାଙ୍କ ବିଚାରରେ ତାଙ୍କର ଆରାଧ୍ୟ ଦେବତା ଶିବଙ୍କର ଧନୁ ଭାଙ୍ଗିବା ଏକ ଅକ୍ଷମଣୀୟ ଅପରାଧ । ତାପରେ ଦ୍ୱିତୀୟ, ଗର୍ହିତ ଅପରାଧ କରିବା ବ୍ୟକ୍ତି ଆଉ କେହି ନୁହେଁ, ତାଙ୍କର ଜନ୍ମ ଶତ୍ରୁ ଜଣେ କ୍ଷତ୍ରୀୟ ସନ୍ତାନ । ସେଥିପାଇଁ ସେ କ୍ରୋଧରେ ଏକ ପ୍ରକାର ଅନ୍ଧ । ପର୍ଶୁରାମଙ୍କ ପାଖରେ ଶିବଧନୁ ଅନୁରୂପ ଧନୁଟିଏ ଅଛି । ଯେଉଁଟି ବିଷ୍ଣୁଙ୍କ ଠାରୁ ତାଙ୍କ ପାଖକୁ ଆସିଛି । ଶିବଧନୁ ଭଙ୍ଗରେ କିଛି ଜାଲିଆତି, କିଛି ଚଞ୍ଚକତା ଏ କ୍ଷତ୍ରୀୟ ସନ୍ତାନ ହୁଏତ କରିଛି, ତା' ନହେଲେ ଏପରି ଅସମ୍ଭବ ବ୍ୟାପାର ସମ୍ଭବ ହେଲା କିପରି ? ଏପରି ମଜଭୁତ, ବିଶେଷ ଧାତୁରେ ଗଢ଼ା ଧନୁ ଏ ଯୁବକ ଭାଙ୍ଗିଲା କିପରି ? ତେଣୁ ଅନୁରୂପ ଧନୁରେ ଶର ଖଞ୍ଜିବାକୁ ସେ ରାମଙ୍କୁ ଆହ୍ୱାନ କରିଛନ୍ତି । ତାଙ୍କର ଉଦ୍ଦେଶ୍ୟ, ତାଙ୍କ ଆଖି ସାମନାରେ ରାମ ଏଥର କିଛି ଚଞ୍ଚକତା କରି ପାରିବେ ନାହିଁ । ଆଉ ସେ ଏଥିରେ ଶର ଖଞ୍ଜି ନ ପାରିଲେ ଶିବଧନୁ ଭଙ୍ଗ ଯେ ଚଞ୍ଚକତାର ଆଶ୍ରୟ ନେଇ କରିଛନ୍ତି ତାହା ସ୍ପଷ୍ଟ ହୋଇଯିବ

ଓ ସେ ଦୋଷରେ ରାମଙ୍କ ମୁଣ୍ଡ କାଟି ଦେବାକୁ ତାଙ୍କୁ ଗୋଟାଏ ଯଥାର୍ଥ କାରଣ ମିଳିଯିବ । ରାମ ପର୍ଶୁରାମଙ୍କ ଆହ୍ୱାନ ଗ୍ରହଣ କରିଛନ୍ତି । ବିଶ୍ୱାମିତ୍ର ପ୍ରଦତ୍ତ ଶିକ୍ଷାର ପ୍ରୟୋଗରେ ସମସ୍ତ ଇନ୍ଦ୍ରିୟକୁ ଗୋଟିଏ ବିନ୍ଦୁରେ ଏକାଗ୍ର କରି ନିଜ ଭିତରେ ଶହେ ଗୁଣ ଶକ୍ତି ସୃଷ୍ଟି କରିଛନ୍ତି । ଅବଲୀଳା କ୍ରମେ ପର୍ଶୁରାମଙ୍କ ଠାରୁ ଧନୁଟି ଗ୍ରହଣ କରି ଗୁଣ ବାନ୍ଧି ଶର ଖଞ୍ଜି, ନିକ୍ଷେପ ପାଇଁ ପ୍ରସ୍ତୁତ ହୋଇଛନ୍ତି । ରାମଙ୍କ ଦ୍ୱାରା ଏହି କାର୍ଯ୍ୟ ଏପରି ଧୀର ସ୍ଥିର ଅବିଚଳିତ ଏବଂ ଅବଲୀଳା କ୍ରମେ କରାଯାଇଛି ଯେ ତାହା ଗୋଟିଏ କ୍ଷଣରେ ରାମଙ୍କ ପ୍ରତି ପର୍ଶୁରାମଙ୍କର ଧାରଣା ବଦଳାଇ ଦେଇଛି । ସେଇ ସନ୍ଧିକ୍ଷଣରେ ସେ ବୁଝି ଯାଇଛନ୍ତି ରାମ ଯେ କୌଣସି କ୍ଷତ୍ରୀୟ ସନ୍ତାନ ନୁହେଁ । ସେ ସ୍ୱୟ ବିଷ୍ଣୁଙ୍କ ଅବତାର । ରାମଙ୍କ ଅବତାରତ୍ୱର କାହାଣୀ ସେ ଜନମୁଖରେ ଶୁଣିଥିବେ । ସେ ମଧ ଶୁଣିଥିବେ ନାରଦଙ୍କ ଭବିଷ୍ୟତ ବାଣୀ ଯାହା ସେ ବାଲ୍ମୀକିଙ୍କୁ କହିଥିଲେ । ସେ ମଧ ଶୁଣିଥିବେ ଯଜ୍ଞ ରକ୍ଷା କରିବାକୁ ଯାଇ ରାମଙ୍କର ଅସୁର ସଂହାର । ଆଉ ମଧ ଶୁଣିଥିବେ ଅହଲ୍ୟା ଉଦ୍ଧାର ବୃତ୍ତାନ୍ତ । ମାତ୍ର ତାଙ୍କର କ୍ଷତ୍ରୀୟ-ଅସୂୟା ତାଙ୍କୁ ରାମଙ୍କ ଅବତାରତ୍ୱ ଗ୍ରହଣ କରିବାକୁ କୁଣ୍ଠିତ କରିଥିଲା । ବର୍ତ୍ତମାନ ଗୋଟିଏ କ୍ଷଣରେ ତାଙ୍କ ଆଖିରୁ ପରଳ ହଟିଗଲା । ସେ ଜାଣି ଗଲେ ରାମ ହିଁ ଅବତାର, ଯୁଗ ପୁରୁଷ, ଧର୍ମ ସଂସ୍ଥାପନା ପାଇଁ ତାଙ୍କର ଏ ଧରା ପୃଷ୍ଠରେ ଆବିର୍ଭାବ । ସେ ସାଧାରଣ ଯେ କେହି ଅର୍ବାଚିନ କ୍ଷତ୍ରୀୟ ଯୁବକ ନୁହନ୍ତି ।

ରାମ ମଧ ପର୍ଶୁରାମଙ୍କ ଗର୍ବ ଅହଙ୍କାର ଭାଙ୍ଗିବା ପାଇଁ ନିଷ୍ପତ୍ତି ନେଇ ସାରିଛନ୍ତି । ଏପରି ଅହଂକାରୀ, ଅବିଚାରୀ ବ୍ୟକ୍ତିକୁ ଉପଯୁକ୍ତ ଶିକ୍ଷା ଦେବାକୁ ହେବ । ଏହି ବିଚାରରେ ରାମ ଶର ନିକ୍ଷେପ କରି ପର୍ଶୁରାମଙ୍କ ଜୀବନ ତ ନେଇ ନାହାନ୍ତି, ତାଙ୍କର କଳା (ଶକ୍ତି ସାମର୍ଥ୍ୟ) ହରଣ କରି ନେଇଛନ୍ତି । ଶର ନିକ୍ଷେପ କରି କଳା ହରଣ ଏକ ପ୍ରତୀକ ମାତ୍ର । ସତ୍ୟ ହେଉଛି -- ହେ ବ୍ରାହ୍ମଣ ତୁମେ ଏ ପର୍ଯ୍ୟନ୍ତ ଅହଙ୍କାର, ଗର୍ବ ଆଉ ଅନାବଶ୍ୟକ ଅବିମୃଷ୍ୟ କ୍ରୋଧର ବଶବର୍ତ୍ତୀ ହୋଇ ଅସଂଯତ ଆଚରଣ କରି ଆସିଛ, ତୁମେ ତୁମର କୁଳ ଧର୍ମ ଭୁଲିଛ, ତୁମେ ବ୍ରାହ୍ମଣର ଧର୍ମ ଭୁଲିଛ । ତୁମେ ତପସୀ ହୋଇ, ତପସୀସୁଲଭ କର୍ମ ଭୁଲିଛ, ଯାହା କରିଛ ତାହା ଅବ୍ରାହ୍ମଣୀୟ କାର୍ଯ୍ୟ । ତୁମେ ଅଯଥା କ୍ରୋଧର ବଶବର୍ତ୍ତୀ ହୋଇ ନିଜର କ୍ଷୁଦ୍ର ସ୍ୱାର୍ଥ ସାଧନ ପାଇଁ ସମାଜର ଧର୍ମର ନିର୍ଣ୍ଣିତ ଲକ୍ଷ୍ମଣ ରେଖା ଡେଇଁଛ । ଏହା ଅନୁଚିତ କର୍ମ ।

ଏପରି ଏକ ଅପରାଧ କ୍ଷମଣୀୟ ହୋଇ ରହିଲେ ତାହା ସମାଜରେ ଅନ୍ୟମାନଙ୍କ ପାଇଁ ଏକ ଭୁଲ ଉଦାହରଣ ହେବ । ଅନ୍ୟ କେହି ଏହାକୁ ଅନୁସରଣ କରିବାକୁ ତଦ୍ୱାରା ହୁଏତ ନୈତିକ ସମର୍ଥନ ପାଇବ ଏବଂ ତାହାହିଁ ହେବ ସାମାଜିକ ସ୍ଖଳନର କାରଣ ଓ ଭିତ୍ତିଭୂମି । ତେଣୁ ହେ ତପସୀ ତୁମେ ଫେରିଯାଅ ତୁମର ସେଇ ବ୍ରାହ୍ମଣ ସୁଲଭ ଯାଗ, ଯଜ୍ଞ, ତପସ୍ୟାକୁ । ଆଜିଠାରୁ କ୍ଷତ୍ରୀୟ ହାତରେ ରହୁ ସମାଜକୁ ସୁରକ୍ଷା ଦେବାର ଦାୟୀତ୍ୱ । ଏହାହିଁ ପର୍ଶୁରାମ ଉପାଖ୍ୟାନର ବାର୍ତ୍ତା ।

# ବାଳୀ-ସୁଗ୍ରୀବ ଉପାଖ୍ୟାନ

ସୀତାଙ୍କୁ ରାବଣ ନେଇଯିବା ପରେ, ରାମ, ଲକ୍ଷ୍ମଣ ଗହନ ଅରଣ୍ୟରେ ଅସହାୟ ହୋଇ ଇତସ୍ତତଃ ଖୋଜି ହୋଇଛନ୍ତି । ମାତ୍ର ସୀତାଙ୍କୁ ଠାବ କରିବା ତାଙ୍କ ଶକ୍ତିରେ ବାହାରେ ଥିଲା । ସେମାନେ କବନ୍ଧକୁ ମାରି ତାକୁ ଅଭିଶପ୍ତ ଜୀବନରୁ ମୁକ୍ତି ଦେଇଛନ୍ତି ଓ କବନ୍ଧ ସୀତାଙ୍କୁ ଠାବ କରିବାରେ ସାହାଯ୍ୟ କରିଛି । ରାବଣ ଯେ ସୀତାଙ୍କୁ ହରଣ କରିନେଇଛି ତାହା ରାମ ଜଟାୟୁର ଶେଷ ନିଃଶ୍ୱାସ ତ୍ୟାଗ ପୂର୍ବରୁ ତାଠାରୁ ଶୁଣି ସାରିଛନ୍ତି । ଜଟାୟୁ ଆହୁରି ମଧ୍ୟ ରାମଙ୍କୁ ଆଶ୍ୱାସନା ଦେଇ ଏକ ଭବିଷ୍ୟତ ବାଣୀ କରିଛି: "ରାବଣ ସୀତାଙ୍କୁ ଅପହରଣ କରିନେବା ସମୟଟା ଥିଲା ଏକ ଅଶୁଭ ମୁହୂର୍ତ୍ତ । ତାହା ଥିଲା 'ବିନ୍ଦ' ବେଳା । ଏ ବେଳାର ବିଶେଷତ୍ୱ ଏହି ଯେ ଏହି ବେଳାରେ ଯଦି କେହି କିଛି ହଜାଏ, ତାହା ତା' ପାଖକୁ ଖୁବ୍ ଶୀଘ୍ର ନିଶ୍ଚୟ ଫେରି ଆସେ । ଆଉ ଚୋରାଇ ଥିବା ବ୍ୟକ୍ତିର ସର୍ବନାଶ ଘଟେ ।" ଏହି ଭବିଷ୍ୟତ ବାଣୀ ରାମଙ୍କୁ ସେଇ ଅସହାୟ ଅବସ୍ଥାରେ ଅମୃତତୁଲ୍ୟ ସାହାଯ୍ୟ କରିଥିବ ।

କବନ୍ଧର ପରାମର୍ଶ ଅନୁଯାୟୀ ସେ ସୁଗ୍ରୀବ ଓ ତା'ର ମିତ୍ରଙ୍କୁ ଋଷ୍ୟମୂକ ପାହାଡରେ ଭେଟିବା ପାଇଁ ଆଗେଇଛନ୍ତି । ସୁଗ୍ରୀବ ଦୂରରୁ ଏ ଦୁଇ ଭାଇଙ୍କୁ ଦେଖିଛି । ମନକୁ ତା'ର ପାପ ଛୁଇଁଛି । ବାଳୀର ଗୁପ୍ତଚର ବୋଲି ସନ୍ଦେହ କରିଛି ଓ ହନୁମାନଙ୍କୁ ସତ୍ୟାସତ୍ୟ ବୁଝିବା ପାଇଁ ପଠାଇଛି ।

ଛଦ୍ମବେଶରେ ଯାଇ ହନୁମାନ ରାମଲକ୍ଷ୍ମଣଙ୍କୁ ସାକ୍ଷାତ କରିଛନ୍ତି । ସେ ଶୁଦ୍ଧ ସଂସ୍କୃତରେ ରାମଙ୍କୁ ଅଭିବାଦନ କରିଛନ୍ତି । ଯଥା ସମ୍ଭବ ସଚ୍ଚ ବାକ୍ୟରେ ନିଜର ଉଦ୍ଦେଶ୍ୟ ତଥା ସୁଗ୍ରୀବ ବ୍ୟାପାରରେ ସୂଚନା ଦେଇଛନ୍ତି । ରାମଙ୍କ ପ୍ରତି ପ୍ରଥମ ଦେଖାରେ ହନୁମାନ ଆକର୍ଷିତ ହେଲେ । ତାଙ୍କର ନିର୍ମଳ ହୃଦୟରେ ରାମଙ୍କ ରୂପ ହିଁ ଲାଖି ରହିଗଲା । ସେ ଯଦିଓ ବେଶ ବଦଳାଇ ରାମଙ୍କୁ ଭେଟିବାକୁ ଆସିଥିଲେ ତଥାପି ମଧ୍ୟ ରାମଙ୍କ ସହିତ କ୍ଷଣକର କଥାବାର୍ତ୍ତାରେ ସେ ଏପରି ମୁଗ୍ଧ ହୋଇଗଲେ ଯେ ଆଉ କପଟାଚାର କରିବା ନୋହିଲା । ସେ ନିଜର ପରିଚୟ ଦେଲେ ଓ ଆସିବାର ଉଦ୍ଦେଶ୍ୟ କହି ଦୁଇଭାଇଙ୍କୁ ସୁଗ୍ରୀବଙ୍କ ପାଖକୁ ନେଇଗଲେ ।

ରାମଙ୍କ ବ୍ୟକ୍ତିତ୍ୱ ଯେପରି ହନୁମାନଙ୍କୁ କ୍ଷଣକରେ ପ୍ରଭାବିତ କରିପକାଇଲା ହନୁମାନଙ୍କ ନିଷ୍ଠା ମଧ ଗୋଟିଏ କ୍ଷଣରେ ରାମଙ୍କୁ ମୁଗ୍ଧ କରିପକାଇଲା । ମାତ୍ର ଗୋଟିଏ ମୁହୂର୍ତ୍ତରେ ପରସ୍ପର ଆପଣାର ହୋଇଗଲେ ।

ରାମ ସୁଗ୍ରୀବ ସହ ମିତ୍ରତା ପାଇଁ ସ୍ଥିର କଲେ । ହନୁମାନ ଅଗ୍ନି ପ୍ରଜ୍ଜ୍ୱଳିତ କଲେ ଓ ଅଗ୍ନିକୁ ସାକ୍ଷୀ ରଖି ରାମ ଓ ସୁଗ୍ରୀବ ପରସ୍ପରକୁ ମିତ୍ର ଭାବେ ସ୍ୱୀକାର କଲେ, ଅଙ୍ଗୀକାର ବଦ୍ଧ ହେଲେ ।

ଏ ବନ୍ଧୁତ୍ୱ ପରସ୍ପରର ସ୍ୱାର୍ଥ ପାଇଁ ଏକ ବୁଝାମଣା । ସୁଗ୍ରୀବ ଚାହୁଁଥିଲେ କାହାର ସାହାଯ୍ୟ, ନିଜର ଭାଇକୁ ହରାଇ ରାଜ୍ୟ ଓ ପତ୍ନୀକୁ ଫେରି ପାଇବା ପାଇଁ । ରାମ ଚାହୁଁଥିଲେ ସୀତାଙ୍କୁ ଠାବ ଓ ଉଦ୍ଧାର ପାଇଁ ସମର୍ଥ ମିତ୍ର ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି -- ଅପରିଚିତ ଶତ୍ରୁ ସହ ଦ୍ୱନ୍ଦ କରିବାକୁ ଯିବାବେଳେ ମିତ୍ର ଲୋଡାପଡେ ଏହା ସ୍ୱୀକୃତ । ମାତ୍ର ମିତ୍ରର ସାମର୍ଥ୍ୟ ଉପରେ ଅନେକ କିଛି ନିର୍ଭର କରିବ । ତେଣୁ ସମସ୍ତେ ବଳବାନ, ସମର୍ଥ, ପାରିବା ମିତ୍ର ଖୋଜି ଆପଣା ପଟେ ରଖି ଦ୍ୱନ୍ଦକୁ ବାହାରନ୍ତି ।

ରାବଣ ସହ ଦ୍ୱନ୍ଦରେ ଜିଣିବା ପାଇଁ ସୁଗ୍ରୀବ ଅପେକ୍ଷା ବାଳୀ ଅଧିକ ସମର୍ଥ ମିତ୍ର ହୋଇଥାନ୍ତା । ପୂର୍ବରୁ ରାବଣ ବାଳୀ ସହ ଯୁଦ୍ଧରେ ପରାସ୍ତ ହୋଇଛି ଓ ବାଧ ହୋଇ ବାଳୀ ସହ ମିତ୍ରତା କରିଛି । ବାଳୀ ତା'ର ଶେଷ ନିଃଶ୍ୱାସ ତ୍ୟାଗ ସମୟରେ ଏଇ ପ୍ରଶ୍ନ ରାମଙ୍କୁ ମଧ ପଚାରିଛି: ଯଦି ରାବଣ ବିରୁଦ୍ଧରେ ସାହାଯ୍ୟ ଦରକାର ଥିଲା ତାହା ତ ମୁଁ ଦେଇପାରିଥାନ୍ତି । ଆପଣଙ୍କ ପତ୍ନୀକୁ ରାବଣଠାରୁ ଉଦ୍ଧାର କରିବା ପାଇଁ ମୁଁ ସୁଗ୍ରୀବ ଅପେକ୍ଷା ଅଧିକ ସମର୍ଥ । ତେବେ ମୋତେ ଏପରି କପଟ ଭାବେ ମାରିବାର କାରଣ କ'ଣ ?

ରାମଙ୍କ ବାଳୀ ବଧ ପାଇଁ ଦେଖାଇଥିବା କାରଣ କେତେଦୂର ଯଥାର୍ଥ ତା ପରେ ବିଚାର କରିବା । ମାତ୍ର ରାମ ବାଳୀର ସାହାଯ୍ୟ ନନେବାର କାରଣ ରାମଙ୍କ ଦୃଷ୍ଟିରୁ ମଧ ଯୁକ୍ତିଯୁକ୍ତ ।

ଯଦି ସେ ସୁଗ୍ରୀବ ପାଖକୁ ନଯାଇ ରାବଣଠାରୁ ସୀତାଙ୍କୁ ଉଦ୍ଧାର ପାଇଁ ବାଳୀର ସାହାଯ୍ୟ ମାଗିଥାନ୍ତେ ତେବେ ବାଳୀ ଏ ପ୍ରସ୍ତାବ କିପରି ଗ୍ରହଣ କରିଥାନ୍ତା ? ରାମଙ୍କଠାରୁ ମିତ୍ର ହିସାବରେ ତା'ର ପାଇବାର କିଛି ନାହିଁ । ରାମଙ୍କୁ ସେ ହେୟ ଦୃଷ୍ଟିରେ ଦେଖିବାର ଆଶଙ୍କା ବେଶୀ । ଜଣେ ରାଜପୁତ୍ର ନିଜ ରାଜ୍ୟରୁ ବିତାଡିତ । ନିଜର ସ୍ତ୍ରୀକୁ ମଧ ନିଜେ ନିରାପତ୍ତା ଦେଇ ପାରୁନାହିଁ । ଏପରି ବ୍ୟକ୍ତିଙ୍କୁ ସାହାଯ୍ୟ କରିବାକୁ ଯାଇ, ରାବଣ ପରି ମିତ୍ର ତଥା ପରାକ୍ରମୀ ସହିତ ଦ୍ୱନ୍ଦରେ ତା'ର ଲାଭ କିଛି ନାହିଁ ତେଣୁ ଏପରି ଏକ ରାଜ୍ୟହୀନ, ଶକ୍ତିହୀନ, ବନ୍ଧୁହୀନ ବ୍ୟକ୍ତିର ସାହାଯ୍ୟ ପ୍ରାର୍ଥନାକୁ ସେ ଅଣଦେଖା କରିବାକୁ ନିଷ୍ପତ୍ତି ନେବା ବେଶୀ ସ୍ୱାଭାବିକ ।

ଦ୍ୱିତୀୟରେ, ଧରାଯାଉ ବାଳୀ କୌଣସି କାରଣରୁ ରାବଣଠାରୁ ସୀତାଙ୍କୁ ଉଦ୍ଧାର କରିବା

ପାଇଁ ରାଜି ହୋଇଥାନ୍ତା ଓ ହୁଏତ ଉଦ୍ଧାର କରିଥାଆନ୍ତା (ଏବଂ ସେ ସାମର୍ଥ୍ୟ ତା'ର ଥିଲା) ମାତ୍ର ସୀତାଙ୍କୁ ସେ ଯେ ରାମଙ୍କୁ ଫେରାଇ ଦେଇଥାନ୍ତା ସେ ଗ୍ୟାରେଣ୍ଟି ନାହିଁ। ବାଳୀର ଚାରିତ୍ରିକ ଦୋଷ ଅଛି। ସାନ ଭାଇର ପତ୍ନୀକୁ ସେ ରଖିଛି। ତେଣୁ ସୁନ୍ଦରୀ ସୀତାଙ୍କୁ ସେ ରାବଣଠାରୁ ଆଣି ନିଜେ ରଖିବାକୁ ନିଷ୍ପତ୍ତି ନେବାର ଆଶଙ୍କା ରାମ କରିବା ଅସାଭାବିକ ନୁହେଁ।

ସେ କ୍ଷେତ୍ରରେ ରାମ ମହରଗରୁ ଯାଇ କାନ୍ତାରରେ ପଡିବା ପରି ହୋଇଥାଆନ୍ତା। ତା'ଛଡ଼ା ବାଳୀ ପାଖରୁ ରାମ ସାହାଯ୍ୟ ନେବା ଭିକ୍ଷା ମାଗିବା ସଦୃଶ ହୋଇଥାଆନ୍ତା। ବାଳୀକୁ ଦେବା ପାଇଁ ତାଙ୍କ ପାଖରେ କିଛି ନଥିଲା ବା ବାଳୀ ସହିତ ସମାସ୍କନ୍ଧ ବନ୍ଧୁତ୍ୱ ପାଇଁ ସେ ସମୟ ତାଙ୍କ ପାଇଁ ଅନୁକୂଳ ନଥିଲା। ବାଳୀ ତାଙ୍କ ପ୍ରାର୍ଥନା ପୂରଣ ପାଇଁ ରାଜି ହୋଇଥିଲେ ମଧ୍ୟ ତାହା ରାମଙ୍କ ପୌରୁଷ ପ୍ରତି ଗୋଟାଏ ବିରାଟ ପ୍ରଶ୍ନବାଚୀ ହୋଇଥାଆନ୍ତା। ତାଙ୍କର ସାଭିମାନ ଅପମାନିତ ହୋଇଥାଆନ୍ତା। ରାମ ସର୍ବଦା ବଂଶ ପରମ୍ପରା, ସାଭିମାନ, ଶକ୍ତି ସାମର୍ଥ୍ୟ ଉପରେ ଜୋର ଦେଇ ଆସିଛନ୍ତି। କାହାରିଠାରୁ ଭିକ୍ଷା ଗ୍ରହଣ କରିବା, ତାହା ଯେକୌଣସି କାରଣ ପାଇଁ ହୋଇଥାଉ ପଛେ, ତାଙ୍କ ପାଇଁ ଜୀବନ ଚାଲିଯିବା ପରି ହୋଇଥାଆନ୍ତା। ସେ ଦୃଷ୍ଟିରୁ ବାଳୀ ପାଖକୁ ନଯିବା ଅତ୍ୟନ୍ତ ଯୁକ୍ତିଯୁକ୍ତ ସିଦ୍ଧାନ୍ତ।

ସୁଗ୍ରୀବ କ୍ଷେତ୍ରରେ ରାମଙ୍କ ବିଚାର ଓ ସିଦ୍ଧାନ୍ତ ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ। ପ୍ରଥମତଃ ହନୁମାନ ସହିତ ପ୍ରଥମ ଦେଖାରୁ ସେ ମୁଗ୍ଧ ଓ ପ୍ରଭାବିତ ହୋଇଛନ୍ତି। ହନୁମାନ, ଜ୍ଞାନୀ, ଗୁଣି, ବେଦଜ୍ଞ; ଶୁଦ୍ଧ ସଂସ୍କୃତରେ ମାପଚୁପ କଥାବାର୍ତ୍ତା ତାଙ୍କୁ ମୁଗ୍ଧ କରିଛି। ହନୁମାନ ନିଜେ ଅମାପ ବଳଶାଳୀ ହୋଇ ମଧ୍ୟ ସୁଗ୍ରୀବ ପାଖରେ ତା'ର ସହକର୍ମୀ ବା ସହକାରୀ ବନ୍ଧୁ ହିସାବରେ ରହି ତାଙ୍କୁ ସାହାଯ୍ୟ କରି ଆସୁଛନ୍ତି।

ସୁଗ୍ରୀବ ରାଜ୍ୟ ହରାଇ, ବନବାସୀ ହୋଇ କଷ୍ଟରେ ଜୀବନ ବିତାଉଥିବା ସମୟରେ ତା' ପାଖରେ ହନୁମାନ ଅବିଚଳିତ ଠିଆ ହୋଇ ରହିଛନ୍ତି। ସୁଗ୍ରୀବକୁ ତା'ର ଅସୁବିଧା ସମୟରେ ହେୟ ଜ୍ଞାନ କରି ନାହାନ୍ତି। ଏହି ମହନୀୟତା ରାମଙ୍କୁ ମୁଗ୍ଧ କରିଛି ଓ ଏପରି ନିର୍ଭରଯୋଗ୍ୟ ଉଦାର ଚରିତ୍ର ଯାହାକୁ ମିତ୍ର ରୂପେ ଗ୍ରହଣ କରିଛି, ତା'ପ୍ରତି (ସୁଗ୍ରୀବ) ସାଭାବିକ ରାମଙ୍କ ମନରେ ଅନୁକୂଳ ମନୋଭାବ ସୃଷ୍ଟି ହୋଇଛି।

ତା'ପରେ ସୁଗ୍ରୀବ ଓ ରାମଙ୍କ ଅବସ୍ଥା ଏକଦୃଷ୍ଟିରୁ ସମାନ। ଦୁଇଜଣଯାକ ରାଜ୍ୟରୁ ବିତାଡିତ। ଦୁଇଜଣଙ୍କ ପତ୍ନୀ ଅପହୃତା। ଏ କ୍ଷେତ୍ରରେ ରାମ ଯଦି ସୁଗ୍ରୀବକୁ ସାହାଯ୍ୟ କରନ୍ତି, ତେବେ ସୁଗ୍ରୀବଠାରୁ ତାଙ୍କର ସାହାଯ୍ୟ ନେବା ସୁଗ୍ରୀବର ଋଣ ଶୁଝିବା ପରି ହେବ। ସୁଗ୍ରୀବଠାରୁ ସେ ସାହାଯ୍ୟ ଦାବୀ ମଧ୍ୟ କରିପାରିବେ। ତାଙ୍କର ପୌରୁଷ, ସାଭିମାନ ଏଥିରେ ଅପମାନିତ ହେବ ନାହିଁ। ତେଣୁ ବାଳୀ ଅପେକ୍ଷା ସୁଗ୍ରୀବ ଅଧିକ ନିର୍ଭରଯୋଗ୍ୟ ମିତ୍ର ଓ ସାହାଯ୍ୟକାରୀ ବୋଲି ସେ ମନେକରିଛନ୍ତି। ତେବେ ବାଳୀକୁ

ଯେଉଁପରି ଭାବରେ ସେ ମାରିଛନ୍ତି ତାହାହିଁ ଅନେକ ପ୍ରଶ୍ନ ସୃଷ୍ଟି କରିଛି ।

ବାଳୀ ରାମଙ୍କ ଶରାଘାତରେ ଯେତେବେଳେ ପଡି ରହି ମୃତ୍ୟୁକୁ ଅପେକ୍ଷା କରୁଛି, ସେ ରାମଙ୍କୁ ଭର୍ତ୍ସନା କରି କହିଛି, 'ମୁଁ ଅନ୍ୟ ସହିତ ଯୁଦ୍ଧ କରୁଥିବା ସମୟରେ ତୁମେ ମୋତେ ଲୁଚି ରହି ଶର ନିକ୍ଷେପ କରି ମାରିବା କେଉଁ ଧର୍ମରେ ସ୍ୱୀକୃତ ? ଉପଯୁକ୍ତ କ୍ଷତ୍ରୀୟ ଓ ରାଜୋଚିତ ଗୁଣ ତୁମର ଥିବ ବୋଲି ମୁଁ ବିଶ୍ୱାସ କରି ତାରାର ବାରଣ ସତ୍ତ୍ୱେ ସୁଗ୍ରୀବର ଆହ୍ୱାନ ଗ୍ରହଣ କରି ଯୁଦ୍ଧକୁ ଆସିଲି । ମାତ୍ର ଛଳନା ଯୁଦ୍ଧରେ ମୋତେ ମାରି କେଉଁ ଯଶ ତୁମେ ଅର୍ଜନ କଲ ? ମୋର ତୁମ ସହିତ କୌଣସି ଶତ୍ରୁତା ନଥିଲା । ମୁଁ କେବେ ତୁମ ରାଜ୍ୟ ଉପରେ ଆକ୍ରମଣ କରିନାହିଁ । ତୁମ ରାଜ୍ୟ ବା ପ୍ରଜାଙ୍କ ପ୍ରତି କଦାଚିତ ଶତ୍ରୁ ଆଚରଣ କରିନାହିଁ । ତେବେ ତୁମେ ମୋ ପ୍ରତି କେଉଁ ନ୍ୟାୟରେ ଶତ୍ରୁ ଆଚରଣ କଲ ? କୌଣସି ଧର୍ମଜ୍ଞ, ଉପଯୁକ୍ତ ଶିକ୍ଷାପ୍ରାପ୍ତ କ୍ଷତ୍ରୀୟ ଏପରି କୁକର୍ମ କରିବ ନାହିଁ । ସୁଗ୍ରୀବ ସହିତ ମିତ୍ରତାର ଆଳରେ ମୋତେ ଛଳନା କରି ମାରିଲ ବୋଲି କହିପାର । ମାତ୍ର ତୁମ ମିତ୍ରତା ସହିତ ମୁଁ ତ କଦାପି ଦ୍ୱନ୍ଦ କରିନାହିଁ । ତେବେ ମୋ ପ୍ରତି ଏ ଆକ୍ରମଣ କାହିଁକି ? ହଁ ମୋ ସହିତ ଶକ୍ତି ପରୀକ୍ଷା କରିବାକୁ ଚାହିଁଥିଲେ ସିଧାସଳଖ ମୋ ସହିତ ସମ୍ମୁଖ ଯୁଦ୍ଧକୁ ଆସି ପାରିଥାଆନ୍ତ । ଯେଉଁଥିପାଇଁ ସୁଗ୍ରୀବର ମିତ୍ରତା ଖୋଜି ଏପରି ଅପକର୍ମ କଲ, ତାହାତ ମୋତେ କହିଥିଲେ ମୁଁ ରାବଣକୁ ଅକ୍ଳେଶରେ ଆଣି ତୁମ ପାଖରେ ହାଜର କରାଇଥାଆନ୍ତି । ମାତ୍ର ଏପରି ଛଳନା, ଚକ୍ରାନ୍ତର ଆଶ୍ରୟ ତୁମ ପରି ଉଚ୍ଚକୂଳ ଜାତ କ୍ଷତ୍ରୀୟ ପକ୍ଷରେ ଅଶୋଭନୀୟ ।'

ବାଳୀର ଏହି ଭର୍ତ୍ସନାର ଯଥାର୍ଥତା ତ ନିଶ୍ଚୟ ରହିଛି । ତା'ର ଉତ୍ତରରେ ରାମ ଯେଉଁ ସଫେଇ ଦେଇଛନ୍ତି ତାହା କେତେଦୂର ଯଥାର୍ଥ, ଯୁକ୍ତିଯୁକ୍ତ ତାହାହିଁ ଆମେ ବିଚାର କରିବା । ଲୁଚି ରହି ମାରିବାର ଯେଉଁ ଅକ୍ଷତ୍ରୀୟ, ଅପୌରୁଷଚିତ ଆଚରଣର ଆରୋପ ବାଳୀ ଲଗାଇଛି ତା'ର ଉତ୍ତରରେ ରାମ କହିଛନ୍ତି ଯେ: 'ଏ ସମଗ୍ର ଅଞ୍ଚଳ ମୋର ପୂର୍ବଜ ଇକ୍ଷ୍ୱାକୁଙ୍କ ଦ୍ୱାରା ଅଧିକୃତ ଏବଂ ତାହା ଆମର ପୁରୁଷ ପୁରୁଷ ଧରି ବଂଶଗତ ସମ୍ପତ୍ତି ଏବଂ ଭରତଙ୍କ ନିର୍ଦ୍ଦେଶରେ ମୁଁ ସମସ୍ତ ଅଞ୍ଚଳ ବିଚରଣ କରି ତାଙ୍କୁ ସୁଶାସନରେ ସାହାଯ୍ୟ କରୁଛି ।' ଏହାଠାରୁ ବଳି ଉଦ୍ଭଟ ଯୁକ୍ତି ଓ ବାହାନା ଆଉ କିଛି ହୋଇ ନପାରେ । ମନୁଙ୍କ ପୁତ୍ର ଇକ୍ଷ୍ୱାକୁଙ୍କ ବଂଶରେ ଅନେକ ପୁରୁଷ ପରେ ରାମ ଜନ୍ମ । ପ୍ରାୟ ୬୫ ପିଢି ପରେ । କେଉଁଠାରେ ଉଲ୍ଲେଖ ମଧ ନାହିଁ ଯେ ସମଗ୍ର ଭାରତ ବର୍ଷ ଇକ୍ଷ୍ୱାକୁ ବଂଶ ବା ଅଯୋଧ୍ୟାର ଶାସନାଧୀନ ଥିଲା । ସମଗ୍ର ଜନସ୍ଥାନ ରାବଣର ଉପନିବେଶ ଯାହାକି ଦକ୍ଷିଣରେ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ । ତା ମଝିରେ ଖଣ୍ଡିଏ ଖଣ୍ଡିଏ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ । ଯେପରି କିଷ୍କିନ୍ଧା । କିଷ୍କନ୍ଧା ପ୍ରାଚୁର୍ଯ୍ୟ ଓ ବୀରତ୍ୱରେ ଅଯୋଧ୍ୟାଠାରୁ କମ୍ ନଥିଲା । ସେମାନଙ୍କର ଚାଲିଚଳଣ ପରମ୍ପରା ଅଯୋଧ୍ୟାବାସୀଙ୍କ ଠାରୁ ଭିନ୍ନ ନିଶ୍ଚୟ ଥିଲା । ମାତ୍ର ସେହି ଭିନ୍ନତା ହେତୁ କାହାକୁ ମୃତ୍ୟୁ ଦଣ୍ଡ ଦେବାର ଅଧିକାର ରାମଙ୍କର କେଉଁଠୁ ଆସିଲା ? ଇକ୍ଷ୍ୱାକୁ ବଂଶର ଏ ରାଜ୍ୟ ଏବଂ ଭରତ ଏହାକୁ ଶାସନ କରୁଛନ୍ତି ଓ ତାଙ୍କ ନିର୍ଦ୍ଦେଶରେ ସେ ଧର୍ମ ରକ୍ଷା ପାଇଁ,

ସୁଶାସନ ପାଇଁ ଏ ସମସ୍ତ ଅଞ୍ଚଳ ବୁଲୁଛନ୍ତି । ଏହାଠାରୁ ବଳି ପ୍ରବଞ୍ଚନା କିଛି ନାହିଁ ।

ଦଶରଥଙ୍କ ପାଇଁ ତାହାଙ୍କୁ ବନବାସ କରିବାକୁ ପଡିଛି ଏବଂ ନିରୁପାୟ ହୋଇ ପିତୃସତ୍ୟ ରକ୍ଷା ପାଇଁ ସେ ଦେଶାନ୍ତର ଯାଇଛନ୍ତି । ଏବଂ ନିଜର ସ୍ତ୍ରୀ ଅପହୃତା । ଯେ କୌଣସି କାରଣରୁ ହେଉ ପଛେ ଆପଣା ସ୍ତ୍ରୀ ଅପହରଣ ସେ ନିରୋଧ କରିପାରିନାହାନ୍ତି । ସ୍ତ୍ରୀକୁ ଫେରି ପାଇବା ପାଇଁ ତାଙ୍କର ସାହାଯ୍ୟ ଦରକାର । ସେ ସାହାଯ୍ୟ ସେ ସୁଗ୍ରୀବଙ୍କଠାରୁ ପାଇବାକୁ ଆଶା କରି ପ୍ରତିବନ୍ଦଳରେ ବାଳୀକୁ ବଧ କରିଛନ୍ତି । ତାହା ପୁଣି ବାଳୀର ଅଗୋଚରରେ ଲୁଚି ଲୁଚି । କିଷ୍କିନ୍ଧା ଇକ୍ଷ୍ୱାକୁ ବଂଶର କରଦ ରାଜ୍ୟ ଓ ଭରତଙ୍କ ଶାସନାଧୀନ ଏହାର କୌଣସି ସତ୍ୟତା ବା ଯଥାର୍ଥତା ନାହିଁ । ନିଜର ଅନୁଚିତ କର୍ମକୁ ଧାର୍ମିକ ଓ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ ଏହା ଏକ ଅସଫଳ ପ୍ରୟାସ ।

ତାପର ରାଜାମାନେ ଲୁଚି ଲୁଚି ମୃଗୟା କରିବା ପରି ସେ ବାଳୀର ବଧକୁ ତୁଳନା କରିଛନ୍ତି । ଯେହେତୁ ବାଳୀର ଆଚରଣ (ସୁଗ୍ରୀବକୁ ବିତାଡିତ କରି ତା'ର ସ୍ତ୍ରୀକୁ ନିଜେ ରଖିବା) ପଶୁତୁଲ୍ୟ ତେଣୁ ସେ ବାଳୀକୁ ଲୁଚି ଲୁଚି ମାରିବାରେ କିଛି ଅଧର୍ମ କରି ନାହାନ୍ତି । ବାଳୀ ସହିତ ସମ୍ମୁଖ ସମରରେ ସେ ହୁଏତ ହାରିଯିବେ, ସେଥିପାଇଁ ଏ ଲୁଚାଛପା ଯୁଦ୍ଧ । ତାହା ସ୍ୱୀକର କରିବାକୁ ତାଙ୍କ ପୌରୁଷକୁ ବାଧୁଛି ତେଣୁ ଏ ପଶୁ ସହିତ ତୁଳନାର ବାହାନା ସେ ହୁଏତ କରିଛନ୍ତି ।

ମାତ୍ର ସତରେ କ'ଣ ବାଳୀର ଆଚରଣ ପଶୁତୁଲ୍ୟ ? ସେ ଏକ ସମୃଦ୍ଧ ଭୂଖଣ୍ଡର ନୃପତି । ତା'ର ରାଜ୍ୟକୁ ସେ ସୁଚାରୁ ରୂପେ ଶାସନ କରୁଛି । ସେ ଧର୍ମଜ୍ଞ, ଶାସ୍ତ୍ରଜ୍ଞ । ପୂଜାପାଠ ଏ ସବୁରେ ତା'ର ତ୍ରୁଟି ନାହିଁ । ସୁଗ୍ରୀବ ସହ ତା'ର ବାଦ । ହୁଏତ ଏହା ଏକ ଭୁଲ ବୁଝାମଣା । ମାତ୍ର ବାଳୀକୁ ସେଇ ଗୁମ୍ଫା ମଧ୍ୟରେ ଅନେକ ଅପେକ୍ଷା ପରେ ଛାଡି ଦେଇ ସୁଗ୍ରୀବ ଆସି ରାଜ୍ୟ ଶାସନ ଭାର ନେବା ପରେ ହିଁ ଏହି ଭୁଲ ବୁଝାମଣାର ସୃଷ୍ଟି । ଏହି ଭୁଲ ବୁଝାମଣା ପାଇଁ ବାଳୀକୁ ସମସ୍ତ ଦୋଷ ଦେବା ଆଦୌ ଯଥାର୍ଥ ନୁହେଁ ।

ପ୍ରଥମେ, କେବଳ ରକ୍ତ ଧାର ଗୁମ୍ଫା ମଧ୍ୟରୁ ଆସୁଥିବାର ଦେଖି ବାଳୀ ମରିଗଲା ବୋଲି ସୁଗ୍ରୀବ ମନେକରିଛି; ମାତ୍ର ଏତେ ବଡ ସିଦ୍ଧାନ୍ତ ପାଇଁ ଏପରି ଏକ ଦୁର୍ବଳ ସଙ୍କେତ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବା ନିଶ୍ଚିତ ଏକ ଭ୍ରାନ୍ତ ନିର୍ଣ୍ଣୟ । ରକ୍ତ ଦେଖି ବାଳୀର ରକ୍ତ ବୋଲି କାହିଁକି ମନେକଲା, ସେ ରକ୍ତ ମାୟାବୀ ରାକ୍ଷସର ବୋଲି କାହିଁକି ସୁଗ୍ରୀବ ମନେ କଲା ନାହିଁ ? ସେ ଯଦି ନିଜେ ସେଠାରେ ଅପେକ୍ଷା କରି ନପାରିଲା, ସେଠାରେ ଅଙ୍ଗଦ ବା ତା'ପରି ନିଜର କାହାକୁ ଛଗାଇ ପାରିଥାଆନ୍ତା ।

ଦ୍ୱିତୀୟ, କିଷ୍କିନ୍ଧା ସିଂହାସନରେ ବସିବାକୁ ଯିବା ଯଦି ରାଜ୍ୟର ଶାସନ ଦୃଷ୍ଟିରୁ ଅପରିହାର୍ଯ୍ୟ ଥିଲା, ତେବେ ସେ କ୍ଷେତ୍ରରେ ପାତ୍ରମନ୍ତ୍ରୀ ତଥା ଅନ୍ୟାନ୍ୟ ଗୁରୁଜନ ଶୁଭାକାଂକ୍ଷୀଙ୍କର ଏକ ସଭା କରାଇ ସେମାନଙ୍କ ପରାମର୍ଶ ଅନୁସାରେ ରାଜ୍ୟ ଭାର ସମ୍ଭାଳି ଥାଆନ୍ତା । ସେ କ୍ଷେତ୍ରରେ ବାଳୀ ଫେରି ଆସିବା ପରେ ସେମାନେ ଏହା ପରିଷଦର ନିଷ୍ପତ୍ତି ଓ ସେମାନଙ୍କ ଅନୁରୋଧରେ

ରାଜ୍ୟର ସାମୂହିକ ସ୍ୱାର୍ଥ ଦୃଷ୍ଟିରୁ ସୁଗ୍ରୀବ ରାଜ୍ୟ ସିଂହାସନ ସମ୍ଭାଳିଛି ବୋଲି ବାଳୀକୁ ବୁଝାଇ ଥାଆନ୍ତେ। ସେତେବେଳେ ଯଦି ବାଳୀ ତଥାପି ବୁଝି ନଥାଆନ୍ତା ଓ ସୁଗ୍ରୀବକୁ ଶତ୍ରୁ ବୋଲି ବିଚାର କରିଥାନ୍ତା, ତେବେ ଆମେ ବାଳୀକୁ ଦୋଷ ଦେଇ ପାରନ୍ତେ।

ତୃତୀୟରେ, ବାଳୀର ପତ୍ନୀ ତାରା। ସୁଷେଣ କନ୍ୟା। ସେ ଅତ୍ୟନ୍ତ ବୁଦ୍ଧିମତୀ। ସର୍ବଦା ଉପଯୁକ୍ତ ପରାମର୍ଶ ଦିଅନ୍ତି। ତାଙ୍କୁ ଓ ଅଙ୍ଗଦଙ୍କୁ ପରିଷଦ ସହିତ ସାକ୍ଷୀ ରଖି ସେ ରାଜ୍ୟ ଭାର ନେଇ ପାରିଥାନ୍ତେ। ଏବଂ ସେମାନେ ବାଳୀର ପ୍ରତ୍ୟାଗମନରେ ବାଳୀକୁ ବୁଝାଇ ପାରିଥାନ୍ତେ ଓ ବାଳୀ କ୍ରୁଧ ହୋଇ ନଥାନ୍ତା। ମାତ୍ର ସୁଗ୍ରୀବ ତା କରି ନାହିଁ। ରାଜଗାଦିରେ ବସିବା ପାଇଁ କାହା ସହିତ ପରାମର୍ଶ କରି ନାହିଁ।

ଚତୁର୍ଥରେ, ଯଦି ସୁଗ୍ରୀବର ରାଜଗାଦି ପ୍ରତି ଆସକ୍ତି ନଥିଲା, କେବଳ ଦାୟରେ ପଡି ରାଜଗାଦି ସମ୍ଭାଳିଲା ତେବେ, ବାଳୀର ରିଜେଣ୍ଟ (ପ୍ରତିନିଧି) ହିସାବରେ (ଭରତ ଯେପରି କଲେ) ସେ ରାଜ୍ୟ ଭାର ସମ୍ଭାଳି ଶାସନ କରିଥାନ୍ତା ଓ କିଛି ବୀର ବାନରଙ୍କୁ ଗୁମ୍ଫା ଭିତରକୁ ପଠାଇ ବାଳୀକୁ ଖୋଜିବାକୁ ପ୍ରଚେଷ୍ଟା କରିଥାଆନ୍ତା।

ଏପରି କିଛି ଘଟି ନାହିଁ। ତେବେ ବାଳୀକୁ ଗୁମ୍ଫା ଭିତରେ ଛାଡି ପଥର ମଡେଇ ଦେଇ ଆସି କିଷ୍କିନ୍ଧାର ରାଜଗାଦୀ ଅଧିକାର ସମ୍ପୂର୍ଣ୍ଣ ସ୍ୱାର୍ଥରହିତ ବୋଲି କିପରି କହିବା ? ସୁଗ୍ରୀବ ରାଜଗାଦି ଲୋଭରୁ ଏପରି କରିନାହିଁ, କେବଳ ରାଜ୍ୟର ଭଲ ପାଇଁ ଏ ନିଷ୍ପତ୍ତି ନେଇଛି ଏ ଯୁକ୍ତି ଅତ୍ୟନ୍ତ ଦୁର୍ବଳ ମନେହୁଏ।

ତେଣୁ ବାଳୀ ଫେରି ଆସି ସୁଗ୍ରୀବକୁ ବିଶ୍ୱାସଘାତକ ମନେକରି ତା'ଉପରେ କ୍ରୋଧିତ ହେବା କଦାପି ଅଯୌକ୍ତିକ ନୁହେଁ। ସମ୍ପୂର୍ଣ୍ଣ ସ୍ୱାଭାବିକ ଆଚରଣ। ତେଣୁ ବାଳୀର ଆଚରଣକୁ ପଶୁ ତୁଲ୍ୟ ଆଚରଣ କହିବା ବା ପଶୁ ପ୍ରବୃତ୍ତି ସହ ତୁଳନା କରିବା ରାମଙ୍କ ପକ୍ଷରେ ଉଚିତ ହୋଇ ନାହିଁ।

ଏଠାରେ ଆଉ ଗୋଟିଏ ଦିଗରୁ ବିଚାର କରାଯାଉ। ଆର୍ଯ୍ୟ ପରମ୍ପରାରେ ଜ୍ୟେଷ୍ଠ ପୁତ୍ରର ରାଜଗାଦିରେ ପ୍ରଥମ ଅଧିକାର। ସେ ହିଁ ରାଜ୍ୟର ଉତ୍ତରାଧିକାରୀ। ଆର୍ଯ୍ୟମାନଙ୍କ ପାଇଁ ଯେଉଁ ସାମାଜିକ କଟକଣା ନିୟମକାନୁନକୁ ପ୍ରାଥମିକତା ଓ ସ୍ୱୀକୃତି ଦିଆ ଯାଇଛି, ଏଇଟି ତା' ମଧ୍ୟରୁ ଗୋଟିଏ ପ୍ରମୁଖ ପରମ୍ପରା ବା ନିୟମ। ଭରତ ତାହା ସ୍ୱୀକାର କରି ପରମ୍ପରାରୁ ବିଚ୍ୟୁତ ନହୋଇ ଅଯୋଧ୍ୟାର ସିଂହାସନ ଗ୍ରହଣ କରିବାକୁ ମନା କରି ଦେଇଛନ୍ତି। ରାମ ଏ ପରମ୍ପରା, ଏ ସାମାଜିକ ନୀତି ନିୟମ ବିଷୟରେ ସମ୍ପୂର୍ଣ୍ଣ ଜ୍ଞାତ। ମାତ୍ର ବାଳୀ, ସୁଗ୍ରୀବ ବ୍ୟାପାରରେ ସେ କ'ଣ କଲେ ଆଲୋଚନା କରାଯାଉ।

ସୁଗ୍ରୀବ ବାଳୀର ଅନୁପସ୍ଥିତିରେ ଆସି ରାଜଗାଦି ମାଡ଼ି ବସିଛି। ହୁଏତ ତା'ର ଯୁକ୍ତି ଏଇଆ ଯେ ବିନା ଶାସକରେ ରାଜ୍ୟର ନିରାପତ୍ତା ଓ ଶୃଙ୍ଖଳା ବିପନ୍ନ ହୋଇଥାନ୍ତା। ମାତ୍ର ବଡଭାଇ ବାଳୀର ପ୍ରାପ୍ତବୟସ୍କ ବୀର ପୁତ୍ର ଅଙ୍ଗଦ ଉପସ୍ଥିତ ଥିଲା। ଅଙ୍ଗଦକୁ ସିଂହାସନରେ ବସାଇ ସେ ତାକୁ ରାଜ୍ୟ ଶାସନରେ ସାହାଯ୍ୟ କରିପାରିଥାଆନ୍ତା। ମାତ୍ର ତା ସେ

କରିନାହିଁ । ତେଣୁ ସୁଗ୍ରୀବର ରାଜ୍ୟ ଲୋଭ ହିଁ ବାଳୀର ସାମୟିକ ଅନୁପସ୍ଥିତିକୁ ମୃତ୍ୟୁର ଆଖ୍ୟା ଦେଇ ରାଜଗାଦି ମାଡି ବସିବାକୁ ପ୍ରୋତ୍ସାହନ ଦେଉଛି । ଏବଂ ବାଳୀ ଠିକ୍ ଏତକ ବୁଝି ପାରିଥିବାରୁ ସୁଗ୍ରୀବକୁ ରାଜ୍ୟରୁ ବିତାଡିତ କରିଛି । ଏହା ବ୍ୟତୀତ ରାମଙ୍କ ସହ ମିତ୍ରତା କରିବା ସମୟରେ ସେ ନିଜର ପତ୍ନୀ ରୁମାକୁ ଫେରସ୍ତ ପାଇବାକୁ ରାମଙ୍କ ସାହାଯ୍ୟ ମାଗି ନାହିଁ । ସେ ବାଳୀକୁ ହରାଇ ପତ୍ନୀ ସହିତ କିଷ୍କିନ୍ଧା ଦଖଲ କରିବାର ସପ୍ନ ନେଇ ରାମଙ୍କ ସହ ମିତ୍ରତା କରିଛି ।

ରାମଙ୍କର ମଧ୍ୟ ସେଠାରେ ବୁଝିବା ଦରକାର ଥିଲା ଯେ କିଷ୍କିନ୍ଧାର ନିୟମାନୁମୋଦିତ ଶାସକ, ନୃପତି ହେଉଛି ବାଳୀ, ସେ ମୃତ୍ୟୁ ବରଣ କରିନାହିଁ । ସାମୟିକ କେତେକ କାରଣରୁ ରାଜ୍ୟରୁ ଅନୁପସ୍ଥିତ ରହିଛି । ଯଦିଓ ସୁଗ୍ରୀବ ସେହି ସଳ୍ପ ସମୟ ପାଇଁ ରାଜଗାଦି ଅଧିକାର କରିଛି, ତେବେ ବାଳୀର ପ୍ରତ୍ୟାବର୍ତ୍ତନ ପରେ ଆଉ ସୁଗ୍ରୀବର ସେ ଅଧିକାର ରହିବା କଦାପି ଗ୍ରହଣ କରାଯାଇ ନପାରେ । ମାତ୍ର ରାମ ସୁଗ୍ରୀବର ଏ ଦାବୀ ବା ଲୋଭକୁ ସୀକାର କରି ତାକୁ ସାହାଯ୍ୟ କରିବା ପାଇଁ ଅଙ୍ଗୀକାରବଦ୍ଧ ହୋଇଛନ୍ତି । ଯଦି କେବଳ ପତ୍ନୀ ରୁମାକୁ ଫେରି ପାଇବା ସୁଗ୍ରୀବର ଉଦ୍ଦେଶ୍ୟ ଥାଆନ୍ତା, ତେବେ ରାମ ସିଧାସଳଖ ବାଳୀ ପାଖକୁ ମଧ୍ୟସ୍ଥି ହାତରେ ପ୍ରସ୍ତାବ ପଠାଇ ପାରିଥାଆନ୍ତେ ଓ ଯଦି ବାଳୀ ତଥାପି ରୁମାକୁ ଫେରାଇବାକୁ ଅସୀକାର କରିଥାଆନ୍ତା ଓ ରୁମାର ଇଚ୍ଛା ବିରୁଦ୍ଧରେ ତାକୁ ଅଟକାଇଥାଆନ୍ତା ତେବେ ରାମ ବାଳୀକୁ ସମ୍ମୁଖ ଦ୍ୱନ୍ଦକୁ ଡାକି ଦଣ୍ଡ ଦେଇ ପାରିଥାଆନ୍ତେ ବା ଲୁଚି ଲୁଚି ମାରିଥିଲେ  ମଧ୍ୟ ତାହା ଗ୍ରହଣୀୟ ହୋଇଥାଆନ୍ତା । କାରଣ ବାଳୀ ସେଠାରେ ଅନ୍ୟାୟ ଅଧର୍ମର ପନ୍ଥା ନେଇଛି ବୋଲି ବୁଝି ହୋଇଥାଆନ୍ତା । ମାତ୍ର ଏଠାରେ ଏପରି କିଛି ଘଟି ନାହିଁ ।

ଏ ସବୁ ଦେଖିଲେ ସୀକାର କରିବାକୁ ହେବ ଯେ ରାମ ସୁଗ୍ରୀବର ରାଜ୍ୟ ଲୋଭକୁ କୌଣସି ପ୍ରକାର ବାଧା ଦେଇ ନାହାନ୍ତି ବରଂ ତାକୁ କିଷ୍କିନ୍ଧା ଦିଆଇବା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଏତକ କରି ସାରିବା ପରେ ଅଙ୍ଗଦକୁ (ଜ୍ୟେଷ୍ଠ ପୁତ୍ରକୁ) ରାଜଗାଦି ଦେବା ପ୍ରଶ୍ନ ଉଠୁଛି କେଉଁଠି ।

ମନେହୁଏ ସୁଗ୍ରୀବର ମିତ୍ରତା ପାଇଁ, ସୁଗ୍ରୀବ ତଥା ତା'ର ବିଶାଳ ବାନର ବାହିନୀର ସାହାଯ୍ୟ ପାଇଁ, ରାମ ଏ ଆର୍ଯ୍ୟ ପରମ୍ପରା, ସୀକୃତ ସାମାଜିକ ନୀତିକୁ ଆଖି ବୁଜି ଦେଇଛନ୍ତି ।

ତା'ପରେ ସୁଗ୍ରୀବର ପତ୍ନୀ ରୁମା ବ୍ୟାପାର । ସାନଭାଇର ସ୍ତ୍ରୀକୁ ହରଣ କରିବା ଅପରାଧରେ ରାମ ବାଳୀକୁ ଦୋଷୀ କରିଛନ୍ତି । ଏ ଦୋଷାରୋପ କିଛି ମାତ୍ରାରେ ଯଥାର୍ଥ । ମାତ୍ର ଏହା କେତେକ ପ୍ରଶ୍ନବାଚୀ ସୃଷ୍ଟି କରୁଛି । କିଷ୍କିନ୍ଧା ଗୋଟାଏ ସମ୍ପୂର୍ଣ୍ଣ ଅନାର୍ଯ୍ୟ ଅଞ୍ଚଳ ନୁହେଁ । ଏହା ଏକ ସମୃଦ୍ଧ ରାଜ୍ୟ ।

ସେତେବେଳେ ତିନୋଟି ସଭ୍ୟତା ତିନୋଟି ରାଜ୍ୟକୁ ନେଇ ପରିଚିତି ହାସଲ

କରିଥିଲା । ଲଙ୍କା, କିଷ୍କିନ୍ଧା ଓ ଅଯୋଧ୍ୟା । ଅଯୋଧ୍ୟା ଆର୍ଯ୍ୟ ଧର୍ମ ସଂସ୍କୃତି ନେଇ ଗରିୟାନ । ମାନବିକ ଗୁଣର କ୍ରମାଗତ ବିକାଶ, ସାମାଜିକତା, ଉପଯୁକ୍ତ ଆଚରଣ, ତପ, ଜପ, ହୋମ, ଉପଯୁକ୍ତ ଶାସନ, ଉତ୍ତରଦାୟୀ ପ୍ରଜାପାଳନ ଏସବୁ ନେଇ ଆର୍ଯ୍ୟ ସଭ୍ୟତା । ମାତ୍ର ବୈଷୟିକ ଉନ୍ନତି ଦୃଷ୍ଟିରୁ ଆର୍ଯ୍ୟ ସଭ୍ୟତା ଅନ୍ୟ ଦୁଇ ସଭ୍ୟତା ଯଥା ଅସୁର ସଭ୍ୟତା ଓ ବାନର ସଭ୍ୟତାର ପଛରେ । ଅସୁର ସଭ୍ୟତା ଭୋଗ ବିଳାସ, ବିଷୟ ଦୃଷ୍ଟିରୁ ଶୀର୍ଷରେ ମାତ୍ର ଶିକ୍ଷା, ଦୀକ୍ଷା, ପରମ୍ପରା, ଆଚରଣ, ବିଚାର ଓ ସଂସ୍କାର ଦୃଷ୍ଟିରୁ ଆର୍ଯ୍ୟମାନଙ୍କ ଦୃଷ୍ଟିରେ ପତିତ, ନୀଚ । ମାତ୍ର ବାନର ସଭ୍ୟତା ଏ ଦୁଇ ସଭ୍ୟତାର ମଝିରେ । ବୈଷୟିକ ଦୃଷ୍ଟିରୁ ଅଯୋଧ୍ୟାଠାରୁ କିଛିଟା ଉନ୍ନତ ଓ ଶିକ୍ଷାଦୀକ୍ଷା, ଜପତପ, ଶାସନ, ଆଚରଣରେ ଅସୁର ସଭ୍ୟତା ଓ ଆର୍ଯ୍ୟ ସଭ୍ୟତା ମଝାମଝି । ହନୁମାନ ପରି ବେଦଜ୍ଞ, ଶୁଦ୍ଧ ସଂସ୍କୃତ ଓ ଅତ୍ୟନ୍ତ ମାପଚୁପ ଶବ୍ଦରେ ନିଜକୁ ପ୍ରକାଶ କରିପାରୁଥିବା ବ୍ୟକ୍ତିତ୍ୱ ଯେଉଁ ଦେଶ ରାଜାଙ୍କ ପରାମର୍ଶଦାତା, ସେମାନେ ଯେ ଅନାର୍ଯ୍ୟ ନୁହନ୍ତି, ଅସୁର ନୁହନ୍ତି, ଅନାଚାରୀ ନୁହନ୍ତି ତାହା ବିନା ଯୁକ୍ତିରେ ଗ୍ରହଣ କରାଯାଇପାରେ ।

ଆଉ ବାଳୀ, ସୁଗ୍ରୀବର କ୍ଷମାଭିକ୍ଷା ବା ସଫେଇ ଗ୍ରହଣ ଯେ କରିନାହିଁ, ସେ ବିଷୟ କୁହାସରିଛି । ଏଥିରେ ବାଳୀ ସମ୍ପୂର୍ଣ୍ଣ ଦୋଷୀ ନୁହେଁ ବା ସୁଗ୍ରୀବ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୁହେଁ । ସୁଗ୍ରୀବର ରାଜ୍ୟ ଲୋଭ ଓ ବିଳାସ ବ୍ୟସନ ଲାଳସା ଏଥିରେ ଯେ କାମ କରିନାହିଁ ତାହା କହିହେବ ନାହିଁ । ସୁଗ୍ରୀବ ଯେ ବିଳାସ ପ୍ରିୟ, ତାହା ରାଜଗାଦି ପାଇବା ପରେ ସୀତା ଠାବ କରିବାରେ ହେଳା କରିବାରୁ ଜାଣି ହୁଏ ।

ମାତ୍ର କିଷ୍କିନ୍ଧାକୁ ବାଳୀ ଫେରିବା ପରେ ସୁଗ୍ରୀବକୁ ବିତାଡିତ କରିବା, ତାର ପତ୍ନୀ ରୁମାକୁ ବାଳୀ ଉପଭୋଗ କରିବା ଦୋଷରେ ରାମ ବାଳୀକୁ ଦୋଷ ଦେଇଛନ୍ତି । ମାତ୍ର ପ୍ରତ୍ୟେକ ସଭ୍ୟତାର ପରମ୍ପରା ଭିନ୍ନ । କେଉଁଠି ହୁଏତ ଭାଇର ପତ୍ନୀକୁ ଭୋଗ କରିବା ଅତ୍ୟନ୍ତ ଗର୍ହିତ ଅପରାଧ ହୋଇପାରେ ମାତ୍ର ଆଉ କେଉଁ ସଭ୍ୟତାର ପରମ୍ପରାରେ ତାହା ସ୍ୱୀକୃତ ହୋଇଥାଇପାରେ । ତେଣୁ ଆର୍ଯ୍ୟ ସଭ୍ୟତା ମାପକାଠିରେ ବାଳୀକୁ ମାପି ଦଣ୍ଡ ଦେବା ପାଇଁ ନିର୍ଣ୍ଣୟ କରିବା, ତା'ପୁଣି ମୃତ୍ୟୁ ଦଣ୍ଡ ଏହା ବୋଧହୁଏ ନ୍ୟାୟରେ ଯିବ ନାହିଁ । ଯଦି ବାଳୀ ଏଠାରେ ଦୋଷୀ, ରାମ କିଷ୍କିନ୍ଧାରେ ଥିବା ସମୟରେ ସୁଗ୍ରୀବ ତାରା (ବାଳୀର ପତ୍ନୀକୁ) ଗ୍ରହଣ କରିଛି ଓ ଭୋଗ କରିଛି । ତେବେ ସୁଗ୍ରୀବ ମଧ୍ୟ ତତୋଧୀକ ଦାୟୀ । ତେବେ ରାମ ଏପରି ଏକ ଗର୍ହିତ କାର୍ଯ୍ୟକୁ ପ୍ରଶ୍ରୟ ଦେଲେ କିପରି ? ନା, ଯେହେତୁ ସୁଗ୍ରୀବର ସାହାଯ୍ୟ ବିନା ସେ ସୀତା ଉଦ୍ଧାର କରିପାରିବେ ନାହିଁ, ସେଥିପାଇଁ କ'ଣ ଚୁପ୍ ରହିଲେ ? ଆଚରଣରେ ଏତେ ନିମ୍ନକୁ ଖସିଯିବା ରାମ ଚରିତ୍ର ପକ୍ଷରେ ଅସମ୍ଭବ । ତାପରେ ଏପରି ଅନ୍ୟାୟ ଅନାଚାର ବିରୁଦ୍ଧରେ ନୀତିନିଷ୍ଠ ହନୁମାନ ମଧ୍ୟ ସୁଗ୍ରୀବକୁ ପଦେ ମଧ୍ୟ କହି ନାହାନ୍ତି । ଆଉ ଗୋଟିଏ ଦିଗରୁ ସମସ୍ୟାଟି ଦେଖାଯାଉ -- ବାଳୀ ପାଖରେ ରହି ରୁମା ଯେ ଅସୁଖୀ ଥିଲେ ବା ସୁଗ୍ରୀବ ପାଖରେ ରହି ତାରା ଅସୁଖୀ ରହିଲେ ଏହାର ଦୃଷ୍ଟାନ୍ତ ଆମ ପାଖରେ ନାହିଁ । କୌଣସିଠାରେ ଏପରି ବର୍ଣ୍ଣନା ନାହିଁ । ତେଣୁ ଏହା କିଷ୍କିନ୍ଧା ସଭ୍ୟତା, ପରମ୍ପରାରେ ସ୍ୱୀକୃତ

ବୋଲି ଧରି ନିଆଯାଇପାରେ । ତେଣୁ ବାଳୀକୁ ରୁମାକୁ ଭୋଗ କରିବା ଦୋଷରେ ଦୋଷୀ କରି ଲୁଚି ଲୁଚି ମୃତ୍ୟୁ ଦଣ୍ଡ ଦେବା ଓ ତାହାର ଯଥାର୍ଥତା ପ୍ରତିପାଦନ ପାଇଁ ଆର୍ଯ୍ୟ ଧର୍ମ ଓ ସଂସ୍କାର ଓ ପରମ୍ପରାର ଦୁହାଇ ଦେବା କଦାପି ଗ୍ରହଣୀୟ ନୁହେଁ ।

ରାମ ଆପଣାର ଆର୍ଯ୍ୟ ସଭ୍ୟତାର ଅସ୍ମିତାରେ ବାଳୀକୁ ଅନାର୍ଯ୍ୟ, ପଶୁତୁଲ୍ୟ ବୋଲି ଦୋଷୀ କରିଛନ୍ତି । ଠିକ୍ ଅଛି । ମାତ୍ର ରାମଙ୍କ ଆପଣା ପରିବାର ମଧ୍ୟରେ ନିକଟ ଅତୀତରେ ଯାହା ସବୁ ଘଟି ଯାଇଛି ତାହା କ'ଣ ଆର୍ଯ୍ୟ ସଂସ୍କୃତିର ପରିପନ୍ଥୀ ନୁହେଁ? ଦଶରଥ ସ୍ତ୍ରେଣ, କାମାନ୍ଧ, ତାଙ୍କର ସାତଶହ ପଚାଶ ପତ୍ନୀ । କୈକେୟୀଙ୍କ ସୌନ୍ଦର୍ଯ୍ୟରେ ବୃଦ୍ଧାବସ୍ଥାରେ ବାନ୍ଧି ହୋଇ ସର୍ବଗୁଣସମ୍ପନ୍ନା, ଧର୍ମପରାୟଣା କୌଶଲ୍ୟାଙ୍କୁ ସେ ଅବହେଳା କରିଛନ୍ତି । କୈକେୟୀଙ୍କୁ ଦୁଇଟି ବର ଦେଇଛନ୍ତି । ବର ତତ୍କ୍ଷଣାତ୍ ମାଗି ନିଆଯାଏ ଓ ତତ୍କ୍ଷଣାତ୍ ପୂରଣ କରାଯାଏ । ତାହା ଭବିଷ୍ୟତକୁ ଗଡାଇ ରଖାଯାଏନି । ଦଶରଥ କୈକେୟୀଙ୍କ ସୌନ୍ଦର୍ଯ୍ୟରେ ଅନ୍ଧ ହୋଇ ଭବିଷ୍ୟତରେ ପୂରଣ ପାଇଁ ପ୍ରତିଶ୍ରୁତି ଦେଇଛନ୍ତି । ଏହା ଫଳରେ ରାମଙ୍କ ବନବାସ ପାଇଁ ବାଟ ସେ ନିଜେ ପ୍ରସ୍ତୁତ କରିଛନ୍ତି । ଦଶରଥଙ୍କ ଆଚରଣ ଜଣେ ସୂର୍ଯ୍ୟବଂଶୀ ଧର୍ମପରାୟଣ ଶାସକ ପକ୍ଷରେ ଅଶୋଭନୀୟ । ତାହା ଆର୍ଯ୍ୟ ପରମ୍ପରା ସ୍ୱୀକୃତ ନିଶ୍ଚୟ ନୁହେଁ । ସେଥିପାଇଁ ପିତାଙ୍କର ଏ ନିନ୍ଦନୀୟ ଆଚରଣରେ ଲକ୍ଷ୍ମଣ ଉତ୍କ୍ଷିପ୍ତ ହୋଇ ଦଶରଥଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ପିତାଙ୍କର ଏ ଭୁଲ୍ ରାମଙ୍କ ଆଖିରେ ହୁଏତ ପଡିଛି । ମାତ୍ର ତାଙ୍କ ଶିକ୍ଷାଦୀକ୍ଷା ତାଙ୍କୁ ପିତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରୁ ନିବୃତ କରିଛି । ତାହା ନିଶ୍ଚୟ ପ୍ରଶଂସନୀୟ । ଦଶରଥଙ୍କ ଆଚରଣ ଯେ ଅଶୋଭନୀୟ ଓ ଆର୍ଯ୍ୟ ପରମ୍ପରା ସ୍ୱୀକୃତ ନୁହେଁ ଏଥିରେ କାହାରି ଦ୍ୱିମତ ନରହିପାରେ ।

ସୂର୍ପଣଖା ପତିହରା । ରାମ ଲକ୍ଷ୍ମଣଙ୍କ ରୂପରେ ମୁଗ୍ଧ ହୋଇ ସେ ଜଣକୁ ପତି ରୂପେ ପାଇବାକୁ ପ୍ରାର୍ଥନା କରିଛି । ତା ସହିତ ଖେଳିବା ପରି ରାମ ଲକ୍ଷ୍ମଣଙ୍କ ପାଖକୁ ପଠାଇଛନ୍ତି, ଲକ୍ଷ୍ମଣ ରାମଙ୍କ ପାଖକୁ ପଠାଇଛନ୍ତି । ରାମ ନିଜର ସ୍ତ୍ରୀ ସୀତା ଥିବାରୁ ବିବାହ କରିପାରିବେ ନାହିଁ ବୋଲି ଦର୍ଶାଇଛନ୍ତି । ସେ କ'ଣ ଭୁଲିଗଲେ ଯେ ଦଶରଥଙ୍କର ତିନି ଜଣ ମୁଖ୍ୟ ପତ୍ନୀ ଥିଲେ । (ସାତଶହ ପଚାଶ ଅନ୍ୟ ପତ୍ନୀମାନଙ୍କ କଥା ଏଠାରେ ବାଦ୍ ଦିଅନ୍ତୁ ।) ଆର୍ଯ୍ୟ ପରମ୍ପରାରେ ଶାସକ ଏକାଧିକ ପତ୍ନୀ ଗ୍ରହଣ ସ୍ୱୀକୃତ ଥିଲା ।

ସୂର୍ପଣଖା ପତିହରା ଯୁବତୀ । ଅସୁର ପରମ୍ପରାରେ ସିଧାସଳଖ ପ୍ରସ୍ତାବ ଦେବା ହୁଏତ ଦୋଷାବହ ନୁହେଁ । ମାତ୍ର ଦୁଇଭାଇ ତା' ସହିତ କୌତୁକ କରିଛନ୍ତି, ଖେଳିଛନ୍ତି ଓ ଏଥିରେ ସେ ଅପମାନିତ ହୋଇଛି । ଶେଷରେ ତା ନାକ କାଟି ଦେଇ ତାକୁ ବିରୂପ କରିଦେଇଛନ୍ତି । ଯାହାଫଳରେ ଭବିଷ୍ୟତରେ ତାକୁ ମୋଟେ ସ୍ୱାମୀ ମିଳିବାର ସମ୍ଭାବନା ରହିଲା ନାହିଁ । ଜଣେ ଝିଅକୁ ଯେତେ ଥାଉ ତା'ର ଅପରାଧ (ସେ ଅନ୍ୟ ପ୍ରଶ୍ନ) ତାକୁ ସାରା ଜୀବନ ପାଇଁ କୁରୂପ କରିଦେବା କେଉଁ ଧର୍ମ, କେଉଁ ନ୍ୟାୟ । କେଉଁ ଆର୍ଯ୍ୟ

ସଭ୍ୟତା, ପରମ୍ପରା ଏହାକୁ ସମର୍ଥନ କରିବ ?

କହିବାର କଥା ହେଉଛି, ରାମ ସୁଗ୍ରୀବର ମିତ୍ରତା ପାଇଁ ବାଳୀକୁ ମାରିଲେ । ଏହା ପଛରେ ରହିଛି ନିଜ୍ସ୍ୱ ସ୍ୱାର୍ଥ । ଉପଯୁକ୍ତ ରାଜନୈତିକ, କୂଟନୈତିକ ଗଣନା କରି ସେ ଗୋଟି ଚାଳନା କରିଛନ୍ତି । ବାଳୀର ମିତ୍ରତା ନଲୋଡି ସୁଗ୍ରୀବର ମିତ୍ରତା ଲୋଡିଛନ୍ତି । ରାଜନୈତିକ, କୂଟନୈତିକ ଦୃଷ୍ଟିରୁ ଦେଖିଲେ ରାମ ଯାହା କରିଛନ୍ତି ଠିକ୍ କରିଛନ୍ତି । ମାତ୍ର ବାଳୀକୁ ଯେଉଁ ଦୋଷରେ ଦୋଷୀ ବୋଲି କହି ସଭ୍ୟତା, ସଂସ୍କୃତିର ପରମ୍ପରାର ଦ୍ୱାହି ଦେଇ ତାହାର ଉଲ୍ଲଂଘନ ପାଇଁ ଦଣ୍ଡ ଦେଲେ ବୋଲି ଯୁକ୍ତି କରିଛନ୍ତି, ତାହା ଗ୍ରହଣୀୟ ନୁହେଁ । ବାଳୀ ବଧ ସମ୍ପୂର୍ଣ୍ଣ ନିଜର ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟ ପ୍ରଣୋଦିତ ।

# ଶ୍ରୀରାମଙ୍କ ବଂଶବୃକ୍ଷ

Vivasvat (Sun)

| | | | |
|---|---|---|---|
| 1 | Manu | Yama | Yami |
| 2 | Iksvaku | | |
| 3 | Vikuksi[2] | | |
| 6 | Prthu | | |
| 33 | Harischandra | | |
| 37 | Trishanku (Satyavrat) | | |
| 41 | Sagar | | |
| 62 | Raghu | | |
| 65 | Rama | | |

(Source:Rejesh Vochhar: The Vedic People, P.39)

# ସେତୁବନ୍ଧ

ଯେତେ ଯେତେ ଲେଖକ ରାମାୟଣ ରଚନା କରିଛନ୍ତି, ସମସ୍ତଙ୍କ ବର୍ଣ୍ଣନାରେ ସେତୁବନ୍ଧ ଗୋଟିଏ ମୁଖ୍ୟ ପ୍ରସଙ୍ଗ ରୂପେ ସ୍ଥାନ ପାଇଛି । ରାମ ବାନର ସେନାର ସାହାଯ୍ୟରେ ସମୁଦ୍ର ଉପରେ ବନ୍ଧ ବାନ୍ଧି ତା'ଉପର ଦେଇ ସୈନ୍ୟ ସାମନ୍ତ ସହ ଲଙ୍କାରେ ପ୍ରବେଶ କରି ସୀତାଙ୍କୁ ଉଦ୍ଧାର କରିଛନ୍ତି । ବିଭିନ୍ନ ଲେଖକ, କବି ଏହା ଉପରେ ବିଭିନ୍ନ ରଙ୍ଗର ପୁଟ ଦେଇ ବର୍ଣ୍ଣନା କରିଛନ୍ତି । ନିଜ କଳ୍ପନା ଆଉ ଚାତୁରୀ ଖଟାଇ ଅତୀତ, ଭବିଷ୍ୟତ ସହ ଯୋଡ଼ି, ବିଭିନ୍ନ କାହାଣୀର ଅବତାରଣା କରି ସେମାନେ ଏହାକୁ ରୋଚକ ପ୍ରସଙ୍ଗ କରି ପକାଇଛନ୍ତି । ସେ ଯାହାହେଉ ରାମ ବାନର ସେନା ସାହାଯ୍ୟରେ ସମୁଦ୍ରରେ ବନ୍ଧ ବାନ୍ଧି ତା'ଉପର ଦେଇ ଲଙ୍କାରେ ପ୍ରବେଶ କଲେ । ଏହା ହିଁ ମୂଳକଥା । ମାତ୍ର ଏ ପ୍ରସଙ୍ଗ ବ୍ୟାପାରରେ କେତୋଟି ସଂଶୟ ମନକୁ ଆକ୍ରାନ୍ତ କରୁଛି । ତାହା ଏଠାରେ ଆଲୋଚ୍ୟ:

୧) ଏ ସେତୁବନ୍ଧଟି, ହନୁମାନ ସୀତାଙ୍କୁ ଲଙ୍କାରେ ଠାବ କରି ଫେରି ଆସିବା ପରେ ରାମ ନିର୍ମାଣ କରିଛନ୍ତି କି ?

୨) ଏ ସେତୁବନ୍ଧଟି ମୋଟେ ରାମକୃତ ନୁହେଁ । ଆଗରୁ ଥିଲା କି ?

୩) ରାମ ମୋଟେ ଲଙ୍କା ପ୍ରବେଶ ପାଇଁ ସେତୁବନ୍ଧ ଉପରେ ନିର୍ଭର କରି ନାହାନ୍ତି । ଅନ୍ୟ କିଛି ବିକଳ୍ପ ବ୍ୟବସ୍ଥାରେ ସେ ସେନାବାହିନୀ ନେଇ ଲଙ୍କାରେ ପ୍ରବେଶ କରିଛନ୍ତି ।

ସେତୁବନ୍ଧ କାହାଣୀଟି ସମସ୍ତେ ଯେପରି ବର୍ଣ୍ଣନା କରିଛନ୍ତି, ଅବିକଳ ସେଇଆ ନା, ତା'ପଛରେ କିଛି ଲୁକାୟିତ ରହିଯାଉଛି ? ରାମ ସମୁଦ୍ର ପାର ହୋଇ ଲଙ୍କା ଯାଇଛନ୍ତି ଓ ସୀତାଙ୍କୁ ଉଦ୍ଧାର କରିଛନ୍ତି -- ଏହାକୁ ସତ୍ୟ ବୋଲି ଗ୍ରହଣ କରି ସେତୁବନ୍ଧ ପ୍ରସଙ୍ଗଟି ଆମେ ଆଲୋଚନା କରିବା ।

ଯେହେତୁ ରାମଙ୍କର ବାନର ସେନା ନେଇ ଲଙ୍କା ପ୍ରବେଶ ସର୍ବଜନ ସ୍ୱୀକୃତ ତେବେ ସେ ସେଠାକୁ ଗଲେ କିପରି ?

ବ୍ୟାପାରଟି ଏହିପରି ଆଲୋଚନା ପରିସର ଭିତରକୁ ଆସେ: ହନୁମାନ ଏକା ଲମ୍ଫକେ ସାଗର ଅତିକ୍ରମ କରି ଲଙ୍କାରେ ପହଞ୍ଚିଛନ୍ତି ଓ ସେଠାରେ ବହୁତ ଖୋଜତାଡ଼ କରି

ଅଶୋକ ବନରେ ସୀତାଙ୍କୁ ବିମର୍ଷ ବଦନରେ ଅସୁରୁଣୀ ପରିବେଷ୍ଟିତ ହୋଇ ବସିଥିବାର ଦେଖିଛନ୍ତି । କୌଶଳ କରି ସୀତାଙ୍କ ମନରେ ଆପଣାର ରାମ ଦୂତ ପରିଚୟ ଦେଇ ବିଶ୍ୱାସ ଜନ୍ମାଇ ତାଙ୍କ ସହିତ ସୁଖଦୁଃଖ ହୋଇ ରାମଲକ୍ଷ୍ମଣ ବୃତ୍ତାନ୍ତ ଜଣାଇଛନ୍ତି ଓ କିଛି ସନ୍ତକ ଆଣି ଲଙ୍କାରେ ଅଗ୍ନି ସଂଯୋଗ କରି ସମୁଦ୍ର ପାର ହୋଇ ରାମଙ୍କ ପାଖକୁ ଫେରି ଆସିଛନ୍ତି ।

ସେହି କଥାବାର୍ତ୍ତା ସମୟରେ ସୀତା କେତେକ ଗୁରୁତ୍ୱପୂର୍ଣ୍ଣ ସନ୍ଦେଶ ରାମଙ୍କ ପାଇଁ ପଠାଇଛନ୍ତି । ତା'ହେଲା ସୀତା ଯେତେବେଳେ ରାବଣର ପ୍ରଲୋଭନକୁ ଭ୍ରୂକ୍ଷେପ କରି ତା'ର ରାଣୀ ହେବାକୁ ମନା କରି ଦେଇଛନ୍ତି, ସେତେବେଳେ ରାବଣ ତାଙ୍କୁ ଏକ ବର୍ଷ ସମୟ ଦେଇଛି । ଯଦି ରାମ ଏଇ ଏକ ବର୍ଷ ମଧ୍ୟରେ ଆସି ତାଙ୍କୁ ଉଦ୍ଧାର ନକରନ୍ତି ତେବେ କଣ୍ଟ ପୂରିଲେ ରାବଣ ତାଙ୍କୁ ବିବାହ କରିବାକୁ ବାଧ୍ୟ କରିବ ଅନ୍ୟଥା ତାଙ୍କୁ ହତ୍ୟା କରିବ । ଏକ ବର୍ଷ କଣ୍ଟରୁ ଆଉ ଏକ ମାସ ମାତ୍ର ବାକି ଅଛି । ତେଣୁ ସୀତାଙ୍କ ଆବେଗପୂର୍ଣ୍ଣ ସନ୍ଦେଶ । କଣ୍ଟ ପୂରିବା ପୂର୍ବରୁ ରାମ ଆସି ଲଙ୍କାରେ ପହଞ୍ଚି ରାବଣ ସହ ଯୁଦ୍ଧ କରି ତାଙ୍କୁ ଉଦ୍ଧାର କରନ୍ତୁ ।

ହନୁମାନ ସୀତାଙ୍କୁ ଆଶ୍ୱାସନା ଦେଇ ତତ୍‌କ୍ଷଣାତ୍ ଫେରି ଆସି ନାହାଁନ୍ତି । ସେ ଅସୁରମାନଙ୍କ ହାତରେ ଧରାଦେଇ ଲଙ୍କାରେ ନିଆଁ ଲଗାଇ ସାରିବା ପରେ ରାମଙ୍କ ପାଖକୁ ଫେରିଛନ୍ତି । କହିବାର ଉଦ୍ଦେଶ୍ୟ, ହନୁମାନ ଏକ ମାସର କଣ୍ଟର ଗୁରୁତ୍ୱ ଜାଣିବା ପରେ ମଧ୍ୟ କିଛି ସମୟ ଲଙ୍କାରେ ଜାଣି ଶୁଣି ନଷ୍ଟ କରିଛନ୍ତି । ଏହାପରେ ରାମଙ୍କ ପାଖକୁ ଫେରିବା ଭିତରେ ମଧ୍ୟ କିଛି ସମୟ ଚାଲି ଯାଇଛି । କାରଣ ତାଙ୍କୁ ଭାରତ ପଟେ ସୁଗ୍ରୀବ ପଠାଇଥିବା ଦଳର ଅନ୍ୟମାନେ ଅପେକ୍ଷା କରୁଥିଲେ । ହନୁମାନଙ୍କଠାରୁ ଶୁଭବାର୍ତ୍ତା ଶୁଣି ସେମାନେ କିଷ୍କିନ୍ଧା ଫେରିବା ବାଟରେ ସୁଗ୍ରୀବର ବଗିଚାରେ ପଶି ଆନନ୍ଦରେ ଫଳମୂଳ ଖାଇ ତାପରେ ସୁଗ୍ରୀବକୁ ଆସି ସନ୍ଦେଶ ଦେଇଛନ୍ତି । ଏ ସବୁ ପରେ ସୁଗ୍ରୀବ ତାଙ୍କର ସୈନ୍ୟସାମନ୍ତ ତଥା ମିତ୍ରମାନଙ୍କର ସୈନ୍ୟସାମନ୍ତ ଏକାଠି କରି ସମୁଦ୍ର କୂଳକୁ ଯାଇଛନ୍ତି । ଏସବୁ ଆୟୋଜନ ତଥା ବିରାଟ ବାହିନୀ ଧରି ଯିବାରେ ବେଶ୍ କିଛି ସମୟ ଲାଗିଯାଇଥିବ ।

ତାପରେ ରହିଛି ସମୁଦ୍ର ପାରହେବା । ହନୁମାନ ସିନା ସହଜରେ ଯାଇପାରିଲେ, ଅନ୍ୟମାନେ ସେପରି ଶକ୍ତିଧର ନୁହନ୍ତି; ତେଣୁ ସେଥିପାଇଁ ପ୍ରଚୁର ସମୟ ଦରକାର ହୋଇଥିବ । ତେଣୁ ରାବଣର କଣ୍ଟ ସମୟରୁ ଥିବା ଏକ ମାସ ମଧ୍ୟରେ ରାମ ଲଙ୍କାରେ ପହଞ୍ଚି ସୀତାଙ୍କୁ ଉଦ୍ଧାର କରିବା ସମ୍ଭବ ମନେ ହୁଏନା । ଆଲୋଚନା ସେଇଠି ରଖି ଦେଇ ବର୍ତ୍ତମାନ ସେତୁବନ୍ଧ ବ୍ୟାପାରକୁ ଫେରି ଆସିବା ।

ବାଲ୍ମୀକି ରାମାୟଣର ବର୍ଣ୍ଣନା ଅନୁଯାୟୀ ଭାରତର ଉପକୂଳରୁ ଲଙ୍କାର ଦୂରତା ଥିଲା ଶହେ ଯୋଜନ । ଅନେକଙ୍କ ହିସାବରେ ଏକ ଯୋଜନ ହେଉଛି ନଅ ମାଇଲ । ତା'ର ଅର୍ଥ ଭାରତ ଲଙ୍କା ମଧ୍ୟରେ ଦୂରତା ହେଉଛି ନଅ ଶହ ମାଇଲ । ବର୍ତ୍ତମାନର ଅବସ୍ଥା ଦେଖିଲେ ଏ ହିସାବ ଠିକ୍ ନୁହେଁ ବୋଲି ଜାଣି ହେବ । ରାବଣର ଲଙ୍କା, ବର୍ତ୍ତମାନର

ସିଂହଳ ବା ଶ୍ରୀଲଙ୍କା କି ନୁହେଁ ସେ ନେଇ ଅନେକ ଲେଖକ ସନ୍ଦେହ ପ୍ରକାଶ କରିଛନ୍ତି । ମାତ୍ର ବର୍ତ୍ତମାନର ସିଂହଳକୁ ପୁରାଣର, ରାବଣର ଲଙ୍କା ବୋଲି ଗ୍ରହଣ କରି ଏ ପ୍ରବନ୍ଧ । ବର୍ଣ୍ଣନା ଅନୁଯାୟୀ ସେତୁବନ୍ଧର ଲମ୍ବ ଶହେ ଯୋଜନ ଓ ଓସାର ଦଶ ଯୋଜନ । ତା'ର ଅର୍ଥ ନଅ ଶହ ମାଇଲ ଲମ୍ବ ଓ ନବେ ମାଇଲ ଚଉଡ଼ାର ଗୋଟାଏ ରାସ୍ତା ବାନର ସେନା ଧରି ରାମଙ୍କୁ ଦିନ କେଇଟା ଭିତରେ କରିବାକୁ ହୋଇଥିଲା । ଏହାର ସମ୍ଭାବ୍ୟତା ପରୀକ୍ଷା କରାଯାଇପାରେ ।

ରାମଙ୍କ ପାଖରେ ସେପରି କିଛି ଆଧୁନିକ ନିର୍ମାଣ ସରଞ୍ଜାମ ନଥିଲା ଯାହାର ସାହାଯ୍ୟରେ ସେ ଏତେବଡ଼ ସେତୁବନ୍ଧ ଏତେ କମ୍ ସମୟରେ କରିପାରିବେ । ରାମାୟଣରେ ଏ ପ୍ରକାର ଯନ୍ତ୍ରପାତିର ବର୍ଣ୍ଣନା କେଉଁଠାରେ ନାହିଁ । ଏପରିକି ସେତୁବନ୍ଧ ପାର ହେବାବେଳେ ରାମ ହନୁମାନ କାନ୍ଧରେ ବସି ଯାଇଛନ୍ତି । ଏ ଦୃଷ୍ଟିରୁ ଏପରି ଏକ ବିଶାଳ କାମ ସଳ୍ପ ସମୟରେ ହୋଇଥିବା ସମ୍ଭବ ନୁହେଁ । କବି ଏ ଯନ୍ତ୍ରପାତିର ଅଭାବ ପୂରଣ ପାଇଁ, ବର୍ଣ୍ଣନାକୁ କିଛିଟା ବିଶ୍ୱାସଯୋଗ୍ୟ କରିବା ପାଇଁ ନଳଙ୍କୁ ଯନ୍ତ୍ରୀ ରୂପେ ସେ ଦାୟିତ୍ୱ ଦେଇଛନ୍ତି । ସେ ବିଶ୍ୱକର୍ମାଙ୍କ ପୁତ୍ର ଓ ତାଙ୍କ ପାଖରେ ସେତୁ ବାନ୍ଧିବା ପାଇଁ ବୈଷୟିକ ଜ୍ଞାନ ଅଛି ବୋଲି କୁହାଯାଇଛି । ଏଣେ ସମୁଦ୍ର ମଧ୍ୟ ସେତୁ ବନ୍ଧ ପାଇଁ ସେ ସମୟରେ ସଚ୍ଛ ଜଳ (ଅଗଭୀର) ହୋଇଯାଇଛି । ଏ ସବୁରୁ ମନେହୁଏ ବାଲ୍ମୀକି ମଧ୍ୟ ଅନ୍ୟ ଯେକୌଣସି କବିଙ୍କ ପରି ବାହୁଲ୍ୟ ଦୋଷରୁ ମୁକ୍ତ ନୁହନ୍ତି ।

ମାତ୍ର ରାମ ସୁଗ୍ରୀବ ସହାୟତାରେ ଲକ୍ଷ ଲକ୍ଷ ବାନର ସେନା ସଂଗ୍ରହ କରିଛନ୍ତି, ସାଗର ନିଶ୍ଚୟ ଅତିକ୍ରମ କରିଛନ୍ତି ଏବଂ ଲଙ୍କାରେ ପହଞ୍ଚି ରାବଣ ସହ ଯୁଦ୍ଧ କରିଛନ୍ତି । ଯଦି ସେତୁ ବନ୍ଧ ନିର୍ମାଣ ଏମାନଙ୍କ ପକ୍ଷରେ ସମ୍ଭବ ହୋଇ ନଥିଲା, ତେବେ ବର୍ତ୍ତମାନ ସ୍ୱାଭାବିକ ପ୍ରଶ୍ନ ଏମାନେ ସେଠାକୁ ଗଲେ କିପରି ?

ଭାରତରୁ ଲଙ୍କାର ଦୂରତା ଏତେ ବେଶୀ ନୁହେଁ । ମାତ୍ର ଚବିଶ କିଲୋମିଟର । ତେଣୁ ହୁଏତ ଚାରି ଯୋଜନରେ ଏକ କିଲୋମିଟର ହୋଇଥିବ; ବା ଯଦି ତା ନୁହେଁ ଶହେ ଯୋଜନ କେବଳ ବାହୁଲ୍ୟ ବଚନ । ତାହାର ଓସାର ଦଶ ଯୋଜନ । ତା'ର ଅର୍ଥ ଆମର ପୁରୁଣା ହିସାବ ଅନୁସାରେ ନବେ ମାଇଲ । ଏହା ସମ୍ଭବ ନୁହେଁ କି ଏପରି ଗୋଟାଏ ପ୍ରଶସ୍ତ ରାଜପଥର ଆବଶ୍ୟକତା ନଥିଲା । ବର୍ତ୍ତମାନ 'ନାସା' ସୂତ୍ରରୁ ମିଳୁଥିବା ଫଟୋ ଦେଖିଲେ ସେତୁବନ୍ଧର ସ୍ଥିତି ନେଇ ସନ୍ଦେହ କରିବାର କିଛି ନାହିଁ ଓ ଦୂରତା ମାତ୍ର ଚବିଶ/ପଚିଶ କିଲୋମିଟର ଭିତରେ ।

ଯଦି ରାମ ଏ ସେତୁବନ୍ଧ କରି ନାହାନ୍ତି, ତେବେ 'ନାସା'ର ଉତ୍ତୋଳିତ ଚିତ୍ରର ସେତୁବନ୍ଧ ଆସିଲା କେଉଁଠୁ ଆଉ ରାମ ଏତେ ବଡ଼ ବିଶାଳ ବାହିନୀ ନେଇ ସେପଟକୁ ଗଲେ କିପରି ? ପ୍ରଥମେ ଧରିନିଆଯାଉ ଯେ ରାମ ନଳ ଓ ବାନର ସେନାଙ୍କ ସାହାଯ୍ୟରେ ବରୁଣ ଦେବତାଙ୍କ ଆଶୀର୍ବାଦରେ ଏତେବଡ ସେତୁ ବନ୍ଧ ନିର୍ମାଣ କରିଛନ୍ତି । ପ୍ରଥମରୁ ତ ସଂଶୟ ସୃଷ୍ଟି ହୋଇଛି ଯେ ଏତେବଡ଼ ନିର୍ମାଣ ତ କେବଳ ଯାଦୁ ବଳରେ ହୋଇନାହିଁ ।

କୌଣସି ତପ ବଳରେ ରାମ ମାତ୍ର ଦିନ କେତୋଟି ଭିତରେ ଏହାକୁ କରି ନାହାନ୍ତି, କାରଣ ସେପରି କିଛି ଅତି-ମାନବ ପ୍ରକ୍ରିୟାର ଉଲ୍ଲେଖ ନାହିଁ। ଯାହା ଉଲ୍ଲେଖ ଅଛି ତା ହେଉଛି ସମ୍ପୂର୍ଣ୍ଣ ଶାରୀରିକ ଶ୍ରମ କରି ନଳଙ୍କର ବୈଷୟିକ ଜ୍ଞାନ ସାହାଯ୍ୟରେ ଏହା ନିର୍ମାଣ କରାଯାଇଛି। ନବେ ମାଇଲ ଚଉଡ଼ା ଓ ନଅ ଶହ ମାଇଲ ଲମ୍ବାର ବିଶାଳ ସେତୁ ନିର୍ମାଣ ପାଇଁ ଯେଉଁ ପଥର ବାଲି ସିମେଣ୍ଟ (ବା ସେହିପରି କିଛି ସାମଗ୍ରୀ) ଆବଶ୍ୟକ ହୋଇଥିବ ଏବଂ ସ୍ଥଳ ଉପରୁ ସେ ସବୁ ବୋହି ନେବା ପାଇଁ ଯେଉଁ ଯାନ୍ତ୍ରିକ ସାହାଯ୍ୟ ଦରକାର ହୋଇଥିବ ତାର କିଛି ବୋଲି କିଛି ଉଲ୍ଲେଖ ନାହିଁ। ଆଉ ରହିଲା, ନଳଙ୍କର ବୈଷୟିକ ଜ୍ଞାନ ଓ ଏଥିପାଇଁ ଆବଶ୍ୟକ ସମୟ। କେବଳ ତ ବୈଷୟିକ ଜ୍ଞାନ ରହିଲେ ଏପରି କାମ ହୋଇଯାଏନା, ସେଥିପାଇଁ ଆନୁସଙ୍ଗିକ ବ୍ୟବସ୍ଥା ମଧ ଦରକାର। ସେତୁଟି କେଉଁଠୁ ଆରମ୍ଭ ହେବ, କେଉଁ ବାଟ ଦେଇ କେଉଁଠି ସରିବ, ମଝିରେ ପାଣିର ଗଭୀରତା ତଥା, ମଝିରେ କିଛି ସ୍ଥଳ ଭାଗ ଦେଇ ସେତୁ ଯିବକି, ଏ ସମସ୍ତ ବିଚାର ନିଷ୍ପତ୍ତି କାମ ଆରମ୍ଭ ପୂର୍ବରୁ ଦରକାର। ତାପରେ ଗୋଡ଼ି ପଥର କେବଳ ଭାରତ ଭୂଖଣ୍ଡରୁ ନେଇ ନଅ ଶହ ମାଇଲ ଲମ୍ବର ସେତୁ ବନାଇବା କୌଣସି ବୁଦ୍ଧିମାନର କାର୍ଯ୍ୟ ନୁହେଁ। ଯେହେତୁ ଶାରୀରିକ ଶକ୍ତି/ପରିଶ୍ରମ ଖଟା ଯାଇଛି, ତାକୁ ଯଥା ସମ୍ଭବ ସଂକ୍ଷିପ୍ତ କରିବାକୁ ଓ କାମ ସାରିବାର ସମୟ କମାଇବାକୁ ଦୁଇ କୂଳରୁ କାମ ଆରମ୍ଭ କରିବା କଥା। ମାତ୍ର ଏପରି କିଛି ସୂଚନା ଆମେ ରାମାୟଣରୁ ପାଉନା। ତେଣୁ ରାମ ବାନର ସେନା ଲଗାଇ ନଳଙ୍କ ଜ୍ଞାନ କୌଶଳ ଖଟାଇ ଏଡ଼େ ବିରାଟ ସେତୁ ମାତ୍ର ଏକ ମାସରୁ କମ୍ ସମୟ ଭିତରେ ତିଆରି କରି ପାରିବା ସମ୍ଭବ ମନେ ହୁଏନା।

ଏ ସମଗ୍ର ଆଲୋଚନାଟି ଆମର ଲଙ୍କା ଓ ଭାରତ ମଧରେ ଦୂରତା ବାଇଶ/ତବିଶ କିଲୋମିଟର ବୋଲି ଧରି ନିଆଯାଇ କରାଯାଇଛି। ମାତ୍ର ସେ ଦୂରତା ନେଇ ମଧ କିଛିଟା ମତାନ୍ତର ଅଛି। ସେତକ ଉଲ୍ଲେଖ ନକଲେ ପ୍ରବନ୍ଧଟି ଅସମ୍ପୂର୍ଣ୍ଣ ରହିଯିବ। ଏଠାରେ ସଂଜୀବ ସାନ୍ୟାଲ୍‌ଙ୍କ "Land of the Seven Rivers" ପୁସ୍ତକରୁ ପ୍ରାସଙ୍ଗିକ ଅଂଶ ଉଦ୍ଧାର କରୁଛି:

"We now see a sequence of drifts that separates India from its neighbours. First India and Madagascar separated from Africa around 158 million years ago and then, 130 million years ago, they separated from Antarctica. Around 90 million years ago India separated from Madagascar and drifted steadily northwards.

Meanwhile India kept up its relentless northward journey and 55-60 million years ago it collied with the Eurasian plate. This collision pushed up the Himalays and the Tibetan plateue, what

are now tall mountains were once under the sea, which is why manure fossils are quite common high up in the mountains. The process is not over. The Indian plate is still pushing into Asia. As a result the Himalays are still rising by around 5 mm every year.

ଆମର ଆଲୋଚ୍ୟ ବିଷୟ ନେଇ ଏହାର ପ୍ରାସଙ୍ଗିକତା ଏତିକି ଯେ ଯଦି ଭାରତ ଭୂଖଣ୍ଡ କ୍ରମାଗତ ଉତ୍ତରକୁ ଘୁଞ୍ଚି ଘୁଞ୍ଚି ଯାଉଛି ତେବେ ଲଙ୍କା ଠାରୁ ଭାରତର ଦୂରତା ହୁଏତ ଆଜି ଯାହା ଅଛି ପାଞ୍ଚ ହଜାର/ସାତ ହଜାର ବର୍ଷ ପୂର୍ବେ ତା'ଠୁ କମ୍ ଥିବ। କାରଣ ମାଡ଼ାଗାସ୍କାରକୁ ପଛରେ ଛାଡ଼ି ଦେଇ ଭାରତ ଉତ୍ତରକୁ ଚାଲି ଆସିଥିବା ବେଳେ ଲଙ୍କା ମଧ୍ୟ କ୍ରମାଗତ ଏହି କେତେ ହଜାର ବର୍ଷ ଭିତରେ ଦକ୍ଷିଣକୁ ରହିଯାଇଛି। ଭାରତ ଆଗକୁ ଉତ୍ତରକୁ ଗତି ଜାରି ରଖିଛି ଓ ହୁଏତ ଆଜି ଆମେ ଲଙ୍କା ଭାରତ ମଧ୍ୟରେ ଦୂରତା ଯେଉଁ ବାଇଶ/ଚବିଶ କିଲୋମିଟର ଦେଖୁଛେ ଏହା ସେ ସମୟରେ ରାମଙ୍କର ଲଙ୍କା ବିଜୟ ସମୟରେ ଏତେ ବେଶୀ ନଥିଲା। ଅନେକ କମ୍ ଦୂରତା ଥିଲା। ଏ ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ।

ଏ ସେତୁ ନିର୍ମାଣ ନେଇ ଅନ୍ୟ ଗୋଟିଏ ସଂଶୟ ବିଚାରଯୋଗ୍ୟ। ହନୁମାନ ଲଙ୍କାରେ ଅଗ୍ନି ସଂଯୋଗ କରି ଆସିବା ପରେ ରାବଣ ଜାଣି ଗଲାଣି ଯେ କୌଣସି ମୁହୂର୍ତ୍ତରେ ରାମ ଲଙ୍କା ପ୍ରବେଶ କରି ଆକ୍ରମଣ କରିବେ ଓ ସେଥିପାଇଁ ସେ ଆବଶ୍ୟକୀୟ ପ୍ରସ୍ତୁତି ମଧ୍ୟ କରିଥିବ। ପ୍ରଥମ ପ୍ରସ୍ତୁତି ସ୍ୱରୂପ ସେ ଶତ୍ରୁ ଉପରେ ନଜର ରଖିବା ପାଇଁ ଗୁପ୍ତଚର ନିଯୁକ୍ତ କରିଥିବ। ରାମ ଯେତେବେଳେ ଲକ୍ଷାଧିକ ବାନର ସେନା ଦ୍ୱାରା ଏତେବଡ଼ କାମ କରାଇଲେ ତାହାକୁ ଲୁଚେଇ ଛପେଇ କରାଇବା ସମ୍ଭବ ନୁହେଁ। ତାହା ରାବଣର ନଜରକୁ ଆସିବା ବହୁତ ବେଶୀ ସମ୍ଭବ। ତାପରେ ରାବଣର ଅସୁର ସାମ୍ରାଜ୍ୟ ଆଜିର ନାସିକ ଠାରୁ ଓଡ଼ିଶାର ଦଣ୍ଡକାରଣ୍ୟ ଦେଇ ଭାରତରେ ଦକ୍ଷିଣ ସମୁଦ୍ର କୂଳ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା। ଏ ଅଞ୍ଚଳରେ ତା'ର ସାମନ୍ତମାନେ ରହି ବିଶାଳ ଭୂଖଣ୍ଡର ଦାୟିତ୍ୱ ନେଇଥିଲେ। ସେମାନେ ରାବଣକୁ ଏ ଗତିବିଧି, ପ୍ରସ୍ତୁତି, ନିର୍ମାଣ ସମ୍ପର୍କରେ ସତର୍କ ନିଶ୍ଚିତ କରିଥିବେ। ତେବେ ରାବଣ ଚୁପ୍‌ଚାପ୍ ରହି ରାମଙ୍କୁ ଏତେ ବଡ଼ ସେତୁ ନିର୍ମାଣ କରିବାକୁ ନିର୍ବିଘ୍ନରେ ଛାଡ଼ିଦେଲା କିପରି? ଯୁଦ୍ଧ ତ ସେତୁ ନିର୍ମାଣ ଆରମ୍ଭରୁ ସେ ଆରମ୍ଭ କରି ଦେଇଥାନ୍ତା। ରାମଙ୍କୁ ଲଙ୍କାରେ ପ୍ରବେଶ ପାଇଁ ପ୍ରଥମରୁ ବାଧା ଦେବା ଯେକୌଣସି ପ୍ରତିପକ୍ଷ ପକ୍ଷରେ ଉପଯୁକ୍ତ ସାମରିକ କୌଶଳ ହୋଇଥାଆନ୍ତା। ମାତ୍ର ସେପରି ହୋଇନାହିଁ। ଧରି ନିଅନ୍ତୁ ରାମ ତଥା ଅନ୍ୟାନ୍ୟ ବୀରଙ୍କ ତତ୍ତ୍ୱାବଧାନରେ ସମ୍ପୂର୍ଣ୍ଣଭାବେ ସୁରକ୍ଷିତ ହୋଇ ଭାରତ ପଟର କାମ ଚାଲିଲା। ଅନ୍ତତଃ ଲଙ୍କାପଟେ ସେତୁ ଲଗାଇବା କାମ ବେଳକୁ ରାବଣ ବାଧା ଦେଇ ପାରିଥାନ୍ତା ଓ ତାହା ରାମଙ୍କୁ ଓ ତାଙ୍କ ସେନାଙ୍କୁ ବେଶ୍ ଅସୁବିଧାରେ ପକାଇଥାଆନ୍ତା ଓ କ୍ଷତିଗ୍ରସ୍ତ କରାଇଥାଆନ୍ତା। ସେପରି କିଛି

ହୋଇନାହିଁ । ରାବଣ ଲଙ୍କାଗଡ଼ରେ ନାହିରେ ତେଲ ପକାଇ ବସି ରହିଛି । ରାମଙ୍କୁ ଏକ ବିଶାଳ ବାହିନୀ ଧରି ସମୁଦ୍ରରେ ସେତୁ ବାନ୍ଧି ଲଙ୍କାରେ ପ୍ରବେଶ କରିବା ପର୍ଯ୍ୟନ୍ତ ନିଶ୍ଚିନ୍ତ ନିର୍ଭୟ ହୋଇ ବସି ରହିବା ସାଧାରଣ ପାଠକର ବିଚାରକୁ ଆନ୍ଦୋଳିତ କରିବା ସ୍ୱାଭାବିକ । ରାବଣ ପରି ପରାକ୍ରମୀ, କୁଶଳୀ ସାମରିକ ଶକ୍ତି ପକ୍ଷରେ ଏହା ଘଟିଥିବା ସମ୍ଭବ ମନେ ହୁଏନା ।

ତେବେ ସେତୁବନ୍ଧଟି କାହାର କୃତି ଓ ରାମଙ୍କ ବିଶାଳ ସେନା ସେପଟକୁ ଗଲେ କିପରି ? ଏଠାରେ ଆମେ କହି ରଖୁଛୁ ଯେ ସେତୁବନ୍ଧର ସ୍ଥିତି ସମ୍ପର୍କରେ ଆମର ସଂଶୟ ନାହିଁ । ତାହା ଥିଲା ଏହି ସିଦ୍ଧାନ୍ତ ନେଇ ଆମେ ଚାଲିଛୁ ।

ପାଠକମାନଙ୍କୁ ପୁରୁଣା କଥାକୁ ଫେରାଇ ନେଉଛି । ଯାହା ଆଗରୁ କହିଛି -- ରାବଣ ଯଦିଓ ଲଙ୍କାରେ ରାଜୁତି କରୁଥିଲା ତା'ର ସାମ୍ରାଜ୍ୟ ଆଜିର ନାସିକଠାରୁ କୁମାରିକା ପର୍ଯ୍ୟନ୍ତ ଲମ୍ବିଥିଲା । ସେହି ବିଶାଳ ଭୂଖଣ୍ଡରେ ଅନ୍ୟାନ୍ୟ କେତେକ ସ୍ୱାଧୀନ ରାଜ୍ୟ ମଧ୍ୟ ରହିଥିଲେ । ଯଥା, ବାଳୀର ସାମ୍ରାଜ୍ୟ । ସେମାନଙ୍କ ସାମ୍ରାଜ୍ୟ ନିଜ ରାଜ୍ୟରେ ମିଶାଇବାକୁ ଯେ ରାବଣ ଚେଷ୍ଟା କରିନଥିଲା ତା ନୁହେଁ, ମାତ୍ର ସେ ରାଜ୍ୟଗୁଡ଼ିକ ସମପରିମାଣରେ ଶକ୍ତିଶାଳୀ ଥିଲେ, ତେଣୁ ରାବଣ ସେ ଦିଗରେ ଅଧିକ ଚେଷ୍ଟା କରିନଥିଲା । ସେହି ସ୍ୱାଧୀନ ରାଜ୍ୟ କେତୋଟିକୁ ଛାଡ଼ି ଦେଲେ ମଧ୍ୟ ଯେଉଁ ବିଶାଳ ଅଞ୍ଚଳ ରାବଣର କରାୟତରେ ଥିଲା, ସେଗୁଡ଼ିକ ତା'ର ସିଧାସଳଖ କର୍ତ୍ତୃତ୍ୱରେ ଶାସିତ ହେଉଥିଲା । ଖର, ଦୂଷଣ, ସୁବାହୁ ପ୍ରଭୃତି ସାମନ୍ତମାନେ ଏ ଅଞ୍ଚଳଗୁଡ଼ିକରେ ଶାସନ ଚଳାଉଥିଲେ । ଯେଉଁ ଦୁର୍ବଳ ଜନବସତି କେତୋଟି ଗାଁ ଗାଁ ଥିଲା, ଯେଉଁ ମୁନିଋଷିମାନେ ଆଶ୍ରମ ସ୍ଥାପନ କରି ସେ ଅଞ୍ଚଳରେ ଶିକ୍ଷା ଓ ସଭ୍ୟତାର ପ୍ରସାର କରାଉଥିଲେ ସେମାନଙ୍କୁ ସେଠାରୁ ବିତାଡ଼ନ ପାଇଁ ଏମାନେ ମଝିରେ ମଝିରେ ତାଙ୍କୁ ଆକ୍ରମଣ କରୁଥିଲେ । ସେକଥା ପଛକୁ ଥାଉ । ବର୍ତ୍ତମାନ ଏତେବଡ଼ ଭୂଖଣ୍ଡକୁ ଶାସନ କରିବାକୁ, ନିଜ ଅକ୍ତିଆରରେ ରଖିବାକୁ ରାବଣ ସେଠାରେ ଲକ୍ଷ ଲକ୍ଷ ନହେଲେ ମଧ୍ୟ ବହୁତ ସହସ୍ର ସୈନ୍ୟ ସେନାପତି ମହଜୁଦ ରଖିଥିବ । ସେମାନେ ଲଙ୍କାରୁ ସାମୟିକ ଭାବେ ସେଠାକୁ ଯାଇଥିବେ । ସେମାନେ ସେମାନଙ୍କର ପରିବାର ନେଇ ସେଠାରେ ରହୁଥିବା ସମ୍ଭବ । ସେମାନଙ୍କ ବ୍ୟତୀତ ସ୍ଥାନୀୟ ଆଦିମ ସଂପ୍ରଦାୟ ମଧ୍ୟରୁ ଯେଉଁମାନେ ଦସ୍ୟୁ, ଅସୁର, ଦୈତ୍ୟ ଶ୍ରେଣୀଭୁକ୍ତ, ରାବଣ ସେମାନଙ୍କୁ ନିଜ ବାହିନୀରେ ସାମିଲ କରିଥିବ ଏବଂ ତା'ର ସାମ୍ରାଜ୍ୟର ବିଭିନ୍ନ କୋଣରେ ସେମାନେ ବସତି କରାଇଥିବ । ଏସବୁ ରାବଣର ଆର୍ଯ୍ୟାବର୍ତ୍ତ ଦଖଲର ସପ୍ନ ସାକାର ପାଇଁ ଦରକାର ଏବଂ ଏହି ସାମରିକ କୌଶଳ ସେ ଅନୁସରଣ କରିଥିବ ।

ଯେଉଁମାନେ ମୂଳ ଲଙ୍କା ଭୂଖଣ୍ଡରୁ ରାବଣର ଭାରତରେ ବିଶାଳ ଉପନିବେଶକୁ କାମ କରିବାକୁ ଯାଇଥିବେ ସେମାନେ ବର୍ଷକେ ଥରେ ଅଧେ ଲଙ୍କାକୁ ଫେରିବାକୁ ଚାହୁଁଥିବେ । ଘରେ ପରିବାରରେ ବନ୍ଧୁବାନ୍ଧବ ଯେଉଁମାନେ ମୂଳ ଲଙ୍କାରେ ରହିଲେ ସେମାନଙ୍କର ଉତ୍ସବ ଅନୁଷ୍ଠାନରେ ଯୋଗ ଦେବା ପାଇଁ ବାରମ୍ବାର ଯିବା ଆସିବା ଦରକାର ହେଉଥିବ ।

(ଯେପରି ଆମେରିକା ସୈନ୍ୟ, ଆଫଗାନିସ୍ଥାନରେ ଲଢ଼ାଇ କରିବା ସହିତ, ବାରମ୍ବାର ନିଜ ଦେଶକୁ ଫେରୁଛନ୍ତି) ଏହା ବ୍ୟତୀତ ଯେଉଁମାନେ ଦଣ୍ଡକ ଅଞ୍ଚଳରୁ ପ୍ରଥମ କରି ସୈନ୍ୟବାହିନୀରେ ମୁକରିର ହୋଇଥିବେ ସେମାନଙ୍କୁ ଯୁଦ୍ଧ କୌଶଳ ଶିକ୍ଷା ଦେବା ପାଇଁ ଲଙ୍କାକୁ ମଝିରେ ମଝିରେ ଡ଼କାଯାଉଥିବ। ବିଶେଷ ଉତ୍ସବମାନଙ୍କରେ ରାବଣ ତା'ର ଗାରିମା ଦେଖାଇବା ପାଇଁ ବିଶେଷ ଆୟୋଜନ କରି ସୈନ୍ୟ, ସାମନ୍ତ, ସେନାପତିଙ୍କୁ ଉପନିବେଶରୁ ସୁବର୍ଣ୍ଣ ଲଙ୍କାକୁ ବୁଲି ଆସିବାର ସୁଯୋଗ ଦେଉଥିବ। ଯେକୌଣସି ସୁଶାସକ ଏପରି କୌଶଳ କରି ନିଜ ସୈନ୍ୟସାମନ୍ତଙ୍କର ମନୋବଳ ଦୃଢ଼ କରିବା ପ୍ରୟାସ ସ୍ୱାଭାବିକ। ଏହା ବ୍ୟତୀତ ଉପନିବେଶ ଅଞ୍ଚଳରୁ ବିଭିନ୍ନ ଶସ୍ୟ ସମ୍ପଦ ଲଙ୍କାକୁ ପଠାଯାଉଥିବ। ଲଙ୍କାରୁ କେତେକ ଆବଶ୍ୟକ ପଦାର୍ଥ ତଥା ଅସ୍ତ୍ରଶସ୍ତ୍ର ଉପନିବେଶକୁ ଆସୁଥିବ। ଯେପରି ଇଂରେଜ ଶାସନ ସମୟରେ ଭାରତରୁ ଅନେକ କଞ୍ଚାମାଲ ବ୍ରିଟେନ ଯାଉଥିଲା ଓ ବିକ୍ରିଯୋଗ୍ୟ ପଦାର୍ଥ ସେଠାରୁ ଭାରତକୁ ଆସୁଥିଲା।

ତେବେ ବର୍ତ୍ତମାନ ପ୍ରଶ୍ନ ହେଉଛି ଏଇ ଦୁଇ ବିଶାଳ ଭୂଖଣ୍ଡ ମଧ୍ୟରେ ଆଦାନ ପ୍ରଦାନ ଯାତାୟାତ ନିୟମିତ ଭିତ୍ତିରେ ହେଉଥିଲା କିପରି? ସମୁଦ୍ର ପାର ହୋଇ ସାଧାରଣ ଲୋକ ଯିବା ଆସିବା କରୁଥିଲେ କିପରି? ସାମଗ୍ରୀ ପରିବହନ ଦୁଇ ଅଞ୍ଚଳ ଭିତରେ ହେଉଥିଲା କିପରି? ରାବଣର ପୁଷ୍ପକ ବିମାନ ଥିଲା। ସେ ଆକାଶରେ ଉଡ଼ି ଚାଲି ଯାଉଥିଲା। ମାତ୍ର ସାଧାରଣ ଜନତାଙ୍କ ପାଖରେ ସେ ସୁବିଧା ନଥିଲା। ସେମାନେ ସ୍ଥଳ/ଜଳ ଭାଗରେ ନିର୍ଭର କରୁଥିବେ ନିଶ୍ଚୟ। ଆଜିକାର କଥା ଦେଖାଯାଉ। ସମସ୍ତେ କ'ଣ ଆଜି ଯେତେ ଦରକାର ଥିଲେ ମଧ୍ୟ ପୁଷ୍ପକ ବିମାନ (ବ୍ୟୋମଯାନ) ବ୍ୟବହାର କରିପାରୁଛନ୍ତି? ଅଧିକାଂଶଙ୍କୁ ସ୍ଥଳ ଭାଗ ଗାଡ଼ି, ମଟର ଉପରେ ନିର୍ଭର କରିବାକୁ ପଡୁଛି।

ଏସବୁ ଅସୁବିଧା ରାବଣ ଆଖିରେ ଯେ ପଡ଼ି ନଥିବ ସେପରି ନୁହେଁ। ସେ ସୁଶାସକ, ତେଣୁ ତା'ର ସାମ୍ରାଜ୍ୟ ରକ୍ଷା ପାଇଁ କଣ କଣ ମୌଳିକ ସୁବିଧା ଦରକାର ତାହା ସେ ଉପଲବ୍ଧି କରିଥିବ। ଗମନାଗମନର ସୁବିଧା  ଯେ ସାମ୍ରାଜ୍ୟ ରକ୍ଷା ପାଇଁ ଏକ ପ୍ରମୁଖ ଆବଶ୍ୟକତା ସେ ବୁଝିଥିବ। ଏହାକୁ ଆଖି ଆଗରେ ରଖି ସେ ନିଜେ ସେତୁଟି ନିର୍ମାଣ କରିଥିବ। ତାହା ପାଖରେ ଧନ ଥିଲା, ଜନ ଥିଲା, ମନ ଥିଲା। ତେଣୁ ସେ ସେତୁ କରିପାରିବା ସମ୍ଭବ। ତା'ପାଖରେ ଯନ୍ତ୍ରୀର ଅଭାବ ନଥିଲେ। ତେଣୁ ନିଜ ସାମ୍ରାଜ୍ୟର ଉତ୍ତମ ପ୍ରତ୍ୟକ୍ଷ ଶାସନ ଓ ସୁରକ୍ଷା ପାଇଁ ରାବଣ ହିଁ ସେତୁବନ୍ଧଟି କରିଥିଲା। (ବି.ଦ୍ର: ଆଜି ମଧ୍ୟ ଲଙ୍କାରେ ଏହାକୁ ରାବଣ ସେତୁ ବୋଲି କୁହାଯାଏ। ଲଙ୍କାରେ କ'ଣ କୁହନ୍ତି ତାହାର ଆଲୋଚନା ବା ଯଥାର୍ଥତା ପ୍ରତିପାଦନ ମୋର ଉଦ୍ଦେଶ୍ୟ ନୁହେଁ।) ମାତ୍ର ସେତୁବନ୍ଧର ନିର୍ମାଣକାରୀ କିଏ, ଏଇଟି କାହାର କୃତି, ତାହା ହିଁ ମୋର ଆଲୋଚନାର ପ୍ରସଙ୍ଗ ଓ ମୋ ମତରେ ଏଇଟି ରାବଣର କୃତି ହୋଇଥିବା ଯୁକ୍ତିଯୁକ୍ତ ଓ ଅଧିକ ସମ୍ଭବ।

ବର୍ତ୍ତମାନ ବିଚାରକୁ ଆସୁଛି ରାମ ତେବେ ଏତେ ସ୍ୱଳ୍ପ ସମୟ ଭିତରେ ଏତେ ବଡ଼ ସୈନ୍ୟ ବାହିନୀ ନେଇ ଏ ସମୁଦ୍ରକୁ ପାରି ହେଲେ କିପରି ଏବଂ ରାବଣ ସୀତାଙ୍କୁ

ଦେଇଥିବା କଣ୍ଠ ସମୟ ଭିତରେ ସୀତାଙ୍କୁ ଉଦ୍ଧାର କରିବା ପାଇଁ ଲଙ୍କାରେ ପହଞ୍ଚି ପାରିଲେ କିପରି ?

ଭାରତର ଦକ୍ଷିଣତମ ଉପକୂଳ ସୀମାରୁ ଲଙ୍କାର ଦୂରତ୍ୱ ମଧ୍ୟରେ ସବୁଠାରୁ ନିକଟତମ ଦୂରତ୍ୱ ଆସୁଛି ବାଇଶ/ଚବିଶ କି.ମି. ଭିତରେ । ଏହା ବର୍ତ୍ତମାନ ସମୟର ଅବସ୍ଥା । ଆମେ ସେଇ ଦୂରତ୍ୱକୁ ଗ୍ରହଣ କରି ଆମ ବିଚାର ଉପସ୍ଥାପନ କରୁଛୁ । ସେ ସମୟରେ ସମୁଦ୍ର ଉପକୂଳ ଅତ୍ୟନ୍ତ ଘଞ୍ଚ ଅରଣ୍ୟରେ ପୂର୍ଣ୍ଣ ଥିଲା ବୋଲି ପୁରାଣରେ ବିଭିନ୍ନ ବର୍ଣ୍ଣନାରୁ ଆମେ ଯାଣୁଛୁ । ତା ବ୍ୟତୀତ ସମୁଦ୍ର ଭିତରେ କୂଳରୁ କିଛି ବାଟ ହେନ୍ତାଳ ବଣ, ନଳ ବଣର ଘଞ୍ଚ ଅରଣ୍ୟ ଥିବା ବହୁତ ସମ୍ଭବ । ଆଜି ଏତେ ମନୁଷ୍ୟକୃତ କ୍ଷୟକ୍ଷତି ପରେ ଯଦି ଘଞ୍ଚ ହେନ୍ତାଳ ବଣ ରହିଛି ଆଉ କ୍ରମବର୍ଦ୍ଧମାନ ହୋଇ ସମୁଦ୍ରର ଭୀଷଣ ଲହଡ଼ିକୁ ଶାନ୍ତ କରିପାରୁଛି, ସେତେବେଳେ ଯେଉଁ ସମୟରେ ମନୁଷ୍ୟର ଲୋଭ ଆଉ ଅବିଚାର ଏପରି ସର୍ବଗ୍ରାସୀ ନଥିଲା, ସେତେବେଳର ବଣର ଘଞ୍ଚତା ଏବଂ ସମୁଦ୍ର ମଧ୍ୟକୁ ଏହାର ବ୍ୟାପ୍ତି ସହଜରେ ଅନୁମାନ କରାଯାଇପାରେ । ମ୍ୟାପ୍‌କୁ ଆଖି ପକାଇଲେ ଦେଖାଯାଏ ଭାରତ ଓ ଲଙ୍କା ମଧ୍ୟରେ ଦୂରତା ଯେଉଁଠି ସବୁଠାରୁ କମ୍, ସେହି ଦୂରତାର ମଧ୍ୟ ମଝି ମଝିରେ ଟାପୁ/ ସ୍ଥଳଭାଗ କେତେକ ରହିଛି । ହୁଏତ ଏହିପରି ଗୋଟାଏ ପଥରେ ରାବଣର ଅଗୋଚରରେ ରାମ କିଛି ସୈନ୍ୟ ଅପର ପଟକୁ ପ୍ରେରଣ କରି ରାବଣ ସେତୁକୁ ଷଣ୍ଢୁଆସି ଆକ୍ରମଣ କରି ଅକ୍ତିଆର କରିବାରେ ସାହାଯ୍ୟ କରିଥାଇପାରେ । ବାନର ସେନା ମଧ୍ୟରୁ ଅନେକ ବଛା ବଛା ଯୋଦ୍ଧା ସେଇ ସର୍ବ ନିମ୍ନ ଦୂରତାକୁ ହେନ୍ତାଳ ବଣ ଭିତରେ ଡ଼େଇଁ/ନଳ ବଣ ଭିତରେ ଲୁଚି ଲୁଚି କିଛି କିଛି ଅଗଭୀର ସାଗର ଅଞ୍ଚଳ ପହଁରି ରାବଣର ଗୁପ୍ତଚରମାନଙ୍କର ଅଗୋଚରରେ ଲଙ୍କା ପଟକୁ ପାରି ହୋଇ ସେ ପଟର ଘଞ୍ଚ ଅଞ୍ଚଳରେ ଆତ୍ମଗୋପନ କରି ବାନର ସେନାପତିଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରିଛନ୍ତି ।

ବରୁଣ ଦେବତା ରାମଙ୍କୁ ସାହାଯ୍ୟ କରିବାକୁ ଯାଇ ସମୁଦ୍ରର ଗଭୀରତା କମାଇ ଦେବାକୁ ଘୋଷଣା ଏଠାରେ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ସର୍ବନିମ୍ନ ଦୂରତ୍ୱର ରାସ୍ତା ଯାହା ରାମ ବାଛିଛନ୍ତି ତାହାର ମଝି ମଝିରେ ଟାପୁ ଓ ସ୍ଥଳ ଭାଗ ଅଛି । ହେନ୍ତାଳବଣ ନଳବଣ ଓ ଘୋର ଜଙ୍ଗଲ ହେତୁ ସମୁଦ୍ରର ଭୀଷଣତା ସେଠାରେ ନାହିଁ । ଗଭୀରତା ସେ ସବୁ ଅଞ୍ଚଳରେ କମ୍ । ଏହାହିଁ ବରୁଣଙ୍କ ଆଶୀର୍ବାଦ ବା ସାହାଯ୍ୟର ସ୍ୱରୂପ ।

ରାମଙ୍କ ଉଦ୍ଦେଶ୍ୟ ରହିଛି, ରାବଣ ସେତୁକୁ ଅକ୍ଷତ ଅବସ୍ଥାରେ ଅକ୍ତିଆର କରିବା ଓ ତାକୁ ବ୍ୟବହାର କରି ବିଶାଳ ସୈନ୍ୟଙ୍କୁ ସମୁଦ୍ର ପାରି କରିବା । କାରଣ ହେନ୍ତାଳ ବଣ ଦେଇ ଡ଼େଇଁ ପହଁରି କେତେ ଶହ ସୈନ୍ୟ ହୁଏତ ଯାଇପାରିବେ, ଗୁପ୍ତଚରର ଅଗୋଚରରେ । ମାତ୍ର ଲକ୍ଷ ଲକ୍ଷ ସୈନ୍ୟ ଅସ୍ତ୍ର ଶସ୍ତ୍ର ଧରି, ଖାଦ୍ୟ ପଦାର୍ଥ ଧରି ଯିବା ସମ୍ଭବ ନୁହେଁ । ଏହାହିଁ ରାମଙ୍କ କୌଶଳ, ରଣନୀତି । କିଛି ବଛା ବଛା ସୈନ୍ୟ ରାତ୍ରିର ଅନ୍ଧକାର ଆଉ ହେନ୍ତାଳ ବଣ ଓ ନଳ ବଣ ମଧ୍ୟ ଦେଇ ଲଙ୍କା କୂଳରେ ମେଣ୍ଟ ବାନ୍ଧି ସେତୁକୁ ଲଙ୍କା ପଟୁ ଆକସ୍ମିକ ଆକ୍ରମଣ କରି ଅକ୍ତିଆର କରିବାକୁ ସେନାପତିଙ୍କର

ନିର୍ଦ୍ଦେଶକୁ ଅପେକ୍ଷା କରିଛନ୍ତି ।

ରାମଙ୍କ ରଣକୌଶଳ ଦେଖନ୍ତୁ । ଭାରତ ପଟେ ସୈନ୍ୟ ଠୁଳ କରି ପୂଜା ହୋମ କରି ଈଶ୍ୱରଙ୍କ ଆଶୀର୍ବାଦକୁ ଅପେକ୍ଷା କରୁଛନ୍ତି କିପରି ସମୁଦ୍ର ପାର ହେବେ । ସେପଟେ କିଛି ଶହ ସୈନ୍ୟଙ୍କୁ ଲୁଚେଇ ଲଙ୍କାପଟକୁ ପଠାଇଛନ୍ତି ।

ଏସବୁ ରାବଣର ଗୁପ୍ତଚରମାନଙ୍କର ଅଗୋଚରରେ ହୋଇଛି । ରାମଙ୍କ ପୂଜା, ପାଠ, ଆରାଧନା ଆଲୋଚନା ଓ ବିଶାଳ ସୈନ୍ୟ ସମାବେଶର ଖବର ରାବଣ ଦୈନନ୍ଦିନ ଭିତ୍ତିରେ ସଂଗ୍ରହ କରୁଛି ଏବଂ ରାମ ଯେ ସମୁଦ୍ର ପାର ହୋଇ ପାରୁ ନାହାନ୍ତି ତାହା ଧରିନେଇ କିଛିଟା ଆତ୍ମସନ୍ତୋଷରେ ଅଛି । ଏପଟେ ରାବଣକୁ ଭୁଲାଇ ରଖି ସେତୁବନ୍ଧର ଲଙ୍କାପଟୁ ତା'ର ସୁରକ୍ଷା ଦାୟୀତ୍ୱରେ ଥିବା ରାବଣର ସୈନ୍ୟମାନଙ୍କୁ ବାନର ସେନା ଘେରି ଯାଇଛନ୍ତି । ଏପଟେ ଭାରତ ପଟେ ବାନର ସେନା ସେତୁ ରକ୍ଷା କରିବାକୁ ଥିବା ରାକ୍ଷସ ସେନାଙ୍କୁ ଆକ୍ରମଣ କରିଛନ୍ତି । ଦୁଇପଟୁ ଆକ୍ରମଣ ଓ ଅତର୍କିତ ଆକ୍ରମଣ ହେତୁ, ସୁରକ୍ଷା ଦାୟୀତ୍ୱରେ ଥିବା ସହ୍ମ ସଂଖ୍ୟକ ସେନା ସେତୁକୁ ଶତ୍ରୁ ହାତରେ ଛାଡ଼ି ଦେଇ ପଳାଇବାକୁ ବାଧ୍ୟ ମନେ କରିଛନ୍ତି । କାରଣ ବାନର ସେନା ଘେରରେ ରହିଯାଇଥିବାରୁ ଆଉ କାହାରି ସାହାଯ୍ୟ ପାଇବାର ଆଶା ନାହିଁ ବୋଲି ସେମାନେ ବୁଝି ପାରିଛନ୍ତି । ଅଧିକ ବିଳମ୍ବ ବରଂ ମୃତ୍ୟୁକୁ ଡାକି ଆଣିବ । ଏ ବିଚାର ଓ ସିଦ୍ଧାନ୍ତ ପରେ ପଳାୟନକାରୀ ସେନା ସଚରାଚର ଯାହା କରାଯାଏ ତାହାହିଁ କରିଛନ୍ତି । ରାମଙ୍କ ସେନାକୁ ଯଥାସମ୍ଭବ ସାଗର ପାରି ହେବାରେ ବାଧା ଦେବା ପାଇଁ, ଯେତେ ପାରନ୍ତି ସେତୁର କ୍ଷତି ପହଞ୍ଚାଇଛନ୍ତି । ଗମନାଗମନ ପଥକୁ ନଷ୍ଟ କରିଦେବା, ଖାଦ୍ୟ, ଅସ୍ତ୍ର ଗୋଦାମରେ ନିଆଁ ଲଗାଇଦେବା, ଏସବୁ ଆଜି ମଧ୍ୟ ସାମରିକ କୌଶଳର ଏକ ସୀକୃତ ନୀତି । ସେତୁକୁ ଛାଡ଼ି ଦେଇ ପଳାୟନ ସମୟରେ ରାମଙ୍କ ଗତି ମନ୍ଥର କରିବା ପାଇଁ ସେମାନେ ଯେତେଦୂର ପାରିଛନ୍ତି ସେତୁର କ୍ଷତି ଘଟାଇଛନ୍ତି । ସମ୍ପୂର୍ଣ୍ଣ ଭାଙ୍ଗି ପାରିନାହାନ୍ତି । ରାମ ସେଇ କ୍ଷତିଗ୍ରସ୍ତ ସେତୁକୁ ମାତ୍ର ଦିନ କେଇଟା ଭିତରେ ମରାମତି କରିଦେଇ ଆଗେଇ ଯାଇଛନ୍ତି ଓ କଣ୍ଢ ସମୟ ମଧ୍ୟରେ ଲଙ୍କାରେ ପହଞ୍ଚି ଯାଇଛନ୍ତି ।

# ରାବଣ

ବ୍ରହ୍ମାଙ୍କ ପୁତ୍ର ପୁଲସ୍ତ୍ୟ ଓ ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବା ଋଷି । ଉଚ୍ଚ କୁଳ ସମ୍ଭୂତ । ସୁମାଳୀ, ଦୈତ୍ୟମାନଙ୍କର ମୁଖ୍ୟ, ତା'ର କନ୍ୟା କୈକେଶୀ ପାଇଁ ପାତ୍ର ଅନ୍ୱେଷଣ କରିଛି । ନିଜ କୁଳରେ ସେପରି କେହି ଯୋଗ୍ୟ ପାତ୍ର ତା ନଜରକୁ ଆସି ନାହାନ୍ତି । କୈକେଶୀକୁ ସେ ସାଧୀନତା ଦେଇଛି, ତା' ନିଜ ପାଇଁ ସାମୀ ନିର୍ବାଚନ କରିବାକୁ । ମାତ୍ର ସର୍ତ୍ତ ରଖିଛି ଯେ ସର୍ବଗୁଣସମ୍ପନ୍ନ, ଉଚ୍ଚକୁଳସମ୍ଭୂତ ହୋଇଥିବା ଦରକାର । କୈକେଶୀ ବିଶ୍ରବା ଋଷିଙ୍କୁ ନିର୍ବାଚନ କରିଛି । ଅସୁର କୁଳର ଚାଲିଚଳଣ ଅନୁଯାୟୀ ସେ ନିଜେ ଯାଇ ବିଶ୍ରବା ଋଷିଙ୍କୁ ବିବାହ ପ୍ରସ୍ତାବ ଦେଇଛି । ରୂପବତୀ କୈକେଶୀର ପ୍ରସ୍ତାବ ଋଷି ବିଶ୍ରବା ଗ୍ରହଣ କରିଛନ୍ତି । ମାତ୍ର ତାକୁ କହିଛନ୍ତି ଯେ ଯେଉଁ କ୍ଷଣରେ ସେ ଏ ପ୍ରସ୍ତାବ ଦେଲା, ତାହା ବିବାହ ପ୍ରସ୍ତାବ ପାଇଁ ଉପଯୁକ୍ତ ବେଳା ନଥିଲା । ତା' ଫଳରେ ତା'ଠାରୁ ଜନ୍ମିତ ସନ୍ତାନମାନେ ଅପରାଧପ୍ରବଣ ତଥା ସେମାନଙ୍କର ଅସାଭାବିକ ଶାରୀରିକ ମାନସିକ ଗଠନ ହେବାର ଆଶଙ୍କା ରହିବ । ସେ ଯାହାହେଉ ବିଶ୍ରବାଙ୍କୁ ସୁମାଳୀ ମଧ ପସନ୍ଦ କରିଛି ଓ ବିବାହ ହୋଇ ଯାଇଛି । ବିଶ୍ରବାଙ୍କ ଗୋଟିଏ ପୁତ୍ର ମଧ ପୂର୍ବ ପତ୍ନୀଠାରୁ ରହିଛି, କୁବେର । କୈକେଶୀ ଔରସରୁ ତିନୋଟି ପୁତ୍ର ରାବଣ, ବିଭୀଷଣ, କୁମ୍ଭକର୍ଣ୍ଣ ଓ କନ୍ୟା ସୂର୍ପଣଖା ଜନ୍ମ ହୋଇଛନ୍ତି ।

ରାବଣ ବ୍ରାହ୍ମଣ ପିତାଙ୍କ ସନ୍ତାନ । ପିତାଙ୍କ ପାଖରେ ରହି ସମସ୍ତ ବିଦ୍ୟା ଅଧୟନ କରିଛି । ବେଦ, ଯାଗଯଜ୍ଞ ଏ ସବୁରେ ସେ ପାରଦର୍ଶୀତା ଅର୍ଜନ କରିଛି । ସଂସ୍କୃତରେ ପାଣ୍ଡିତ୍ୟ ଅର୍ଜନ କରିଛି । ଅସ୍ତ୍ର, ଶସ୍ତ୍ର ଇତ୍ୟାଦିରେ ମଧ ନିପୁଣ । ଆୟୁର୍ବେଦରେ ଅନେକ ମଧ ଅଧୟନ କରିଛି ଓ ନିପୁଣତା ଅର୍ଜନ କରିଛି । ପିଲାମାନଙ୍କୁ ଶିଶୁ ଅବସ୍ଥାରେ ହେଉଥିବା ରୋଗ ଓ ତା'ର ଚିକିତ୍ସା ଉପରେ ଏକ ନିର୍ଭରଯୋଗ୍ୟ ପୁସ୍ତକ ରଚନା କରି ପତ୍ନୀ ମନ୍ଦୋଦରୀକୁ ଉପହାର ଦେଇଛି । ଗୋମାଂସ ଭକ୍ଷଣରେ ଅଠାନବେ ନୂଆ ରୋଗ ସୃଷ୍ଟି ହୁଏ ଓ ତା'ଉପରେ ଗବେଷଣା କରି ସେ ପୁସ୍ତକ ରଚନା କରିଛି । ସେ ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ଏବଂ ବିଶିଷ୍ଟ ବୀଣାର ସେ ଉଦ୍ଭାବକ । ଅନେକ 'ରାଗ'ର ସେ ସ୍ରଷ୍ଟା । ବୈଷୟିକ ବିଜ୍ଞାନରେ ସେ ପାରଙ୍ଗମ । ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗ କରି

ଲଙ୍କାରେ ସୁନ୍ଦର ସୁନ୍ଦର ପ୍ରାସାଦ ଗଢ଼ିଛି । ପୁଷ୍ପକ ବିମାନକୁ ନିଜ ପାଖରେ ରଖିଛି । ଲଙ୍କା-ଭାରତ ମଧ୍ୟରେ ସେତୁ ନିର୍ମାଣ କରିଛି । (ଲଙ୍କାର ଗବେଷକଙ୍କ ମତରେ ସେତୁଟି ରାବଣ ଦ୍ୱାରା ନିର୍ମିତ । ଲଙ୍କାରେ ଆଜି ମଧ୍ୟ ଏହାକୁ ରାବଣ ସେତୁ କୁହାଯାଏ ।)

ବର୍ତ୍ତମାନ ସ୍ୱାଭାବିକ ମନରେ ପ୍ରଶ୍ନ ଆସେ ଯେ ବ୍ୟକ୍ତି ଉଚ୍ଚ ଶିକ୍ଷିତ, ଉଚ୍ଚ ଆର୍ଯ୍ୟକୁଳସମ୍ଭୂତ, ଅନେକ ଶସ୍ତ୍ର ଓ ସୂକ୍ଷ୍ମକଳାରେ ବିଶାରଦ ସେ ଏପରି ଆର୍ଯ୍ୟ ବିରୋଧୀ ହେଲା କିପରି ଓ କାହିଁକି ? ପିତାଙ୍କ ଆଡୁ ସେ ଉଚ୍ଚକୁଳ ବ୍ରାହ୍ମଣ ସନ୍ତାନ । ମାତ୍ର ମାତୃପକ୍ଷରୁ ସେ ରାକ୍ଷସ ସନ୍ତାନ । ତେଣୁ ହୁଏତ ଏ ଅଧୋପତନ ।

ଦ୍ୱିତୀୟରେ କୈକେଶୀ ଯେତେବେଳେ ବିବାହ କରିବା ପାଇଁ ବିଶ୍ରବା ଋଷିଙ୍କୁ ପ୍ରସ୍ତାବ ଦେଲେ, ଋଷି ସ୍ୱୀକାର ତ କଲେ ମାତ୍ର ପ୍ରସ୍ତାବ କ୍ଷଣଟି ଅଶୁଭ କ୍ଷଣ ହୋଇଥିବାରୁ ସନ୍ତାନଗୁଡ଼ିକ ଅପରାଧ ପ୍ରବଣ ମନୋବୃତ୍ତି ଓ କିଛିଟା ଅସ୍ୱାଭାବିକ ଚରିତ୍ରର ହେବେ ବୋଲି କହିଥିଲେ । ସେହି ଭବିଷ୍ୟତ ବାଣୀକୁ ଗ୍ରହଣ କଲେ ରାବଣ ଚରିତ୍ରର ଏହି ଅପରାଧ ମନୋଭାବ ଏକ ଅସ୍ୱାଭିକତା ଓ ପୂର୍ବ ନିର୍ଦ୍ଧାରିତ ବୋଲି ଗ୍ରହଣ କରିବାକୁ ହେବ ।

ବିଶ୍ରବା ଋଷି ଉଚ୍ଚ କୁଳ ସମ୍ଭୂତ । ଶାସ୍ତ୍ରଜ୍ଞ ସାଧକ ତଥା ତପସ୍ୱୀ । ମନେହୁଏ ଅସୁର କୁଳର କନ୍ୟା କୈକେଶୀଙ୍କୁ ବିବାହ କରିବା ଦ୍ୱାରା, ସେ ଋଷି ମହଲରେ କିଛି ମାତ୍ରାରେ ଏକଘରିକିଆ ହୋଇ ଯାଇଛନ୍ତି । ଅସୁରମାନଙ୍କୁ ଅନେକ ଲେଖକ ଯେପରି ସେମାନଙ୍କ ରଚନାରେ ଚିତ୍ରଣ କରିଛନ୍ତି, ତାହା ନିଛକ ପ୍ରଗଲ୍ଭତା, ଅତ୍ୟୁକ୍ତି ତଥା ବାହାଦୁରୀ । ସେମାନେ ସମସ୍ତ ପାପ କର୍ମ କରନ୍ତି, ଅତ୍ୟାଚାର ଧର୍ଷଣ ସେମାନଙ୍କର ଅଭ୍ୟାସ, କଞ୍ଚା ମାଂସ ଭକ୍ଷଣ କରନ୍ତି, ରକ୍ତ ପିଅନ୍ତି । ଅନାଚାରୀ, ଧର୍ମକର୍ମର ଧାର ଧରନ୍ତି ନାହିଁ । ଏ ରୂପେ ସେମାନଙ୍କୁ ଚିତ୍ରିତ କରାଯାଇଛି । ମାତ୍ର ମନେରଖିବାକୁ ହେବ ଏ ସବୁ ବର୍ଣ୍ଣନା ଅନେକ ମାତ୍ରାରେ ଅସତ୍ୟ ଓ ପ୍ରକ୍ଷିପ୍ତ । ସେମାନେ ଆର୍ଯ୍ୟେତର ଏକ ଆଦିମ ଜାତି । ମୂଳ ବାସିନ୍ଦା । ଶରୀର ଗଠନରେ ସେମାନେ ଆର୍ଯ୍ୟଙ୍କଠାରୁ ଭିନ୍ନ । ଆର୍ଯ୍ୟଙ୍କ ପରି ସେମାନେ ଉଜ୍ଜଳ ଗୌର ବର୍ଣ୍ଣର ନୁହନ୍ତି । ସେମାନେ କୃଷ୍ଣକାୟ । ବଳିଷ୍ଠ ଶରୀର । ମାତ୍ର ଶରୀର ଗଠନ ନିର୍ଭର କରେ ଜଳବାୟୁ ତଥା ପାରିପାର୍ଶ୍ୱିକ ଅବସ୍ଥା ଉପରେ । ସଭ୍ୟ, ଅସଭ୍ୟର ବିଚାର ଅନୁସାରେ ଶରୀର ଗଠନ ହୁଏନି । ଆର୍ଯ୍ୟମାନେ ହୁଏତ ସେମାନଙ୍କୁ ନିଜ ସହିତ ତୁଳନା କରି ହୀନ ଦୃଷ୍ଟିରେ ଦେଖୁଥିଲେ ମାତ୍ର ସେମାନଙ୍କ ମଧ୍ୟରେ ମଧ୍ୟ ଅନେକ ଶାସ୍ତ୍ରଜ୍ଞ, ଜ୍ଞାନୀ, ଗୁଣୀ, ବୁଦ୍ଧିମାନ, ନ୍ୟାୟବନ୍ତ ଯେ ନଥିଲେ ତା ନୁହେଁ ।

ଆର୍ଯ୍ୟ ପରମ୍ପରା ତଥା ଜୀବନଯାପନ ପ୍ରଣାଳୀ ଠାରୁ ସେମାନଙ୍କର ପରମ୍ପରା ଭିନ୍ନ ଥିଲା । ଲଙ୍କାର ଗବେଷକଙ୍କ ମତରେ କୁହାଯାଏ ରାବଣ ସମ୍ପୂର୍ଣ୍ଣ ନିରାମିଶାଷୀ ଥିଲା । ବାନର ସମ୍ପ୍ରଦାୟ କିଷ୍କିନ୍ଧା ବାସିନ୍ଦା (ମାଙ୍କଡ ନୁହନ୍ତି, ସେମାନେ ମଧ୍ୟ ଆର୍ଯ୍ୟେତର ଏକ ଆଦିମ ସମ୍ପ୍ରଦାୟ) ନିରାମିଶାଷୀ, ଫଳଭୋଜୀ ଥିଲେ । ଅସୁରମାନଙ୍କ ଭିତରୁ ଅନେକ

ବେଦ, ସଂସ୍କୃତି, ହୋମ, ଯାଗ, ଯଜ୍ଞ, ସଙ୍ଗୀତ କ୍ଷେତ୍ରରେ ଆର୍ଯ୍ୟମାନଙ୍କଠାରୁ କମ୍ ନଥିଲେ । ବୈଷୟିକ ଜ୍ଞାନରେ ଆର୍ଯ୍ୟଙ୍କଠାରୁ ସେମାନେ ଅନେକ ଆଗରେ ଥିଲେ । ଏଠାରେ କହିବାର କଥା, ସାମଗ୍ରିକ ଭାବେ ଆର୍ଯ୍ୟମାନେ ସେମାନଙ୍କୁ (ଅସୁର) କିଛିଟା ହୀନ ଦୃଷ୍ଟିରେ ଦେଖୁଥିଲେ । ସେମାନଙ୍କ ମଧ୍ୟରେ ଗୋଟାଏ ଶୀତଳ ଯୁଦ୍ଧ ହୁଏତ ଥିଲା । ତେଣୁ ବିଶ୍ରବା କୈକେଶୀଙ୍କୁ ବିବାହ କରିବା ପରେ ଅନେକ ତପସୀ ବିଶ୍ରବାଙ୍କୁ ଟିକିଏ କରଛଡା ଦେଇଥାଇ ପାରନ୍ତି । ହୁଏତ ଏଇ କରଛଡା ଭାବ ହେତୁ ବିଶ୍ରବା ଆର୍ଯ୍ୟସମାଜରେ ଯେପରି ସ୍ୱୀକୃତି ପାଇବା କଥା ତାହା ପାଇ ନାହାନ୍ତି । ଏପରି ବିଖ୍ୟାତ ପୁତ୍ର (କୁବେର/ରାବଣ)ଙ୍କର ପିତା ହେବା ସତ୍ତ୍ୱେ ତାଙ୍କର ସାଫଲ୍ୟ, ତାଙ୍କର ଆଶ୍ରମ, ତାଙ୍କ ତପ ଶକ୍ତି ସାମର୍ଥ୍ୟ ବା ସହଯୋଗୀତା ନେଇ ବିଶେଷ କିଛି କେଉଁଠି ଚର୍ଚ୍ଚା ବା ବର୍ଣ୍ଣନା ନାହିଁ । ସେ ଆଶ୍ରମ ତ କରିଥିଲେ ମାତ୍ର ତାଙ୍କ ଆଶ୍ରମ ସେପରି ଖ୍ୟାତି ହୁଏତ ପାଇ ନଥିଲା । ଆର୍ଯ୍ୟ-ଅନାର୍ଯ୍ୟ ମଧ୍ୟରେ ପରମ୍ପରା ଓ ସଂସ୍କୃତି ନେଇ ଶୀତଳ ଯୁଦ୍ଧ ହୁଏତ ଏହାର କାରଣ ହୋଇଥାଇପାରେ ।

ପିତାଙ୍କ ଆଶ୍ରମରେ ତାଙ୍କଠାରୁ ବିଦ୍ୟା ଶିକ୍ଷା ସମୟରେ ଏ ସବୁ ଅବହେଳା, ଆର୍ଯ୍ୟ ଋଷିମାନଙ୍କର ବିଶ୍ରବାଙ୍କ ପ୍ରତି କରଛଡା ଭାବ ରାବଣ ଆଖିରେ ପଡିଛି ଓ ତା ମନରେ ପ୍ରତିକ୍ରିୟା ସୃଷ୍ଟି କରିଛି । ଏହି ଅନ୍ୟାୟ ଦେଖି ସେ ସହ୍ୟ କରିପାରି ନାହିଁ ଓ ତା'ର ଆର୍ଯ୍ୟ ମୁନିଋଷିଙ୍କ ପ୍ରତି ଏକ ବିରକ୍ତି ବିତୃଷ୍ଣା ଭାବ ସୃଷ୍ଟି ହୋଇଥିବା ସମ୍ଭବ । ବିଖ୍ୟାତ ପିତାଙ୍କ ପୁତ୍ର ହୋଇ, ସମସ୍ତ ଶାସ୍ତ୍ରରେ ପଣ୍ଡିତ ହୋଇ, ଧ୍ୟାନ, ଅଧ୍ୟୟନ, ଶିକ୍ଷାଦାନ, ହୋମଯଜ୍ଞରେ ନିପୁଣ ଓ ପାରଦର୍ଶିତା ଥାଇ ମଧ୍ୟ ସେ ଅନ୍ୟାନ୍ୟ ଆର୍ଯ୍ୟ ଋଷିଙ୍କ ପରି ସ୍ୱୀକୃତି, ସମ୍ମାନ ସମାଜରେ ପାଇ ପାରିନାହାନ୍ତି । ଆଉ ସେଥିପାଇଁ ଗୋଟିଏ ମାତ୍ର ଆଖିରେ ପଡିବା ପରି କାରଣ ହେଉଛି ଅସୁର ମୁଖ୍ୟ ସୁମାଳୀର କନ୍ୟା କୈକେଶୀଙ୍କୁ ବିବାହ । ମାତାଙ୍କ କାରଣରୁ ପିତାଙ୍କ ପ୍ରତି ଏହି ସାମାଜିକ ଅବହେଳାକୁ ରାବଣ ସହ୍ୟ କରିପାରି ନାହିଁ । ବିଦ୍ରୋହୀ ହୋଇଛି । ସେ ମଧ୍ୟ ମନେ କରିଥିବ ଯେ ସେ ନିଜେ ମଧ୍ୟ ଶାସ୍ତ୍ରଜ୍ଞ ତଥା ସମସ୍ତ ଆର୍ଯ୍ୟ ବିଦ୍ୟା ପରମ୍ପରାରେ ନିପୁଣ ହୋଇ ମଧ୍ୟ ଅନ୍ୟାନ୍ୟ ଆର୍ଯ୍ୟ ପୁତ୍ରଙ୍କ ପରି ତା'ର ସମାଜରେ, ଆର୍ଯ୍ୟ ସମାଜରେ ସେପରି କିଛି ଉଲ୍ଲେଖନୀୟ ସ୍ଥାନ ନାହିଁ । ସେ ନିଜେ ଅନ୍ୟମାନଙ୍କ ଦ୍ୱାରା କରଛଡା ହେଉଥିବାର ଅନୁଭବ କରିଥିବ ଓ ପ୍ରତିକ୍ରିୟାଶୀଳ ହୋଇଥିବ ।

ସେ ସମୟରେ ଯାହା ମନେହୁଏ ଆର୍ଯ୍ୟ ଓ ଆର୍ଯ୍ୟେତର ସମ୍ପ୍ରଦାୟ ମଧ୍ୟରେ ଆଦାନ ପ୍ରଦାନ, ଯୋଗାଯୋଗ ତଥା ବିବାହ ଇତ୍ୟାଦି ହେଉଥିଲା । କଟକଣା ହୁଏତ ଥିଲା ମାତ୍ର ତାହା ସେପରି ଉତ୍କଟ ନଥିଲା । ମାତ୍ର ସ୍ୱାଭିମାନୀ ରାବଣ ସେଇ ସାମାନ୍ୟ କଟକଣା, ଭ୍ରୁକୁଟୀକୁ ସହ୍ୟ କରିବା ପରି ପୁରୁଷ ନଥିଲା । ତା ନିଜ ବିଚାରରେ ତା'ର ଅଜା ସୁମାଳୀ କୌଣସି ଗୁଣରେ କମ୍ ନଥିଲା । କୌଣସି ଗୁଣରେ ସେ ଅନ୍ୟ ଆର୍ଯ୍ୟ ପୁରୁଷ ତୁଳନାରେ ନ୍ୟୁନ ନଥିଲା । ସେ ନିଜେ ମଧ୍ୟ ତା'ର ସାବତ ଭାଇ କୁବେରର ସୌଭାଗ୍ୟରେ

ଈର୍ଷାନ୍ୱିତ ହୋଇଥିବ । କୁବେର ଉଭୟ ମାତୃକୁଳ ଓ ପିତୃକୁଳରେ ଆର୍ଯ୍ୟ ସନ୍ତାନ । ସେ ଆର୍ଯ୍ୟମାନଙ୍କଠାରୁ ସ୍ୱୀକୃତି ପାଇ ଏକ ଦେବତାର ଆସନ ପ୍ରାପ୍ତ ହେଲାଣି । ସେ ନିଜେ କୁବେରଠାରୁ ଅଧିକ ସମର୍ଥ, ବଳଶାଳୀ, ନିପୁଣ ହୋଇ ମଧ୍ୟ ସାମାଜିକ ସୋପାନରେ କୁବେରର ସମକକ୍ଷ ହୋଇ ପାରିନାହିଁ । ଆଚରଣ, ଉଚ୍ଚାରଣ, ବିଚାର ତଥା ଉତ୍ତମ କର୍ତ୍ତବ୍ୟ ପାଳନ କଲେ ଜଣେ ସାଧାରଣ ଜନତା ଅପେକ୍ଷା ଯେଉଁ ଉଚ୍ଚତର ଆସନକୁ ଯାଏ ତାହା ଦେବତାର ଆସନ ବୋଲି ଅର୍ଥରେ ଏହାକୁ ଗ୍ରହଣ କରାଯାଇପାରେ ।

ଏହା ବ୍ୟତୀତ ଆର୍ଯ୍ୟ ସଭ୍ୟତା କଥା ଦେଖନ୍ତୁ । ଅଧ୍ୟୟନ, ଅଧ୍ୟାପନା, ତପସ୍ୟା, ଯାଗଯଜ୍ଞ, ଶାସ୍ତ୍ର, ପରମ୍ପରାର ଉତ୍ତମ ପାଳନ, ଉପଯୁକ୍ତ ସାମାଜିକ ଆଚରଣ ଏ ନେଇ ଆର୍ଯ୍ୟମାନେ ନିଜେ ଗର୍ବିତ ଓ ଅନ୍ୟାନ୍ୟ ବୈଷୟିକ ଜ୍ଞାନ ଅପେକ୍ଷା ଏସବୁକୁ ସେମାନେ ଜୀବନରେ ଅଧିକ ଉଚ୍ଚତର ସ୍ଥାନ ଦେଉଥିଲେ । ସେମାନଙ୍କ ଚିନ୍ତାରେ ଆଧ୍ୟାତ୍ମିକ ଜ୍ଞାନ ଓ ତା'ର ପ୍ରାପ୍ତି ଯେ କୌଣସି ବୈଷୟିକ ସଫଳତା ଓ ପ୍ରାଚୁର୍ଯ୍ୟ ଅପେକ୍ଷା ଅନେକ ଗୁଣରେ ଉତ୍କର୍ଷ ।

ଅସୁର ସମ୍ପ୍ରଦାୟ ସେମାନଙ୍କ ପରମ୍ପରା ନେଇ ସଭ୍ୟ ଶିକ୍ଷିତ ଥିଲେ ସେମାନେ ବୈଷୟିକ ଜ୍ଞାନ କୌଶଳରେ ଅଧିକ ଉନ୍ନତ ଥିଲେ ଓ ତା'ର ପ୍ରୟୋଗରେ ପ୍ରାଚୁର୍ଯ୍ୟ ହାସଲ କରି ପାରିଥିଲେ । ଜୀବନକୁ ବିଳାସ ବ୍ୟସନ ଓ ସମ୍ଭୋଗ ମାଧ୍ୟମରେ ସେମାନେ ଉପଭୋଗ କରିବାକୁ ପ୍ରାଧାନ୍ୟ ଦେଉଥିଲେ । ଆର୍ଯ୍ୟମାନଙ୍କ ପରି ଜୀବନ, ଆତ୍ମା, ପରମାତ୍ମା ଇତ୍ୟାଦି ନେଇ ହୁଏତ ଏତେ ବେଶୀ ଚିନ୍ତିତ ନଥିଲେ ।

ରାବଣ ତା'ର ମାତୃକୁଳର ପରମ୍ପରାର ଉତ୍ତରାଧୀକାର ସୂତ୍ରରେ ହେଉ ବା ବିଶ୍ରବା ଋଷିଙ୍କ ପ୍ରତି ଆର୍ଯ୍ୟ ଋଷିମୁନୀଙ୍କର ପ୍ରଚ୍ଛନ୍ନ ଅଣଦେଖା କାରଣରୁ ହେଉ ବା ଅସୁର ସମ୍ପ୍ରଦାୟରେ ବୈଷୟିକ ଓ ସାଂସାରିକ ପ୍ରାଚୁର୍ଯ୍ୟରେ ପ୍ରଭାବିତ ହୋଇ ଅସୁର ସଭ୍ୟତା ପ୍ରତି କ୍ରମେ ଅଧିକ ଢଳିବାକୁ ଲାଗିଛି । ଏଇ ମନ ପରିବର୍ତ୍ତନରେ ଅଜା ସୁମାଳୀର ଅବଦାନ ମଧ୍ୟ କମ୍ ନୁହେଁ । ସେ ସର୍ବଦା ରାବଣକୁ ଅସୁର ସମ୍ପ୍ରଦାୟର ପରମ୍ପରାରେ ଦୀକ୍ଷିତ କରି, ତା ଜରିଆରେ ଅସୁର ସାମ୍ରାଜ୍ୟ ପ୍ରତିଷ୍ଠା କରି, ଅସୁର ସଭ୍ୟତାର ଜୟଗାନ ଓ ବାନା ଉଡାଇବା ଉଦ୍ଦେଶ୍ୟ ରଖିଛି ଏବଂ ସେ ତାହାହିଁ କରିଛି । ରାବଣ ଆଗ୍ରହର ସହିତ ଅଜାର ଜାଲରେ ଧରା ଦେଇଛି । ତା'ରି ଆଦର୍ଶରେ ଅନୁପ୍ରାଣିତ ହୋଇଛି ।

ଏଇଠି ପଡିଛି ରାବଣର ଭବିଷ୍ୟତ କାର୍ଯ୍ୟ କଳାପ, ଉଚ୍ଚାଭିଳାଷ ଓ ଦିଗ୍‌ବିଜୟ ଓ ସାମ୍ରାଜ୍ୟ ପ୍ରତିଷ୍ଠାର ଭିତ୍ତିଭୂମି । ଏଇଠୁ ଜନ୍ମ ନେଇଛି ଉତ୍କଟ ଆର୍ଯ୍ୟ ବିରୋଧୀ, ଆର୍ଯ୍ୟ ପରମ୍ପରା ବିରୋଧୀ ମନୋଭାବ ।

ଥରେ ଅସୁର ଗୋଷ୍ଠୀର ସମ୍ପ୍ରଦାୟର ନେତୃତ୍ୱ ନେଲେ, ସେମାନଙ୍କର ସ୍ୱାର୍ଥ ଓ ଅଧିକାର ଜଗିବାର ଦାୟୀତ୍ୱ ନେବାକୁ ନିଶ୍ଚୟ ହେବ । ମନେରଖିବାକୁ ହେବ ଯେ ସେ

ସମୟଟା ଥିଲା ଆର୍ଯ୍ୟ ଓ ଆର୍ଯ୍ୟେତର ସଭ୍ୟତା, ସମ୍ପ୍ରଦାୟ ମଧ୍ୟରେ ଗୋଟାଏ ସାଂସ୍କୃତିକ ତଥା ରାଜ୍ୟ ବିସ୍ତାରର ସଂଘର୍ଷ ଓ ପ୍ରତିଯୋଗୀତାର ସମୟ ।

'In ancient India the different stages of annexation adopted by Arya's were Rishi, Ritural and Rupture. The Rishis or anchorites built their Ashrams wherever they pleased and performed sacrifices and observed rituals or rites and ceremonies obnoxious to their peaceful neighbours and provoked them into rupture and called in the aid of powerful monarchs to withstand oppression. In short they let lose the dogs of war'.

(Calcutta University 1918 Carmichael Lectures delivered by D.R. Bhandarkar.)

'The ancient Rishis were not mere inert thinkers, but were active, though not aggresive propagators of their faith. Rishis took a most promient but unobtruisive part in the Aryan colonisation and the diffusion of Aryan culture.

'To the south of Vindhya, there were many Brahmin anchorites who lived in hermitages at different places and performed their sacrifices, before Rama penetrated Dandak Aranya and commenced his career and conquest. The Rishis were always to the forefront in the work of colonising southern India and introducing Aryan civilization.'

ରାକ୍ଷସ କିଏ ? ସେମାନେ ଆମମାନଙ୍କ ପରି ମନୁଷ୍ୟ । କୌଣସି ଚାରିଗୋଡିଆ ଜୀବଜନ୍ତୁ ନୁହନ୍ତି । ସେମାନଙ୍କ ଶରୀରର ବର୍ଣ୍ଣ କଳା, ଗଠନ ମଜବୁତ, ଓଠ ମୋଟା । ଆର୍ଯ୍ୟମାନଙ୍କର ଶରୀର ରଙ୍ଗ ଓ ଗଠନ ଠାରୁ ସେମାନେ ବାରି ହୋଇପଡନ୍ତି । ଏମାନଙ୍କର ମୂଳ କେଉଁଠି ? ପୁରାଣ ଅନୁସାରେ ରାମଙ୍କ ପ୍ରଶ୍ନର ଉତ୍ତରରେ ଅଗସ୍ତ୍ୟ ମୁନିଙ୍କ ଭାଷାରେ, ବ୍ରହ୍ମାଙ୍କ ପାଖରୁ ଏମାନଙ୍କର ସୃଷ୍ଟି । ସୃଷ୍ଟିର ଆରମ୍ଭରେ ସୃଷ୍ଟିକର୍ତ୍ତା ଯେତେବେଳେ ଜଳ ସୃଷ୍ଟି କଲେ ସେତେବେଳେ ତାହାକୁ ରକ୍ଷା କରିବା ପାଇଁ ଗୋଟିଏ ସମ୍ପ୍ରଦାୟ, ଦଳ ସୃଷ୍ଟି କଲେ । ସେମାନେ ଜଣେ ଦଳପତିଙ୍କ ନେତୃତ୍ୱରେ କାର୍ଯ୍ୟ କଲେ । ସେମାନଙ୍କର ମୁଖ୍ୟ କାମ ରକ୍ଷା କରିବା ଏବଂ ସେ ସମ୍ପ୍ରଦାୟକୁ ବ୍ରହ୍ମା ରାକ୍ଷସ ନାମ ଦେଲେ । ରାବଣ ଏବଂ ତା'ର ସମ୍ପ୍ରଦାୟ ବା ଗୋଷ୍ଠୀ କିଛି ଅଦ୍ଭୁତ ଜୀବଜନ୍ତୁ ନୁହନ୍ତି । ସେମାନେ ଏକ ଉନ୍ନତ

ମନୁଷ୍ୟ ଜାତି । ଦକ୍ଷିଣ ଭାରତରେ ଅନେକ ଗବେଷକଙ୍କ ମତରେ, ଆଜି ଥିବା 'ମାରଭାର' ସମ୍ପ୍ରଦାୟ ଏହି ରକ୍ଷକ ଗୋଷ୍ଠି ବା ରାକ୍ଷସମାନଙ୍କର ବଂଶଧର । ସେମାନେ ଶାରୀରିକ ଗଠନରେ ଅତ୍ୟନ୍ତ ଶକ୍ତିଶାଳୀ । ସେମାନେ ବର୍ତ୍ତମାନ କାଳରେ ଜଣେ ଜଣେ ଜମିଦାର ଓ ଅନେକ ଭୂମି ଜମିର ଅଧିକାରୀ । କେବଳ ସମ୍ପତ୍ତି ରକ୍ଷା ନୁହେଁ, ସେ ଜମି ଉପରେ ବାସ କରୁଥିବା ପ୍ରଜାମାନଙ୍କୁ ଜୀବ ଜନ୍ତୁ ଓ ଜଙ୍ଗଲକୁ ମଧ୍ୟ ସେମାନେ ରକ୍ଷା କରନ୍ତି ଓ ଏହାକୁ ସେମାନଙ୍କର ପବିତ୍ର ଧର୍ମ ବୋଲି ମାନନ୍ତି ।

ସେ ଯାହାହେଉ, ତେବେ ଆମ ଆଗରେ ଆଜି ଜଣେ ରାକ୍ଷସର ଯେଉଁ ଚିତ୍ର ଥୋଇ ଦିଆଯାଇଛି, ତାହା ସମ୍ପୂର୍ଣ୍ଣ ଅଭିସନ୍ଧିମୂଳକ ଉଦ୍ଦେଶ୍ୟ ପ୍ରଣୋଦିତ । ଅସଭ୍ୟ, ବର୍ବର, କଞ୍ଚା ମାଂସ ଭକ୍ଷକ, ମଣିଷ ମାଂସ ଖାଆନ୍ତି, ରକ୍ତ ପିଅନ୍ତି, ଇତ୍ୟାଦି ଇତ୍ୟାଦି -- ଏ ପ୍ରକାର ଚିତ୍ର ଓ ଏ ପ୍ରକାର ଅପପ୍ରଚାରରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯୁଗେ ଯୁଗେ ସଭ୍ୟ ସମାଜ ଯେତେବେଳେ ଆଦିମ ଅଧିବାସୀମାନଙ୍କର ଅଞ୍ଚଳ ଦଖଲ କରିବାକୁ ଯାଇଛି, ସେତେବେଳେ ଏହି ପ୍ରକାର ସୂତ୍ରର ଆଶ୍ରୟ ହିଁ ନେଇଛି । ନିଜକୁ, ନିଜ ସମ୍ପ୍ରଦାୟକୁ ଓ ନିଜର ପରମ୍ପରାକୁ ସଭ୍ୟ ଓ ଉନ୍ନତ ବୋଲି ଦେଖାଇଛି । ଆଦିମ ଅଧିବାସୀମାନଙ୍କୁ ସେମାନଙ୍କର ନିରାଡମ୍ବର, ସରଳ, ଛଳନାହୀନ ଜୀବନ ଯାପନ ସତ୍ତ୍ୱେ ହୀନ ଦୃଷ୍ଟିରେ ଦେଖିଆସିଛି । ସେମାନଙ୍କ ଉପରେ ଶାସନ କରି ସେମାନଙ୍କୁ ତଥାକଥିତ ଓ ସଭ୍ୟ ସମ୍ପ୍ରଦାୟରେ ସାମିଲ କରିବାର ଦାୟିତ୍ୱ ନିଜ ଉପରକୁ ନେଇଯାଇଛି । ଦେଖିବାକୁ ଗଲେ ନିଜର କ୍ଷୁଦ୍ର ସ୍ୱାର୍ଥ ହାସଲ ପାଇଁ, ନିଜର ବିବେକକୁ କୌଣସି ପ୍ରକାରେ ବୁଝାଇ ଦେବାପାଇଁ ସଭ୍ୟ ସମାଜ ସବୁବେଳେ ଏ ବାହାନା କରି ଆସିଛି । ଆଜି ମଧ୍ୟ କରୁଛି । ଆଫ୍ରିକାରେ ସେଇଆ ଘଟୁଛି । ଇଉରୋପରେ ସେଇଆ ଘଟିଛି । ଓଡିଶାରେ ମଧ୍ୟ ସେଇଆ ଘଟିଛି । ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ରାକ୍ଷସ ସମ୍ପ୍ରଦାୟଙ୍କର ମୁଖ୍ୟ କାମ ହେଉଛି, ନିରାପତ୍ତା ପ୍ରଦାନ । ସେମାନଙ୍କର ରାଜ୍ୟ, ଜଙ୍ଗଲ ଓ ତା'ର ଅଧିବାସୀ ଉଭୟ ମନୁଷ୍ୟ ଓ ପଶୁପକ୍ଷୀମାନଙ୍କୁ ନିର୍ଭୟ ଓ ନିରାପତ୍ତା ପ୍ରଦାନ ସେମାନଙ୍କର ମୁଖ୍ୟ କାମ ଓ ଧର୍ମ । ଏଇଥିରୁ ଆରମ୍ଭ ଆର୍ଯ୍ୟ ଅସୁର ବିବାଦ । ଆର୍ଯ୍ୟମାନେ କ୍ରମେ ବିଭିନ୍ନ ଉପାୟରେ ଯାହା ଅନ୍ୟତ୍ର ବର୍ଣ୍ଣିତ ହୋଇଛି ରାକ୍ଷସମାନଙ୍କର ଅଞ୍ଚଳ ବଣ ଜଙ୍ଗଲ ଅଧିକାର କରୁଥିଲେ । ପ୍ରଥମରୁ ସେଠାରେ ଆଶ୍ରମ ସ୍ଥାପନ କରି ଯାଗ ଯଜ୍ଞ, ହୋମ କରି ଅନେକ ବୃକ୍ଷ ଜାଳି ପୋଡି ଦେଉଥିଲେ । ପଶୁବଳୀ ଦେଉଥିଲେ । ଜଙ୍ଗଲ ଜାତ ଦ୍ରବ୍ୟ ନିଜ ଅଞ୍ଚଳରୁ ବେପାରୀମାନେ ଆସି ନେଇ ଯାଉଥିଲେ । ରାକ୍ଷସମାନେ ଏହାକୁ ବରଦାସ୍ତ କରିବାକୁ ପ୍ରସ୍ତୁତ ନଥିଲେ । ଅନେକ ଗବେଷକଙ୍କ ମତରେ ସେମାନେ ଶାନ୍ତିପ୍ରିୟ, ସଭ୍ୟ, ନିରାମିଷାଶୀ, ଫଳମୂଳ ଭୋଜୀ । ତେଣୁ ଏ ପ୍ରକାର ଦିବା ରାତ୍ର ହୋମ ଜାଳି ଜଙ୍ଗଲ ଧ୍ୱଂସ, ପଶୁବଳୀ, ମାଂସହାର ପାଇଁ ଶୀକାର ସେମାନଙ୍କର ପସନ୍ଦ ନଥିଲା, ସହ୍ୟ ନଥିଲା ।

ଆର୍ଯ୍ୟମାନେ ଅନାବଶ୍ୟକ ଭାବେ ଅନେକ ପଶୁ ବଧ କରୁଥିଲେ । ଏହାକୁ କ୍ଷତ୍ରୀୟମାନେ ମୃଗୟା ବୋଲି କହୁଥିଲେ । ଏଇଟା ସେମାନଙ୍କ ପାଇଁ ଗୋଟାଏ ଖେଳ ତଥା ପୌରୁଷର ପ୍ରତୀକ ଥିଲା । ରାମଙ୍କ ବନବାସ ସମୟରେ ରାମ ଅଯଥାରେ ଅନେକ ପଶୁ ବଧ କରିଥିଲେ । ସେଥିନେଇ ସୀତା କିଛିଟା ଦୁଃଖୀତ ହୋଇଥିଲେ ଏବଂ ରାମଙ୍କ ନିକଟରେ ନିଜର ମନୋଭାବ ପ୍ରକାଶ ମଧ କରିଥିଲେ । ରାମ ଲକ୍ଷ୍ମଣ ମାଂସାସୀ । ଫଳମୂଳ ସହିତ ମାଂସ ଭକ୍ଷଣ ମଧ କରନ୍ତି । ସେଥିପାଇଁ ସେମାନେ ଯେଉଁ ଶୀକାର କରନ୍ତି, ତାହା ଆବଶ୍ୟକତା ଠାରୁ ଅନେକ ଅଧିକ । ସେଥିପାଇଁ ସୀତା ଦୁଃଖ ପାଉଥିଲେ ।

ସେମାନେ ତପସୀ ବେଶ ପରିଧାନ କରିଥିଲେ ମଧ କ୍ଷତ୍ରୀୟ ବୃତ୍ତି ଓ ମାନସିତା ସେମାନଙ୍କୁ ଛାଡି ନଥିଲା । ସମଗ୍ର ଦଣ୍ଡକାରଣ୍ୟକୁ ଅସୁର ମୁକ୍ତ କରିବା ପାଇଁ ସେ ଋଷିମାନଙ୍କୁ ଦେଇଥିବା ପ୍ରତିଶ୍ରୁତି ମଧ ସୀତାଙ୍କ ଦୃଷ୍ଟିରେ ଧର୍ମାନୁମୋଦିତ ନୁହେଁ । ପତ୍ନୀର ସ୍ୱାଭାବିକ ଅଧିକାରରେ ସେ ରାମଙ୍କ ଅନୁମତି ନେଇ ତାହା ପ୍ରକାଶ କରିଛନ୍ତି ଓ ରାମ ତାଙ୍କୁ ନିଜ ଦୃଷ୍ଟି ଭଙ୍ଗୀ ବୁଝାଇଛନ୍ତି । ଆର୍ଯ୍ୟ ଧର୍ମ ରକ୍ଷା ପାଇଁ ମୁନିଋଷିମାନଙ୍କର ନିରୁପଦ୍ରବ ଜୀବନଯାପନ ଅପରିହାର୍ଯ୍ୟ ଏବଂ ଯେହେତୁ ରାକ୍ଷସମାନଙ୍କ ହେତୁ ତାହା ସମ୍ଭବ ନୁହେଁ, ତେଣୁ ରାକ୍ଷସ କୁଳକୁ ବିନାଶ କରି ମୁନିଋଷିମାନଙ୍କୁ ନିରାପତ୍ତା ଦେବା କ୍ଷତ୍ରିୟ ହିସାବରେ ତାଙ୍କର ଧର୍ମ ।

ଏ ହେଲା ରାମଙ୍କ ଦୃଷ୍ଟିକୋଣ । ଆର୍ଯ୍ୟ ଧର୍ମ ପ୍ରଚାର ପ୍ରସାର ଆଉ ନିରାପତ୍ତା -- ତାଙ୍କ ପାଇଁ ଧର୍ମର ପରିଭାଷା । ସେଥିପାଇ ଅରଣ୍ୟର ଆଦିମ ଅଧିବାସୀମାନଙ୍କୁ ବଧ କରିବା ତାଙ୍କର ଧର୍ମାନୁମୋଦିତ । ମାତ୍ର ସେଇ ଆଦିମ ଅଧିବାସୀମାନଙ୍କ କଥା ଓ ମାନସିକତା ବିଚାର କରନ୍ତୁ । ଏ ଜଙ୍ଗଲ, ଏ ଅରଣ୍ୟ ତାଙ୍କର ପୈତୃକ ଭୂମି । ତା'ର ନିରାପତ୍ତା ଓ ସୁରକ୍ଷା ଆଦିମ କାଳରୁ ସେମାନେ କରି ଆସିଛନ୍ତି । ଜଙ୍ଗଲ ଉପରେ ସେମାନେ ନିର୍ଭର କରି ଜୀବିକା ନିର୍ବାହ କରନ୍ତି । ତେଣୁ ବଣ ଜଙ୍ଗଲ ଧ୍ୱଂସ କରିବା ଆଉ ପଶୁପକ୍ଷୀ ତଥା ଅନ୍ୟାନ୍ୟ ବନ୍ୟ ବାସିନ୍ଦାଙ୍କୁ ଅଯଥା ବଧ କରିବା ସେମାନଙ୍କର ସହ୍ୟ ନୁହେଁ । ତା'ବାଦ୍ ଆର୍ଯ୍ୟମାନଙ୍କର ସେଠାରେ ଆଶ୍ରମ ସ୍ଥାପନ ଓ ଗତାଗତକୁ ସେମାନେ ଆପଣା ଇଲାକାରେ ଶତ୍ରୁର ଅନୁପ୍ରବେଶ ବୋଲି ବିଚାର କରନ୍ତି । ତେଣୁ ଏ ଦ୍ୱନ୍ଦ । ଏ ଦ୍ୱନ୍ଦ ଅନେକ କାଳ ପର୍ଯ୍ୟନ୍ତ ଚାଲିଛି ଓ ରାକ୍ଷସ ସଂପ୍ରଦାୟର ନେତୃତ୍ୱ ରହିଛି ଲଙ୍କା ନରପତି ରାବଣ ହାତରେ । ରାବଣ ତା'ର ସାମ୍ରାଜ୍ୟ ରକ୍ଷା କରିବା ପାଇଁ ଉପନିବେଶ (ଜନସ୍ଥାନ) ଗୁଡିକ ଉପଯୁକ୍ତ ପରିଚାଳନା ପାଇଁ ଅନେକ ବିଧି ବ୍ୟବସ୍ଥା କରିଛି । ଜନସ୍ଥାନରେ ମୁଖ୍ୟ ଶାସିକା (ରାଜ୍ୟପାଳ) ହିସାବରେ ବିଧବା ଭଉଣୀ ସୂର୍ପଣଖାକୁ ରଖାଇଛି । ତାକୁ ସାହାଯ୍ୟ କରିବା ପାଇଁ ତା'ର ପ୍ରଧାନମନ୍ତ୍ରୀ ଓ ପରାମର୍ଶଦାତା ହିସାବରେ ଖର ରହିଛି । ସେନାପତି ଦୂଷଣ ଅଧିନରେ ବଛାବଛା ଚଉଦ ହଜାର ଯୋଦ୍ଧା ରହିଛନ୍ତି ।

ଲଙ୍କାର ଶାସନ ସେ ନିଜ ହାତରେ ରଖିଛି । ତାକୁ ପରାମର୍ଶ ଦେବା ପାଇଁ ପରାମର୍ଶଦାତା ମଣ୍ଡଳୀ ରହିଚି । ଦେଶ ବିଦେଶର ଖବର ରଖିବା ପାଇଁ ଗୁପ୍ତଚର ନିଯୁକ୍ତ କରିଛି । ଅନ୍ୟାନ୍ୟ ବନ୍ଧୁ ରାଜ୍ୟମାନଙ୍କ ସହ ସମ୍ପର୍କ ରକ୍ଷା କରିବା ପାଇଁ ସତନ୍ତ୍ର ପ୍ରତିନିଧି ନିଯୁକ୍ତ କରିଛି । ସମସ୍ତ ଖବର ରଖି ସୁଶାସନ ଚଳାଉଛନ୍ତି । ତା' ରାଜ୍ୟରେ ସମୃଦ୍ଧି ଓ ଶାନ୍ତି ବଜାୟ ରହିଛି । କୌଣସି ପ୍ରକାର ବିଦ୍ରୋହ, ବିଶୃଙ୍ଖଳା ସୃଷ୍ଟି ହୋଇନାହିଁ ।

ଏହି ଦୃଷ୍ଟି କୋଣରୁ ବିଚାର କରି ଦେଖିଲେ ଜନସ୍ଥାନରେ, ଦଣ୍ଡକ ବଣରେ ଆର୍ଯ୍ୟ ଋଷିମାନଙ୍କର ଆଶ୍ରମ ସ୍ଥାପନ ଯାଗ ଯଜ୍ଞ ହୋମ ତଥା ରାଜା ମହାରାଜାମାନଙ୍କର ବାରମ୍ବାର ସେ ସବୁ ଅଞ୍ଚଳକୁ ବିଭିନ୍ନ ବାହାନାରେ ଯାତାୟାତ ଓ ମୃଗୟାକୁ ସେ ବିରୋଧ କରିବାର ଯଥାର୍ଥତା ଅଛି । ତା'ର ରାଜ୍ୟରେ ଏହା ଆର୍ଯ୍ୟମାନଙ୍କର ଅନୁପ୍ରବେଶ ବୋଲି ମନେକରିଛି । ତା'ର ସମ୍ପତ୍ତି ଏମାନେ ନଷ୍ଟଭ୍ରଷ୍ଟ କରୁଛନ୍ତି ବୋଲି ବିଚାର କରିଛି । ଏଇଆ ହିଁ ହୋଇଛି ଦ୍ୱନ୍ଦର ମୁଖ୍ୟ କାରଣ । ଏ ନେଇ ରାବଣକୁ ସମ୍ପୂର୍ଣ୍ଣ ଦାୟୀ କରାଯିବା ଅନୁଚିତ ହେବ ।

ରାବଣର ଚରିତ୍ରର ଆଉ ଗୋଟିଏ ଦିଗ ଦେଖନ୍ତୁ । ଆର୍ଯ୍ୟମାନଙ୍କ ଭାଷାରେ, ରାମାୟଣର ବର୍ଣ୍ଣନା ଅନୁସାରେ ରାବଣ ପାଖରେ ନୀତି, ନିୟମ ବୋଲି କିଛି ନାହିଁ । ବାହୁବଳ ତା'ପାଇଁ ସବୁକିଛି । ସେ ନାରୀ ସଂଭୋଗ ପାଇଁ ଧର୍ଷଣ, ବଳତ୍କାର କରିବାକୁ ପଛାଇ ନାହିଁ ଓ ସେଥିପାଇଁ ବିଭିନ୍ନ କ୍ଷେତ୍ରରୁ ଅଭିଶପ୍ତ ହୋଇଛି ।

ମାତ୍ର ସୀତାଙ୍କୁ ନେଇ ସେ ଅଶୋକ ବନରେ ରଖାଇଛି । କୌଣସି ପ୍ରକାରେ ସୀତାଙ୍କ ଉପରେ ଶକ୍ତି ପ୍ରୟୋଗ କରିନାହିଁ ବା ଅଶୋଭନୀୟ ଆଚରଣ, ବ୍ୟବହାର ଦେଖାଇନାହିଁ । ଏହାକୁ ଆମର ପୁରାଣକାରମାନେ ବିଭିନ୍ନ କ୍ଷେତ୍ରରୁ ପାଇଥିବା ଅଭିଶାପ ଜନିତ ସଂଯମ ବୋଲି ଲେଖିଛନ୍ତି । ମାତ୍ର ତାହା କେତେଦୂର ବିଶ୍ୱାସଯୋଗ୍ୟ ? ଯେ କାମୁକ, ଯେ ଅଭ୍ୟସ୍ତ ଧର୍ଷଣକାରୀ ତା ପାଇଁ ଏ ଲକ୍ଷ୍ମଣରେଖାର କିଛି ବୋଲି କିଛି ମାନେ ନାହିଁ । ନା ସେ ସୀତାଙ୍କୁ ବଳତ୍କାର କରିଛି ନା କୌଣସି ଅଶାଳୀନ ବ୍ୟବହାର ଦେଖାଇଛି । ରାବଣର ଏ ଉଚିତ୍ ଆଚରଣ ପଛରେ ଆମ ଶାସ୍ତ୍ରରେ ଏ ଅଭିଶାପ ଇତ୍ୟାଦିର ଦ୍ୱାହି କେବଳ ହୁଏତ ଦିଆଯାଇଛି ଏଇଥିପାଇଁ ଯେ ରାବଣର ସଂଯମ ଓ ଉପଯୁକ୍ତ ଆଚରଣକୁ ଘୋଡାଇ ପକାଇ ତାକୁ ଗୋଟାଏ ଦୁର୍ଦ୍ଦାନ୍ତ ଅପରାଧୀ ରୂପରେ ଜନ ସମାଜରେ ଚିତ୍ରିତ କରିବା ପାଇଁ । ତା ନକଲେ ଆର୍ଯ୍ୟମାନଙ୍କର ଜନସ୍ଥାନ, ଦଣ୍ଡକ ବନରେ ଅନୁପ୍ରବେଶକୁ ଯଥାର୍ଥ ଓ ନ୍ୟାୟ ସଂଗତ ବୋଲି ଯୁକ୍ତି କରି ହେବ ନାହିଁ । ରାବଣର ମହନୀୟତା ସବୁ ଅପପ୍ରଚାର ସତ୍ତ୍ୱେ, ସବୁ ଚାରିତ୍ରିକ ସଂହାର ସତ୍ତ୍ୱେ ପୁରାଣ ପୃଷ୍ଠାରୁ ବାରି ହୋଇ ପଡୁଛି ।

ଗୋଟିଏ ପ୍ରମୁଖ ଉଦାହରଣ ଦେଖାଯାଉ । ବିଭୀଷଣ ରାବଣକୁ ରାମଙ୍କ ସହିତ ଯେଉଁ ସନ୍ଧି କରିବାର ପ୍ରସ୍ତାବ ଦେଇଛି, ରାବଣ ତାକୁ ପ୍ରତ୍ୟାଖ୍ୟାନ କରିଛି ଓ ବାରମ୍ବାର ବିଭୀଷଣ ସେଇକଥା କହି ବିରକ୍ତ କରିବାରୁ ସେ ତା'କୁ ନିର୍ବାସିତ କରିଛି । ବିଭୀଷଣ

କରିଛି କ'ଣ ? ଭାଇ ସହିତ ଏତେ ଦିନର ସମ୍ପର୍କ ଭୁଲି ଯାଇଛି । ରାବଣର ଏତେଦିନର ସ୍ନେହ ଭୁଲି ଯାଇଛି, ପାରିବାରିକ ବନ୍ଧନ ଭୁଲି ଯାଇଛି ଆଉ ସିଧା ସଳଖ ଯାଇ ପହଞ୍ଚିଛି ରାମଙ୍କ ପାଖରେ । ରାମଙ୍କ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ ଆଣି ଦେଇଛି ।

ଶତ୍ରୁର ଗୁପ୍ତ ରହସ୍ୟ ଜାଣିବା ଏବଂ ସେହି ଅନୁସାରେ ନିଜକୁ ପ୍ରସ୍ତୁତ କରିବା ଏକ ବହୁ ଅନୁସୃତ ପନ୍ଥା । ରାମ ବା ତାହା ହାତଛଡା କରନ୍ତେ କାହିଁକି ? ବିଭୀଷଣକୁ ଲୋଭ ଦେଖାଇ ନିଜପଟେ ପୁରାପୁରି ବାନ୍ଧି ରଖିବାକୁ ରାମ ଆଗେଇ ଆସିଛନ୍ତି । ତାଙ୍କ ମନରେ ହୁଏତ ସନ୍ଦେହ ହୋଇଛି ହଠାତ୍ ଉତ୍ତେଜନାର ବଶବର୍ତ୍ତୀ ହୋଇ ବିଭୀଷଣ ଭାଇ ସହିତ କଳି କରି ପଳାଇ ଆସିଛି ଆଉ ସମୟ ବିତିବା ସହିତ ତା ମନରେ ଅନୁତାପ ଆସିପାରେ, ସେତେବେଳେ ସେ ପୁଣି ଭାଇ ପାଖକୁ ହୁଏତ ଫେରିଯିବ ବା, ରାବଣ ବିଭୀଷଣକୁ ଫେରାଇ ନେବା ପାଇଁ ମଧ ଚେଷ୍ଟା କରିପାରେ ବା ବିଭୀଷଣ ପରିବାର ଯାହାକି ଲଙ୍କାରେ ରହିଛି, ତାଙ୍କୁ ବନ୍ଧକ ରଖି ବିଭୀଷଣକୁ ଫେରିଯିବାକୁ ବାଧ କରିପାରେ । ଏପରି ସନ୍ଦେହ ରାମଙ୍କର କରିବା ବହୁତ ସ୍ୱାଭାବିକ । ସେ ମଧ ରାଷ୍ଟ୍ରନୀତି, କୂଟନୀତି ପ୍ରୟୋଗ କରି, ବିଭୀଷଣକୁ ପ୍ରଲୋଭିତ କରି ନିଜ ପକ୍ଷରେ ବାନ୍ଧି ରଖିବାର ପ୍ରଚେଷ୍ଟା କରିଛନ୍ତି । ତାହା ଏହିପରି: ଆନୁଷ୍ଠାନିକ ଭାବରେ ବିଭୀଷଣକୁ ଲଙ୍କାର ରାଜା ବୋଲି ସେଠାରେ ଘୋଷଣା କରିଛନ୍ତି । ଦେଖନ୍ତୁ, ଯୁଦ୍ଧ ଆରମ୍ଭ ହୋଇ ନାହିଁ । ଶତ୍ରୁ ଦୁର୍ବଳ ନୁହେଁ । ମାତ୍ର ରାମ ତାଙ୍କର ଗୋଟି ସଠିକ୍ ଚାଳନା କରିଛନ୍ତି । କିଏ ଜିଣିବ, କିଏ ହାରିବ ଜଣା ନାହିଁ । ଯୁଦ୍ଧ ଆରମ୍ଭର ହଠାତ୍ ପୂର୍ବରୁ ସନ୍ଧି ହୁଏତ ହୋଇ ଯାଇପାରେ । ମାତ୍ର ସେ ସବୁକୁ ନଜର ନଦେଇ ବିଭୀଷଣକୁ ଲଙ୍କାର ଭବିଷ୍ୟତ ରାଜା ବୋଲି ଘୋଷଣା କରିଛନ୍ତି ।

ରାମ ତାଙ୍କର ଯୁଦ୍ଧ କୌଶଳ ଦୃଷ୍ଟିରୁ କିଛି ଭୁଲ କରି ନାହାନ୍ତି । ମାତ୍ର ରାମଙ୍କ କାର୍ଯ୍ୟର ସମୀକ୍ଷା ଆମର ବର୍ତ୍ତମାନ ଉଦ୍ଦେଶ୍ୟ ନୁହେଁ । ରାବଣ ଚରିତ୍ରର ମହାନତା ଦେଖାଇବା ଆମର ଉଦ୍ଦେଶ୍ୟ । ବିଭୀଷଣ ଲଙ୍କା ଛାଡି ଚାଲି ଆସିବା ସମୟରେ ରାମଙ୍କ ପାଖକୁ ଶରଣ ପାଇଁ ଆସିବା ସମୟରେ ଥରକ ପାଇଁ ମଧ ନିଜ ପରିବାର ନିରାପତ୍ତା କଥା ଚିନ୍ତା କରି ନାହିଁ ? ତା'ର ପରିବାରର ନିରାପତ୍ତା ପାଇଁ ଚିନ୍ତା କରିବା ସ୍ୱାଭାବିକ ହୋଇ ନଥାନ୍ତା କି ? ରାବଣ ପ୍ରତିଶୋଧ ପରାୟଣ ହୋଇ ପରିବାରକୁ ସ୍ତ୍ରୀ, ପୁତ୍ର ଓ କନ୍ୟାକୁ ଯନ୍ତ୍ରଣା ଦେବ ବୋଲି ତା'ର ସଂଶୟ ଆସିବା ସ୍ୱାଭାବିକ୍ ହୋଇଥାଆନ୍ତା । ମାତ୍ର ସେପରି କିଛି ହୋଇ ନାହିଁ । ଏପରି କିଛି ଘଟିବ ବା ତା'ର ଶତ୍ରୁ ସହିତ ଯୋଗଦାନ ପାଇଁ ରାବଣ ତା ପରିବାର ଉପରେ ଅତ୍ୟାଚାର କରିବ, ଏପରି ଆଶଙ୍କା ତା' ମନକୁ ଆସିନାହିଁ । ଶତ୍ରୁ ଶିବିରରେ ଯୋଗ ଦେବା ପରେ ମଧ ରାବଣ ଉପରେ ଏ ଆସ୍ଥା, କ'ଣ ରାବଣର ମହନୀୟନତାର ପରିଚୟ ଦେଉ ନାହିଁ ? କେବଳ ସେତିକି ନୁହେଁ, ରାବଣକୁ ଯେପରି କାମୁକ, ବହୁନାରୀ ସମ୍ଭୋଗକାରୀ ଏବଂ ଉଦ୍ଦେଶ୍ୟ ସାଧନ ପାଇଁ ଯେ କୌଣସି ଉପାୟ, କୌଶଳ ସେ ଅବଲମ୍ବନ କରିପାରେ, ଧର୍ମ, ନୀତି ନିୟମ ପାଇଁ ସେ

ଖାତିର କରେ ନାହିଁ ବୋଲି ଚିତ୍ରଣ କରାଯାଇଛି ତାହା ବିଭୀଷଣର ପତ୍ନୀ ସୁରମାକୁ ନେଇ ତା'ର ବ୍ୟବହାର ଏପରି ଅପପ୍ରଚାରକୁ ଖଣ୍ଡନ କରୁ ନାହିଁ? ରାମାୟଣରେ କୌଣସିଠାରେ ରାବଣ ସୁରମା ପ୍ରତି ଅସୌଜନ୍ୟ ବ୍ୟବହାର କରିଥିବାର ସୂଚନା ନାହିଁ। କୌଣସି ପ୍ରକାରେ ଶତ୍ରୁର ପତ୍ନୀ ବୋଲି ଅଶାଳୀନ ଭାଷା ପ୍ରୟୋଗ ମଧ୍ୟ ନାହିଁ। କେବଳ ସେତିକି ନୁହେଁ, ବିଭୀଷଣର ଝିଅ ତ୍ରିଜଟାକୁ ସୀତାଙ୍କ ପାଖରେ ରଖାଇଛି। ଯଦି ତା'ର ଉଦ୍ଦେଶ୍ୟ ସୀତାଙ୍କୁ ଭୁଲାଇ ଡରାଇ ଭୋଗକରିବା ହୋଇଥାଆନ୍ତା, ତେବେ ସେ ତ୍ରିଜଟାକୁ ସେଠାରେ ରଖି ନଥାନ୍ତା। ସେ ଏପରି ଚାଟୁ କଥାରେ ପାରଙ୍ଗମା କୌଣସି ଚତୁରୀ ଦାସୀକୁ ସେଠାରେ ରଖାଇ ଥାଆନ୍ତା ମାତ୍ର ସେ ତା କରିନାହିଁ। ତ୍ରିଜଟାଟି ଭଲ ଝିଅଟିଏ ତେଣୁ ତାକୁ ସୀତାଙ୍କ ଦାୟୀତ୍ୱ ସେ ଦେଇଛି। ସୀତାଙ୍କୁ ଚୋରାଇ ଆଣିଛି, ତା ସତ୍ୟ। ଏହା ମଧ୍ୟ ସତ୍ୟ ଚୋରାଇ ଆଣିବା ପଛରେ ସୀତାଙ୍କ ପ୍ରତି କୌଣସି ନୀଚ ଲାଳସା ବା କାମନା ନାହିଁ। ଅଛି କେବଳ ରାମଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ପ୍ରୟାସ।

ଶତ୍ରୁକୁ ଶିକ୍ଷା ଦେବା ପାଇଁ, ପ୍ରତିଶୋଧ ନେବା ପାଇଁ ତା'ର ପ୍ରିୟ ବସ୍ତୁ ବା ସମ୍ପର୍କକୁ ବନ୍ଧକ ବନାଇବା କୌଶଳ କିଛି ନୂଆ କଥା ନୁହେଁ। ରାବଣ ସେଇଆ କରିଛି। ସୂର୍ପଣଖା କ୍ଷେତ୍ରରେ ରାବଣର ଗୋଟାଏ ଦୋଷୀ ମନ୍ୟତା ରହିଯାଇଛି। ପ୍ରଥମତଃ ଏକମାତ୍ର ଭଉଣୀ, ଦ୍ୱିତୀୟରେ ଏକ ଭୁଲ ବୁଝାମଣା ନେଇ ତା'ର ସ୍ୱାମୀକୁ ରାବଣ ହାତରେ ଜୀବନ ଦେବାକୁ ହୋଇଛି। ତେଣୁ ସୂର୍ପଣଖା କ୍ଷେତ୍ରରେ ରାବଣ ଅନେକ ସ୍ପର୍ଶକାତର। ନିଜ ଦୋଷୀ ମନ୍ୟତାରୁ ମୁକ୍ତି ପାଇଁ ତାକୁ ଜନସ୍ଥାନର ରାଜ୍ୟପାଳ ବନାଇଛି। ତାକୁ ଅନେକ କ୍ଷମତା ଦେଇ ତା ମନ ଭୁଲାଇବାକୁ ଚେଷ୍ଟା କରିଛି। ଏହା କ'ଣ ରାବଣ ଚରିତ୍ରର ଏକ ଉଜ୍ଜ୍ୱଳ ଦିଗ ନୁହେଁ?

ମାତ୍ର ରାମ ଲକ୍ଷ୍ମଣ ଯେତେବେଳେ ଅନୁଚିତ ବ୍ୟବହାର କରି, ତା ସହିତ କୌତୁକ, ଥଟ୍ଟା କରି ଶେଷରେ ତା ନାକ କାନ କାଟି ଦେଇଛନ୍ତି, ତାହା ରାବଣର ସହ୍ୟ ହୋଇନାହିଁ। ଗୋଟାଏ ଯୁବତୀ ସ୍ତ୍ରୀର ନାକ କାନ କାଟି ତାକୁ ଜୀବନଯାକ ପାଇଁ ବିକଳାଙ୍ଗ କରିଦେବା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ ନିଶ୍ଚୟ। ରାବଣ ଏ କାମକୁ ସେହି ପ୍ରକାରେ ଗ୍ରହଣ କରିଛି ଓ ପ୍ରତିଶୋଧ ନେବା ପାଇଁ ସୀତାଙ୍କୁ ଅପହରଣ କରି ଆଣିଛି।

ଏଥିରେ ରାବଣ ଉପରେ ସମସ୍ତ ଦୋଷ ଲଦିଦେବା କେତେଦୂର ଯଥାର୍ଥ? ରାମ ଲକ୍ଷ୍ମଣଙ୍କ ଅନୁଚିତ କାମକୁ ଲୋକଙ୍କ ଆଖିରେ ଗୌଣ ବା ସାମାନ୍ୟ କରି ଦେଖାଇବାକୁ ହେଲେ ରାବଣ ଚରିତ୍ରରେ କାଳି ବୋଳିବାକୁ ହିଁ ହେବ, ତାହା ଯେତେ ମନଗଢ଼ା, କାଳ୍ପନିକ ହେଉପଛେ; ତାହାହିଁ ହୋଇଛି। ସଚରାଚର ତାହାହିଁ ହୋଇଥାଏ। ରାମାୟଣ ତ ରାକ୍ଷସମାନେ ଲେଖି ନାହାନ୍ତି। ଆର୍ଯ୍ୟମାନେ ଲେଖିଛନ୍ତି, ସେମାନେ ଅନ୍ୟଥା ଲେଖିଥାନ୍ତେ କିପରି?

ସମଗ୍ର ରାମାୟଣରେ ରାବଣ ପ୍ରତି ଚରିତ୍ର ଚିତ୍ରଣରେ ଯେ ଅନ୍ୟାୟ କରାଯାଇଛି,

ତାହା ଚଳଚଞ୍ଚଳ ଦେଖାଯାଉଛି । ତା ଇଲାକାରେ ଆପଣ ଅନୁପ୍ରବେଶ କଲେ ବସତି ସ୍ଥାପନ କଲେ, ଜଙ୍ଗଲ ଧ୍ୱଂସ କଲେ, ଅନାବଶ୍ୟକ ଶୀକାର କଲେ ଆଉ ସେ ତା'ର ସମ୍ପତ୍ତି ତଥା ବାସିନ୍ଦାଙ୍କୁ ରକ୍ଷା କରିବାକୁ ଯିବା ସମୟରେ ତାକୁ ଦୋଷୀ ବୋଲି କହି ତାକୁ ଦୁଷ୍ଟ ଅଭିନେତା (ଚରିତ୍ର) ରୂପେ ବର୍ଣ୍ଣନା କଲେ ।

ରାବଣ ଉଚ୍ଚ ଶିକ୍ଷିତ; କେବଳ ବେଦ, ସଂସ୍କୃତ ନୁହେଁ ଅନ୍ୟାନ୍ୟ ସୂକ୍ଷ୍ମକଳା, ସଙ୍ଗୀତ, ଚିକିତ୍ସା, ବିଜ୍ଞାନ ଏ ସବୁରେ ମଧ୍ୟ ପଣ୍ଡିତ । ତେଣୁ ମୁନି ଋଷିମାନଙ୍କୁ ସେ ବା ତା ରାକ୍ଷସ ଗୋଷ୍ଠୀ ଯେଉଁ ବିରୋଧ କରୁଥିଲେ ବା ତାଙ୍କ ଆଶ୍ରମରେ ଯେଉଁ ଭଙ୍ଗାରୁଜା କରୁଥିଲେ ତାହାର କିଛି ହେତୁ ଥିବ ନିଶ୍ଚୟ । ତାଳି ତ ଗୋଟିଏ ହାତରେ ବାଜେ ନାହିଁ । ସେ ହେତୁଟି କ'ଣ? ସେ ସମ୍ପର୍କରେ ରାମାୟଣ ରଚନାକାରୀ ଚୁପ୍ । ମୋ ବିଚାରରେ ସେ ହେତୁଟି ହେଉଛି ଆର୍ଯ୍ୟ ନରପତିମାନଙ୍କର ରାଜ୍ୟ ବିସ୍ତାର ନିଶା ଓ ମୁନିଋଷିମାନଙ୍କର ସେ ଦିଗରେ ପ୍ରତ୍ୟକ୍ଷ ଯୋଗଦାନ ।

ସେ ଯାହା ହେଉ ଯୁଦ୍ଧ ହେବାକୁ ଯାଉଛି । ଯୁଦ୍ଧ ପ୍ରକୃତରେ ଆରମ୍ଭ ପୂର୍ବରୁ ବିଭିନ୍ନ ଦୂତ ରାବଣ ପାଖକୁ ଯାଇ (ହନୁମାନ, ଅଙ୍ଗଦ, ସୁଗ୍ରୀବ ଇତ୍ୟାଦି)ସୀତାଙ୍କୁ ଫେରାଇ ଦେଇ ରାମଙ୍କର କ୍ଷମା ଭିକ୍ଷା କରିବାକୁ ପରାମର୍ଶ ଦେଇଛନ୍ତି ।

ଆଉ କେହି ଜାଣୁ ନଜାଣୁ ଅନ୍ତତଃ କିଷ୍କିନ୍ଧାର ବାସିନ୍ଦା ହିସାବରେ ସୁଗ୍ରୀବ ଇତ୍ୟାଦିଙ୍କର ଜାଣିବାର କଥା ରାବଣ ସୀତାଙ୍କୁ କ'ଣ ପାଇଁ ଚୋରାଇ ନେଇଛି । ଆଜି ମଧ୍ୟ ଦାକ୍ଷିଣାତ୍ୟରେ ପ୍ରତିଶୋଧ ପାଇଁ ବନ୍ଧକ ରଖିବା ଏକ ଅନସୃତ ପନ୍ଥା । ଏମାନେ ରାବଣ ସୀତାଙ୍କୁ ଯେ ବନ୍ଧକ ରଖିଛି ତାହା ବୁଝି ସାରିଥିବେ । ଆଉ ସେ ବନ୍ଧକର ହେତୁ ହେଉଛି ସୂର୍ପଣଖାକୁ ବିନା ଦୋଷ ବା ସାମାନ୍ୟ ଦୋଷରେ ଆଜୀବନ କୁରୂପ କରିଥିବାର ପ୍ରତିଶୋଧ । ତେବେ ରାମଙ୍କର ଏହି ଶୁଭେଚ୍ଛୁ ଦଳ ରାମଙ୍କୁ ସେ ଅଞ୍ଚଳର ଏହି ପରମ୍ପରା, ଏହି ଚଳଣି ନେଇ ଅବଗତ କରାଇଲେ ନାହିଁ କିପରି? ହଁ ସେମାନେ କରିଥିବେ ମାତ୍ର ସୂର୍ପଣଖା କ୍ଷେତ୍ରରେ ରାମ ଲକ୍ଷ୍ମଣ କିଛି ଅପରାଧ କରିଛନ୍ତି ବୋଲି ହୁଏତ ମାନିନେବାକୁ ସେମାନଙ୍କର କ୍ଷତ୍ରୀୟ ରକ୍ତର ଅହଂକାର ବାଧା ଦେଇଛି । ତେଣୁ ସନ୍ଧି ହେବ କିପରି? ଯଦି ରାମ ଭାଇ ଲକ୍ଷ୍ମଣର କାମ ପାଇଁ (ସୂର୍ପଣଖାର ନାକ/କାନ କାଟିବା) ଦୁଃଖ ପ୍ରକାଶ କରି ସନ୍ଧି ପ୍ରସ୍ତାବ ଦେଇଥାନ୍ତେ ଆଉ ରାବଣ ତାହା ଅସ୍ୱୀକାର କରିଥାଆନ୍ତା, ତେବେ ରାବଣକୁ ଆମେ ଏ ଯୁଦ୍ଧ, ଜନକ୍ଷୟ ପାଇଁ ସମ୍ପୂର୍ଣ୍ଣ ଦାୟୀ କରିଥାଆନ୍ତେ । ମାତ୍ର ତା ହୋଇ ନାହିଁ । ରାମ ସେପରି କରିଥିଲେ ପୁରାଣକାରମାନେ ରାମଙ୍କର ଉଦାର ମନୋଭାବର ଭୂୟସୀ ପ୍ରଶଂସା କରି ଅନେକ ମୁଗ୍ଧ ବର୍ଣ୍ଣନାରେ ରାମାୟଣ ପୃଷ୍ଠା ପୂର୍ଣ୍ଣ କରିଥାନ୍ତେ । ଯେହେତୁ ରାମ ତାହା କରିନାହାନ୍ତି ଓ ପୁରାଣକାରମାନେ ମନେ କରିଥିବେ ଯେ ଏପରି ଏକ ସମ୍ଭାବନା (ସନ୍ଧି) ଯେହେତୁ ଥିଲା, ତାହା ନହୋଇଥିବାରୁ ରାମଙ୍କୁ ଭବିଷ୍ୟତ କାଳେ ଦୋଷୀ

କରିବ, ସେଥିପାଇଁ ମୂଳରୁ ଏ ବ୍ୟାପାରରେ ପୁରାଣ ସମ୍ପୂର୍ଣ୍ଣ ନୀରବ ।

ବିଭୀଷଣର କାରବାର ମଧ୍ୟ ଦେଖନ୍ତୁ । ଆଉ କେହି ଜାଣୁ ନଜାଣୁ ପ୍ରତିଶୋଧ ପାଇଁ ଯେ ରାବଣ ସୀତାଙ୍କୁ ବନ୍ଧକ ରଖିଛି ତାହା ସେ ନିଜେ ଭଲ ଭାବେ ଜାଣିଛି । ମାତ୍ର ରାମଙ୍କୁ ସେ ଏ ବ୍ୟାପାରରେ ସୂଚନା ଦେଇ ସନ୍ଧି ପାଇଁ ପଥ ପରିଷ୍କାର କରିନାହିଁ । ଯଦି ବା କରିଥିବ, ତାହାର ବିନ୍ଦୁମାତ୍ର ସୂଚନା ରାମାୟଣରେ ନାହିଁ । ହୁଏତ ବିଭୀଷଣ ଆପଣାର ସ୍ୱାର୍ଥ ପାଇଁ ସନ୍ଧି ସପକ୍ଷରେ ନଥିବ । କାରଣ ସନ୍ଧି ହେଲେ ଲଙ୍କାର ଗାଦି ତାକୁ ମିଳିବ ନାହିଁ । ରାବଣ ତରଫରୁ ଯଦି ବା ଏପରି (ସନ୍ଧି) ପ୍ରସ୍ତାବ ଆସିଥିବ, କାରଣ ମନ୍ଦୋଦରୀ ପ୍ରଭୃତି ଯୁଦ୍ଧ ସପକ୍ଷରେ ନଥିଲେ, ତାହା ରାମ ଗ୍ରହଣ କରି ନଥିବେ । ସୂର୍ପଣଖା କ୍ଷେତ୍ରରେ ସେ ଅପରାଧ କରିଛନ୍ତି ବୋଲି ଦୁଃଖ ପ୍ରକାଶ କରିବାକୁ ତାଙ୍କ କ୍ଷତ୍ରୀୟ ରକ୍ତ ବାଧା ଦେଇଛି । ତେଣୁ ଯୁଦ୍ଧ ଅନିବାର୍ଯ୍ୟ ହୋଇ ପଡିଛି ।

ଆମର ବିଚାରରେ ରାମ-ରାବଣ ଯୁଦ୍ଧ ଏବଂ ତା'ର ପରିଣତି ଯେଉଁଥିରେ ହଜାର ହଜାର ସୈନ୍ୟସାମନ୍ତ, ଯୋଦ୍ଧା ମୃତ୍ୟୁ ବରଣ କଲେ ସେଥିପାଇଁ ରାବଣକୁ କେବଳ ଦାୟୀ କରିବା ଅନୁଚିତ । ମାତ୍ର ଯାହା ଆଗରୁ କହିଛି, ରାମାୟଣ ତ ଅସୁରମାନେ ଲେଖି ନାହାନ୍ତି, ଲେଖିଛନ୍ତି ଆର୍ଯ୍ୟମାନେ । ତେଣୁ ଏ ପ୍ରକାର ଅବିଚାର ହୋଇଛି ଓ ହେବା ସ୍ୱାଭାବିକ୍ ମଧ୍ୟ ।

ତେବେ ଉପସଂହାରରେ ଏତକ ମାନିବାକୁ ହେବ ଯେ କେତେ ହଜାର ବର୍ଷ ତଳର ସମାଧି ତଳୁ ପ୍ରକୃତ ସତ୍ୟକୁ ଖୋଜି ପାଇବା ସମ୍ଭବ ନୁହେଁ । ମାତ୍ର ଆର୍ଯ୍ୟ ଲେଖକ କୃତ, ଯେଉଁ ଇତିହାସ (ରାମାୟଣ) ସେ ସମୟର ଆମ ଆଗରେ ଅଛି, ତାକୁଇ ପରୀକ୍ଷା କରି ଦେଖିଲେ ଯେକୌଣସି ନିରପେକ୍ଷ ସମାଲୋଚକ ଏହି ଉପସଂହାରରେ ଉପନୀତ ହେବ ଯେ ରାବଣର ଚରିତ୍ର ଠିକ୍ ଭାବେ ରାମାୟଣରେ ଚିତ୍ରିତ ହୋଇନାହିଁ । ତା' ପ୍ରତି ନ୍ୟାୟ ହୋଇ ନାହିଁ ।

# ରାବଣ ବଂଶବୃକ୍ଷ




(Source:Ravan:The Great King of Lanka:M.S. Purnalingum Pillai)

## ଦଶରଥ କୈକେୟୀ ଓ ଭରତ

ରାମାୟଣର ବିଷୟବସ୍ତୁ ହେଉଛି ପ୍ରଭୁ ଶ୍ରୀରାମଙ୍କ ଜୀବନର କାହାଣୀ । ଅନେକ ଘାତ, ପ୍ରତିଘାତ, ସଂଘର୍ଷ ତଥା ସେ ସବୁକୁ ଧୈର୍ଯ୍ୟ, ସାହସର ସହ ମୁକାବିଲାର କାହାଣୀ । ତାଙ୍କର ତ୍ୟାଗ, ଦାୟୀତ୍ୱବୋଧ ତଥା ଉଚ୍ଚ ମୂଲ୍ୟବୋଧର କାହାଣୀ । ଗୋଟାଏ ଜୀବନକାଳ ମଧ୍ୟରେ ଯେତେ ସବୁ ଘଟଣା, ଦୁର୍ଘଟଣା, ଉତ୍‌ଥାନ ପତନର ସାମନା ଶ୍ରୀରାମଙ୍କୁ କରିବାକୁ ପଡ଼ିଲା, ତାହା ହୁଏତ ଅନ୍ୟ କୌଣସି ରାଜପୁତ୍ର ଜୀବନରେ ଘଟି ନାହିଁ । ଆଉ ସେ ସବୁକୁ ସ୍ଥିର ବିଚାର ବୁଦ୍ଧି ସହ ସଫଳତାର ସହ ମୁକାବିଲା କରି ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାରୁ ସେ ଆଜି ସର୍ବଜନପୂଜିତ ମର୍ଯ୍ୟାଦା ପୁରୁଷ ପୁରୁଷୋତ୍ତମ ।

ମାତ୍ର ଏ ସମସ୍ତ ଘଟଣାବଳୀ କ'ଣ ଅପରିହାର୍ଯ୍ୟ ଥିଲା ? ଏହାକୁ କ'ଣ ଏଡ଼ାଇ ଦିଆଯାଇ ପାରିନଥାନ୍ତା ? ଏ ପ୍ରଶ୍ନର ଉତ୍ତର ଖୋଜିବାକୁ ହେଲେ ଆମକୁ ପ୍ରଭୁ ଶ୍ରୀରାମଙ୍କ ଜୀବନରେ ଘଟିଥିବା ପ୍ରମୁଖ ଘଟଣାବଳୀର ମୂଳ ଖୋଜିବାକୁ ହେବ । ମୁଖ୍ୟ ଘଟଣା ହେଉଛି ପିତୃ ସତ୍ୟ ପାଳନ ପାଇଁ ରାମଙ୍କର ଚଉଦ ବର୍ଷ ବନବାସ । ଅନ୍ୟ ଘଟଣା ଯଥା ସୀତା ହରଣ, ବାଳୀବଧ, ସୁଗ୍ରୀବ ସହ ମିତ୍ରତା ଓ ରାବଣ ସଂହାର ସହ ସୀତା ଉଦ୍ଧାର ଗୋଟିକ ପରେ ଗୋଟିଏ ଘଟି ଚାଲିଛି ଓ ରାମ ତା'ର ମୁକାବିଲା କରି ଚାଲିଛନ୍ତି । ମାତ୍ର ରାମଙ୍କ ବନବାସ ବା ପିତୃ ସତ୍ୟ ପାଳନ ଏ ଶୃଙ୍ଖଳାର ମୂଳ ନୁହେଁ । ମୂଳ ଯାଇ ରହିଛି ଅନ୍ୟତ୍ର । ମନ୍ଥରା ବା କୈକେୟୀ, ଏମାନେ ନିମିତ୍ତ ମାତ୍ର ।

ବାଖ୍ୟାକାରମାନେ କୈକେୟୀ ଓ ମନ୍ଥରାଙ୍କୁ ରାମାୟଣର ଖଳ ନାୟିକା ଭାବେ ଚିତ୍ରିତ କରି, ସେମାନଙ୍କୁ ଆମର ଘୃଣାର ପାତ୍ର କରି ଦେଇଛନ୍ତି । ମାତ୍ର ଏ ନାଟକର ଖଳ ନାୟିକା ସେମାନେ ନୁହନ୍ତି । ସେହି ମୂଳଟି ଖୋଜିବାର ପ୍ରୟାସ ଆବଶ୍ୟକ:

ଇକ୍ଷ୍ୱାକୁ ବଂଶର ଉତ୍ତରାଧିକାରୀ, ଅଯୋଧ୍ୟାର ନରପତି ଦଶରଥ ବୃଦ୍ଧକାଳରେ କୈକେୟୀଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବାକୁ ଚାହିଁଛନ୍ତି । ମାତ୍ର କୈକେୟୀଙ୍କ ପିତା ଅଶ୍ୱପତି, ଏ ପ୍ରସ୍ତାବରେ ପ୍ରଥମେ ଅନିଚ୍ଛା ପ୍ରକାଶ କରିଛନ୍ତି । ବଂଶ ମର୍ଯ୍ୟାଦା, ସାମ୍ରାଜ୍ୟ ତଥା ଐଶ୍ୱର୍ଯ୍ୟ ଦୃଷ୍ଟିରୁ ଦେଖିଲେ ଦଶରଥ ଅତ୍ୟନ୍ତ ଯୋଗ୍ୟ ପାତ୍ର । ବୟସର

ପାର୍ଥକ୍ୟଟା ସେ ସମୟରେ ଅତି ବେଶୀ ଗୁରୁତ୍ୱର ସହ ବିଚାର କରାଯାଉ ନଥିଲା । ମାତ୍ର ଅଶ୍ୱପତି ତାଙ୍କର ଅତ୍ୟନ୍ତ ସୁନ୍ଦରୀ, ଚଳଚଞ୍ଚଳ, ଅଶ୍ୱାରୋହଣ ଓ ଅସ୍ତ୍ର ଚାଳନାରେ ପଟୁ କନ୍ୟା କୈକେୟୀଙ୍କ ଭବିଷ୍ୟତ ନିରାପତ୍ତା ପାଇଁ ଦଶରଥଙ୍କ ଠାରେ କେତେକ ସର୍ତ୍ତ ରଖିଛନ୍ତି ଏବଂ ଏହାର ପାଳନ ପାଇଁ ସେ ଯୁଗ ନିୟମ ଅନୁସାରେ ସତ୍ୟ କରାଇ ନେଇଛନ୍ତି । ସର୍ତ୍ତ ଅନୁଯାୟୀ ଦଶରଥ କନ୍ୟାଶୁଳ୍କ ହିସାବରେ କୈକେୟୀଙ୍କ ପୁତ୍ର ଅଯୋଧ୍ୟାର ରାଜଗାଦୀ ପାଇ ତାଙ୍କର ଉତ୍ତରାଧିକାରୀ ହେବ ବୋଲି ଅଶ୍ୱପତିଙ୍କୁ ବଚନ ଦେଇଛନ୍ତି । ନିଜର ବୃଦ୍ଧାବସ୍ଥା ସତ୍ତ୍ୱେ ଆପଣାର କାମନାର ପୂର୍ତ୍ତି ପାଇଁ ହିତାହିତ ଜ୍ଞାନ ହରାଇ ଦଶରଥ ଏ ଯେଉଁ ସର୍ତ୍ତ ପାଳନର ପ୍ରତିଶ୍ରୁତି ଦେଲେ ବା କନ୍ୟାଶୁଳ୍କ ପାଇଁ ରାଜି ହେଲେ, ସେଇଟି ହିଁ ମଞ୍ଜି ହୋଇ ସମଗ୍ର ରାମାୟଣକୁ ଜନ୍ମ ଦେଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସ୍ତ୍ରୈଣ ଦଶରଥ ଯେଉଁ ମଞ୍ଜିଟି ପୋତିଛନ୍ତି, ତାହା ମନ୍ଥରା ଓ କୈକେୟୀଙ୍କ ବାଟ ଦେଇ ଶାଖା ପ୍ରଶାଖା ମେଲାଇଛି ଓ ସମଗ୍ର ରାମଙ୍କ ଜୀବନକୁ ତଥା ଅଯୋଧ୍ୟା ରାଜ ପରିବାରକୁ କବଳିତ କରିନେଇଛି । କୈକେୟୀଙ୍କ ରୂପରେ ଦଶରଥ ମୁଗ୍ଧ । ଯୁଦ୍ଧ କ୍ଷେତ୍ରରେ ମଧ୍ୟ କୈକେୟୀ ପାଖେ ପାଖେ ରହି ନିଜର ନିପୁଣତା ଦେଖାଇ ରାଜାଙ୍କୁ ମୋହିତ କରି ପକାଇଛନ୍ତି । ରାଜା ଏକ ବିଶେଷ ମୁହୂର୍ତ୍ତରେ ରାଣୀଙ୍କୁ ଦୁଇଟି ବର ମାଗି ନେବାକୁ କହିଛନ୍ତି । ମାତ୍ର କୈକେୟୀ ଜଣେ ସରଳା ଚଳଚଞ୍ଚଳା ନାରୀ । ଜୀବନରେ କୌଣସି ଅଭାବ, ଅବଶୋଷ ନଥିବାରୁ ରାଜାଙ୍କଠାରୁ ବର ବଦଳରେ କ'ଣ ମାଗି ନେବେ ତାହା ସେହି କ୍ଷଣରେ ନିଷ୍ପତ୍ତି ନେଇ ପାରି ନାହାନ୍ତି । ଯେଉଁ ବର ଦିଆଯାଏ ତାହା ତତ୍କ୍ଷଣାତ୍ ମାଗି ନିଆଯାଏ । ଭବିଷ୍ୟତକୁ ବାକି ଖାତାରେ ଗଡ଼େ ନାହିଁ । ମାତ୍ର ଦୁର୍ବଳ ଦଶରଥ ଅତି ପ୍ରେମରେ ଏଠାରେ ଏହି ନିୟମର ବ୍ୟତିକ୍ରମ କରିଛନ୍ତି ଓ ଭବିଷ୍ୟତରେ ଯେତେବେଳେ ଚାହିଁବେ, କୈକେୟୀଙ୍କର ଦୁଇଟି ଇଚ୍ଛା ସେ ପୂରଣ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ଦଶରଥଙ୍କର ଦ୍ୱିତୀୟ ଭୁଲ ଏଠାରେ । ରାମଙ୍କ ରାଜ୍ୟ ତ୍ୟାଗ ଓ ବନବାସ ପାଇଁ ପଥ ପରିଷ୍କାର ସେ ବହୁ ପୂର୍ବରୁ କରି ରଖିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରତ୍ୟେକ ନିଜ ନିଜ କର୍ମର ଫଳ ଭୋଗ କରିବେ । ତାହା ଅନିବାର୍ଯ୍ୟ । ଏ ଫଳ ମିଠା ହେଉ ବା ଖଟା ହେଉ, ଭୋଗ ହେବ ହିଁ ହେବ । ଏ କ୍ଷୁଦ୍ର ଜୀବନ ସେଥିପାଇଁ ଯଥେଷ୍ଟ ନହେଲେ ତାହା ପର ଜନ୍ମକୁ ବାକି ରହିବ ଓ ମୂଳ ସହିତ ସୁଧ ମିଶି ଭୋଗ ହେବ । ମାତ୍ର ଦଶରଥ ଏହି ଜନ୍ମରେ ହିଁ ତାଙ୍କ ଅବିମୃଶ୍ୟକାରୀତାର ଫଳ ଭୋଗ କରିଛନ୍ତି । ଅନ୍ତିମ କ୍ଷଣରେ ହା ହୁତାଶ ହୋଇ ପ୍ରିୟ ପୁତ୍ରର ମୁଖ ନଦେଖି, ଅଯୋଧ୍ୟାବାସୀଙ୍କ ଆଖିରେ ନିଜକୁ ଲଜ୍ଜିତ କରି ସଂସାର ତ୍ୟାଗ କରିଛନ୍ତି ।

ସେଥିପାଇଁ ଦଶରଥ ଯୁବକ ଅବସ୍ଥାରେ ଅନ୍ଧ ପିତାମାତାଙ୍କର ପୁତ୍ରକୁ ଭୁଲବଶତଃ ମାରି ଦେଇଥିଲେ ବୋଲି ମନକୁ ପ୍ରବୋଧନା ଦେଇଛନ୍ତି । ତାହାତ ତାଙ୍କ ଅଜାଣତରେ

ହୋଇଥିଲା । ମାତ୍ର ସମ୍ପୂର୍ଣ୍ଣ ସୁସ୍ଥ ମାନସିକତାରେ ଜାଣିଶୁଣି ସେ ଯେଉଁ ଦୁଇଟି ଭୁଲ କାମ କରିଛନ୍ତି, ତା'ର ଫଳ ତ ସେ ଭୋଗ କରିବାକୁ ବାଧ୍ୟ । ଆଉ ତାହାହିଁ ହୋଇଛି ।

କୈକେୟୀଙ୍କ ଉପରେ ଦଶରଥ ତାଙ୍କର ସମଗ୍ର ଦୃଷ୍ଟି କେନ୍ଦ୍ରୀଭୂତ କରିଛନ୍ତି, ପ୍ରାଧାନ୍ୟ ଦେଇଛନ୍ତି । ସେ ଅନ୍ୟ ଦୁଇ ରାଣୀ ବିଶେଷ କରି ପାଟରାଣୀ କୌଶଲ୍ୟାଙ୍କୁ ଅବହେଳା କରିଛନ୍ତି । କୈକେୟୀଙ୍କ ଉଆସ ହୋଇ ଯାଇଛି ତାଙ୍କର ଉଆସ ।

ଦଶରଥଙ୍କ ନିଜ ତରଫରୁ ଅନ୍ୟ ରାଣୀମାନଙ୍କ ପ୍ରତି ହେଉଥିବା ପାତର ଅନ୍ତର ଯଦି କୈକେୟୀଙ୍କ ବ୍ୟବହାରରେ ପ୍ରତିଫଳିତ ହୁଏ, ସେଥିରେ ବିସ୍ମିତ ହେବାର କିଛି ଅଛି କି ? କୈକେୟୀ ହଠାତ୍ ବର ନିଜ ପାଇଁ ମାଗି ନନେବା ପଛରେ ତାଙ୍କର ସରଳତା ତଥା ସେ ସମୟର ପରମ୍ପରା ଓ ପାରିବାରିକ ବ୍ୟବସ୍ଥାରେ ସେ ସନ୍ତୁଷ୍ଟ ଥିବା ପରି ମନେହୁଏ । ତା' ନହୋଇଥିଲେ ସେ ତ ସେଇ କ୍ଷଣରେ ଅନ୍ୟ ରାଣୀମାନଙ୍କଠାରୁ ଉଚ୍ଚତର ଆସନ ମାଗି ନେଇ ପାରିଥାଆନ୍ତେ, ଆଉ ସ୍ତ୍ରୈଣ ଦୁର୍ବଳ ବ୍ୟକ୍ତିତ୍ୱ ଦଶରଥ ସେଥିରେ ରାଜି ମଧ୍ୟ ହୋଇଥାଆନ୍ତେ । ମାତ୍ରା ତାହା ହୋଇ ନାହିଁ ।

ଦଶରଥଙ୍କ ଆଚରଣରେ ଅନ୍ୟ ରାଣୀଙ୍କ ପ୍ରତି ଅବହେଳା ଓ ହେୟ ମନୋଭାବ କୈକେୟୀଙ୍କୁ କ୍ରମେ ପ୍ରଭାବିତ କରିଥିବ । ଆଉ ସେଇ ହେୟ ଭାବ, ବେଖାତିର ମନୋଭାବ କୈକେୟୀଙ୍କର ରାଣୀ କୌଶଲ୍ୟାଙ୍କ ପ୍ରତି ଆଚରଣରେ ପ୍ରକାଶ ପାଇଥିବ । ଏଥିପାଇଁ ଆମେ ମୁଖ୍ୟତଃ କାହାକୁ ଦାୟୀ କରିବା ? କୈକେୟୀଙ୍କୁ ନା ଦଶରଥଙ୍କୁ ?

ଦଶରଥ ଅତ୍ୟନ୍ତ ଦୁର୍ବଳ ଚରିତ୍ର । କଥା ଦେଇ କଥା ନରଖିବା ଓ ସେଥିପାଇଁ ବାହାନା ଖୋଜିବା ତାଙ୍କ ଆଚରଣରୁ ଜଣା ପଡ଼ିଯାଉଛି । ଭରତଙ୍କୁ ରାଜଗାଦୀ ଦେବା ପ୍ରସ୍ତାବରୁ ଓହରିଯିବା ନିଷ୍ପତ୍ତିର ବହୁ ପୂର୍ବରୁ ତାଙ୍କର ଏ ଦୁର୍ବଳତା ଜଣାପଡ଼ିଛି । ଘଟଣାଟି ଏହି ପରି । ମହର୍ଷି ବିଶ୍ୱାମିତ୍ର ଦଶରଥଙ୍କ ଦରବାରକୁ ଆସିଛନ୍ତି ଓ ଦଶରଥ ବିଶ୍ୱାମିତ୍ରଙ୍କ ଇଚ୍ଛା ପୂର୍ଣ୍ଣ କରିବେ ବୋଲି ବଶିଷ୍ଠଙ୍କ ଉପସ୍ଥିତିରେ ସତ୍ୟ କରିଛନ୍ତି । ମାତ୍ର ମହର୍ଷି ଯେତେବେଳେ ରାମଙ୍କୁ ସଙ୍ଗରେ ନେବାକୁ (ଯଜ୍ଞ ରକ୍ଷା ପାଇଁ) ପ୍ରସ୍ତାବ ଦେଇଛନ୍ତି, ଦଶରଥ ତାଙ୍କ ପ୍ରତିଶ୍ରୁତିରୁ ଓହରି ଯିବାକୁ ବାହାନା ଖୋଜିଛନ୍ତି । "ରାମ ପିଲାଟା । ସେ ଏକା ପାରିବ ନାହିଁ । ମୁଁ ତା' ବଦଳରେ ନିଜେ ଯିବି ଯଜ୍ଞ ରକ୍ଷା ପାଇଁ ।" ଏହିପରି ଅନେକ ପ୍ରଳାପ କରିଛନ୍ତି । ମାତ୍ର ରାମଙ୍କୁ ମାଗିବା ପ୍ରସ୍ତାବ ପଛରେ ବିଶ୍ୱାମିତ୍ରଙ୍କର ଅନ୍ୟ ଉଦ୍ଦେଶ୍ୟ ରହିଛି । (ସେ ଉଦ୍ଦେଶ୍ୟଟି କ'ଣ ତା'ର ଆଲୋଚନା ଅନ୍ୟତ୍ର କରାଯାଇଛି ।) ସେ ଦଶରଥଙ୍କ କଥା ବା ଶୁଣିବେ କାହିଁକି ? ପୁଣି ତାଙ୍କୁ ବଚନ ଦେଇ ଓହରି ଯିବାକୁ ବାହାନା କରିବାରେ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇଛନ୍ତି । ମହର୍ଷିଙ୍କ କ୍ରୋଧ ତଥା ବଶିଷ୍ଠଙ୍କ ସୁପରାମର୍ଶ ତଥା ଆଶ୍ୱାସନା ପାଇ, ଦଶରଥ ଅଗତ୍ୟା ରାମ ଲକ୍ଷ୍ମଣଙ୍କୁ ଋଷିଙ୍କ ସହ ପଠାଇଛନ୍ତି । ଏ ଘଟଣାଟି ଦଶରଥଙ୍କ ଦୁର୍ବଳ ବ୍ୟକ୍ତିତ୍ୱର ଏକ ଉଦାହରଣ ।

ଚାରି ଭାଇ ମିଥିଳାରୁ ବିବାହ ସାରି ଫେରିଛନ୍ତି ଏବଂ ଭରତ ମାତାମହଙ୍କ ଘରକୁ

ଶତ୍ରୁଘ୍ନଙ୍କ ସହ ଚାଲି ଯାଇଛନ୍ତି । ରାମାୟଣ ପଢ଼ିଲେ ମନେ ହୁଏ ଭରତ ଅଧିକାଂଶ ସମୟ ମାତାମହଙ୍କ ଘରେ କଟାଇଛନ୍ତି । ତା'ର କାରଣ ଆମକୁ ଅଜଣା । ଦଶରଥ କ'ଣ ପାଇଁ ଏହାକୁ ପ୍ରଶୟ ଦେଇଥିଲେ ବୁଝି ହୁଏନା । ମାତ୍ର ପରବର୍ତ୍ତି ଘଟଣାକୁ ଗଭୀର ଭାବେ ପର୍ଯ୍ୟାଲୋଚନା କଲେ ମନେହୁଏ ଭରତଙ୍କୁ ଅଯୋଧ୍ୟାରୁ ଦୂରରେ ରଖିବା ପାଇଁ ଦଶରଥଙ୍କର ଏହା ଥିଲା ଏକ ସୁଚିନ୍ତିତ ଯୋଜନା । ଅଯୋଧ୍ୟାବାସୀଙ୍କ ପାଖରେ ଭରତ ବିଶେଷ ପରିଚିତ ନହୁଅନ୍ତୁ । ଅଯୋଧ୍ୟାବାସୀ, ପାତ୍ରମନ୍ତ୍ରୀ ତଥା ସୈନ୍ୟ, ସେନାପତିଙ୍କ ଉପରେ ଭରତଙ୍କର କୌଣସି ସିଧାସଳଖ ପ୍ରଭାବ ନରହୁ, ହୁଏତ ଏଇଆ ଦଶରଥ ଚାହୁଁଥିଲେ ।

ଏସବୁ ଆମର ମନଗଢ଼ା କାହାଣୀ ନୁହେଁ । ପରବର୍ତ୍ତୀ ଘଟଣାମାନଙ୍କର ଆଲୋଚନା ସମୟରେ, ତା ପଶ୍ଚାତରେ ଥିବା ସମ୍ଭାବ୍ୟ କାରଣ ହିଁ ଏଠାରେ ଉଲ୍ଲେଖ କରାଯାଉଛି ।

ସରଳ ବିଶ୍ୱାସୀ କୈକେୟୀ ହୁଏତ ଏହା ପଛରେ ଥିବା ଉଦ୍ଦେଶ୍ୟ ବୁଝି ପାରି ନାହାନ୍ତି । ମାତ୍ର ତାଙ୍କର ଦାସୀ ମନ୍ଥରା, ଯେ ସର୍ବଦା କୈକେୟୀଙ୍କ ସ୍ୱାର୍ଥ ଜଗି ରହିଛି, ତା' ପାଖରେ ବୋଧହୁଏ ଅବୋଧ ରହି ନାହିଁ ।

ଭରତ ଅଜା ଘରକୁ ଯିବା ମାତ୍ରକେ, ରାମଙ୍କୁ ଯୁବରାଜ-ଅଭିଷିକ୍ତ କରିବା ପାଇଁ ଦଶରଥ ଲାଗି ପଡିଛନ୍ତି । ସମଗ୍ର ଅଯୋଧ୍ୟାବାସୀ, ପାତ୍ରମନ୍ତ୍ରୀ, ସେନାପତି ତଥା ରାଜ ସଭା ଡ଼ାକି ସ୍ୱୀକୃତି ନେଇଛନ୍ତି ।

ରାମ ତ ଲୋକପ୍ରିୟ । ଜନତା ଏ ପ୍ରସ୍ତାବରେ ଅତ୍ୟନ୍ତ ଖୁସୀ ହୋଇଥିବେ । ମାତ୍ର ଦଶରଥଙ୍କ ଉଦ୍ଦେଶ୍ୟ ହୁଏତ ରହିଛି ରାଜସଭାର ସ୍ୱୀକୃତି ଦାନ ଭବିଷ୍ୟତ ବିବାଦରେ ରାମଙ୍କର ରକ୍ଷା କବଚ ହୋଇ ଠିଆ ହେବ । ରାଜସଭାର ସ୍ୱୀକୃତି ନେବା ସମୟରେ ଦଶରଥ ନିଜ ବୃଦ୍ଧାବସ୍ଥା ଉଲ୍ଲେଖ କରିଛନ୍ତି ମାତ୍ର ଅଶ୍ୱପତିଙ୍କୁ ଦେଇଥିବା ପ୍ରତିଶ୍ରୁତି କଥା ଭୁଲି ଯାଇଛନ୍ତି । ନା ଭୁଲି ନାହାନ୍ତି ହୁଏତ ଜାଣିବୁଝି ସେଇଟି ଲୁଚାଇ ରଖିଛନ୍ତି । କାରଣ ଏକଥା ଜଣାଇଥିଲେ ଅଯୋଧ୍ୟାବାସୀ ଏ ପ୍ରସ୍ତାବରେ ହୁଏତ ସ୍ୱୀକୃତି ଦେଇ ନଥାନ୍ତେ ଓ ଦଶରଥ ରାଜସଭା ସମ୍ମୁଖରେ ଅତ୍ୟନ୍ତ ଦୟନୀୟ ଚରିତ୍ରଟିଏ ହୋଇଥାଆନ୍ତେ ।

ମାତ୍ର ରାମଙ୍କୁ ଅଭିଷେକ ପାଇଁ ପ୍ରସ୍ତୁତ ହେବା ବେଳେ ଏତକ କହିଛନ୍ତି, 'ଭରତ ଅଜା ଘରେ ଅଛି । ଏ କାମଟି ଯଥା ଶୀଘ୍ର ବଢାଇ ଦେବାକୁ ମୁଁ ଚାହୁଁଛି । ଭରତ ଅତ୍ୟନ୍ତ ସଚ୍ଚରିତ୍ର, ଭ୍ରାତୃପ୍ରେମୀ । ମାତ୍ର ହୁଏତ ରାଜ୍ୟ ଲୋଭରେ କିଛି ଅଘଟଣ ଘଟାଇବେ, ସେଥିପାଇଁ ତା'ର ଅନୁପସ୍ଥିତିରେ ଏ କାମ ମୁଁ ସାରି ଦେବାକୁ ଚାହୁଁଛି ।' ରାମ ଏ ସବୁ ଜାଣିବା ପରେ ମଧ୍ୟ ଅଭିଷେକ ପାଇଁ କାହିଁକି ରାଜି ହେଲେ ତାହା ଆମ ପାଇଁ ଅବୋଧ । ରାମଙ୍କ ନିର୍ଲୋଭ, ସତ୍ୟନିଷ୍ଠ ଚରିତ୍ର କାହିଁକି ଏଥିରେ ପ୍ରଶ୍ନ ଉଠାଇଲା ନାହିଁ ତାହା ଏଠାରେ ଆଲୋଚ୍ୟ ନୁହେଁ । ତାହାର ଆଲୋଚନା ଆମେ ଅନ୍ୟତ୍ର କରିଛୁ ।

ଦଶରଥଙ୍କ ଏ ପ୍ରକାର କାରବାରରୁ ଆମେ କ'ଣ ବୁଝିବା ? କ୍ଷଣିକ ମୋହ ଉତ୍ତେଜନା

କଟିଯିବା ପରେ ଅଶ୍ୱପତିଙ୍କୁ ଦେଇଥିବା ପ୍ରତିଶ୍ରୁତିଟି ତାଙ୍କୁ ଗୋଟାଏ ବିରାଟ ବୋଝ ପରି ମନେ ହୋଇଛି। ପ୍ରଥମରୁ କିପରି ଏଥିରୁ ମୁକୁଳିବେ, ସେ ତା'ର ବାଟ କରି ଚାଲିଛନ୍ତି। ଭରତଙ୍କୁ ଯଥା ସମ୍ଭବ ଅଯୋଧ୍ୟା ଜନତା ଠାରୁ ଦୂରରେ ରଖିଛନ୍ତି। ସଭାସଦ୍‌ଙ୍କୁ ଆପଣାର ବୃଦ୍ଧାବସ୍ଥାର ବାହାନା ଦେଖାଇ ରାମ-ଅଭିଷେକ ପ୍ରସ୍ତାବଟି ପାଇଁ ସର୍ବସମ୍ମତି କ୍ରମେ ସ୍ୱୀକୃତି ନେଇଛନ୍ତି ଓ ସର୍ବୋପରି ଭରତଙ୍କ ବିନା ଉପସ୍ଥିତିରେ ଉତ୍ସବଟି ସାରି ଦେବାକୁ ବସିଛନ୍ତି। ଅଶ୍ୱପତିଙ୍କୁ ଏ ଉତ୍ସବକୁ ନିମନ୍ତ୍ରଣ ନକରିବାର ପଛରେ ଥିବା କାରଣ ଦିନର ଆଲୁଅ ପରି ସ୍ପଷ୍ଟ।

ଏ ସମସ୍ତ କାର୍ଯ୍ୟ କଳାପ ଚକ୍ରାନ୍ତର ଏକ ଅଂଶ ଏବଂ ଏଥିରୁ ରାଜା ଦଶରଥଙ୍କ ଚରିତ୍ରର ଏକ ପ୍ରାଞ୍ଜଳ ଚିତ୍ର ମିଳୁଛି। ତା'ପରେ ଆସନ୍ତୁ ଦେଖିବା ରାଜାଙ୍କର କୈକେୟୀଙ୍କୁ ଦେଇଥିବା ପ୍ରତିଶ୍ରୁତି ଯାହାକି ସେ ଖାତାରେ ଗଡ଼ାଇ ରଖିବାକୁ ମଧ୍ୟ ରାଜି ହୋଇଛନ୍ତି। ଯାହାକି ପରମ୍ପରା ବିରୋଧୀ। ଆମର ବିଚାର ସେ ପରମ୍ପରା ବୈଧତା ବିଷୟରେ ନୁହେଁ। ଆମର ବିଚାର ଏ ସବୁ ପ୍ରତିଶ୍ରୁତି ପରେ ଦଶରଥ ଯୋଜନାବଦ୍ଧ ଭାବେ ନିଜ ପ୍ରତିଶ୍ରୁତି ବନ୍ଧନରୁ ମୁକୁଳି ଯିବାକୁ ପ୍ରୟାସ କରିଛନ୍ତି, ମାତ୍ର ତାହା କରିପାରି ନାହାନ୍ତି। ଦାସୀ ମନ୍ଥରା ନିଜ ମାଲିକାଣିର ସ୍ୱାର୍ଥ ଜଗିବାକୁ ଯାଇ, କୈକେୟୀଙ୍କ ମନରେ ବିଷ ମଞ୍ଜି ପୋତି ଦେଇଛି। ଆଉ ତା'ର ଫଳ ହୋଇଛି, ରାମଙ୍କର ଚଉଦ ବର୍ଷ ବନବାସ ଓ ତଦ୍‌ଜନିତ ଅନ୍ୟାନ୍ୟ ଘଟଣା, ଦୁର୍ଘଟଣା। ତେଣୁ ରାମଙ୍କର ବନବାସ ପାଇଁ କୈକେୟୀ ଓ ମନ୍ଥରାଙ୍କୁ କେବଳ ଦାୟୀ କରିବା ଉଚିତ୍ ନୁହେଁ। ମୁଖ୍ୟ ଦାୟୀ ଦଶରଥ। ସେ ହିଁ ମଞ୍ଜିଟି ପୋତିଛନ୍ତି। ସେ କୌଣସି ବାଧ୍ୟ ବାଧକତାରେ ସମାଜର ସାମୁହିକ କଲ୍ୟାଣ ପାଇଁ ଏକଥା କରି ନାହାଁନ୍ତି। କରିଛନ୍ତି ଆପଣାର କ୍ଷୁଦ୍ର ନ୍ୟୂନ ସ୍ୱାର୍ଥର ଚରିତାର୍ଥ ପାଇଁ। ତେଣୁ କୈକେୟୀଙ୍କୁ ଏ ବ୍ୟାପାରରେ ଅତି ବେଶୀ ଦୋଷ ଦେବା ଅନୁଚିତ।

ଆସନ୍ତୁ ଭରତଙ୍କ ପାଖକୁ। ପ୍ରକୃତରେ ଦେଖିବାକୁ ଗଲେ ଭରତ ହେଉଛନ୍ତି ରାମାୟଣର ରାମ ଅନୁରୂପ ଅନ୍ୟ ଏକ ଚରିତ୍ର। ରାମଙ୍କୁ ଜୀବନରେ ଯେପରି ଅନେକ ଦୁର୍ଘଟଣା, ପ୍ରତିକୂଳ ପରିସ୍ଥିତିର ସାମନା କରିବାକୁ ପଡ଼ିଛି, ଭରତଙ୍କ ଜୀବନରେ ମଧ୍ୟ ସେହି ଏକ ପ୍ରକାର କଥା ଘଟିଛି।

ରାମଙ୍କ ବନବାସ ପରେ, ଦଶରଥ ପୁତ୍ର ଶୋକରେ ମୃତ୍ୟୁ ବରଣ କରିବା ଘଟଣା ଭରତଙ୍କ ମୁଣ୍ଡ ଉପରେ ପାହାଡ଼ ପରି ଲଦି ହୋଇ ଯାଇଛି। ସେ ସ୍ୱାଭାବିକ ଭାବେ ରଘୁକୁଳ ଉପରେ ଆସିଥିବା ଏହି ବିବାଦ ପାଇଁ କୈକେୟୀଙ୍କୁ ଦାୟୀ କରିଛନ୍ତି ଓ ତାଙ୍କର ପୁତ୍ର ହିସାବରେ ନିଜକୁ ଅତ୍ୟନ୍ତ ଦୋଷୀ ଓ ସଙ୍କୁଚିତ ମନେ କରିଛନ୍ତି। ରାଜଗାଦୀ ପାଇଲେ ବୋଲି ଗୋଟିଏ ମୁହୂର୍ତ୍ତ ମଧ୍ୟ ଖୁସୀ ହୋଇନାହାନ୍ତି। ରାଜା ଦଶରଥ ଭରତ ଚରିତ୍ରକୁ ମଧ୍ୟ ସଠିକ୍ ବୁଝିନାହାନ୍ତି। ତେଣୁ ଭରତଙ୍କୁ ଅବିଶ୍ୱାସ କରି ଲୁଚାଛପାରେ ଅଭିଷେକ କାମ ବଢ଼ାଇଦେବାକୁ ବସିଛନ୍ତି।

ଏଣେ ଲକ୍ଷ୍ମଣ ମଧ ଭରତଙ୍କୁ ବିଶ୍ୱାସକୁ ନେଇ ନାହାନ୍ତି । ନିଜ ଲୋକମାନଙ୍କର ବିଶ୍ୱାସ ସେ ହରାଇଛନ୍ତି ଓ ସେଥିପାଇଁ ସେ କୈକେୟୀଙ୍କ ପୁତ୍ର ହିସାବରେ ଆପଣାକୁ ଦାୟୀ କରିଛନ୍ତି । ପ୍ରାୟଶ୍ଚିତ କରିଛନ୍ତି । ରାମ ଯେପରି ଚଉଦ ବର୍ଷ କଟାଇଛନ୍ତି, ସେ ମଧ ଅଯୋଧା ଠାରୁ ଦୂରରେ ରହି ସେହି ଏକ ପ୍ରକାର ନିର୍ବାସିତ ଜୀବନ କଟାଇଛନ୍ତି । ପ୍ରଭେଦ ଏତିକି ଯେ ରାମ ବଣରେ ଅଛନ୍ତି, ମାତ୍ର ଭରତ ନନ୍ଦିଗ୍ରାମରେ ଅଛନ୍ତି । ହୁଏତ ସେ ଲକ୍ଷ୍ମଣଙ୍କ ପରି ରାମଙ୍କ ସହିତ ବଣରେ ରହି ପାରିଥାଆନ୍ତେ । ମାତ୍ର ଅଯୋଧା ରାଜଗାଦୀ ରାମଙ୍କ ଫେରିବା ଯାଏଁ ସମ୍ଭାଳିବାର ଦାୟିତ୍ୱ ତାଙ୍କ ଉପରେ ରହିଛି । ତେଣୁ ନନ୍ଦିଗ୍ରାମରେ ରହିଛନ୍ତି । ମାତ୍ର ଜୀବନ ବିତାଇଛନ୍ତି ଜଣେ ତପସୀ, ବନବାସୀ ହିସାବରେ । ନିଜକୁ ସର୍ବଦା ଦୋଷୀ ଦୋଷୀ ମନେ କରି ଦୀର୍ଘ ଚଉଦ ବର୍ଷ ସେ କଟାଇଛନ୍ତି । ଆପଣାର ପ୍ରାୟଶ୍ଚିତ ପାଇଁ । ଏହା ହିଁ ହେଉଛି ଭରତ ଚରିତ୍ରର ବିଶେଷତା ।

ଏ ସମସ୍ତ ଘଟଣାର ଆଲୋଚନା ପରେ ମନେ ହେଉଛି, ରାମଙ୍କ ଦୁର୍ଦ୍ଦଶାର କାରଣ ଆଉ କେହି ନୁହନ୍ତି, ନିଜ ପିତା ଦଶରଥ । କୈକେୟୀ, ମନ୍ଥରା କେବଳ ସମୟ ହାତରେ, ପରିସ୍ଥିତି ହାତରେ କ୍ରିଡ଼ନକ ମାତ୍ର । ଦଶରଥ ହିଁ ଖଳନାୟକ ।

ରାମାୟଣରେ ଭରତଙ୍କ ବ୍ୟାପାରରେ ସ୍ୱଳ୍ପ ଆଲୋଚନା ହୋଇଛି । ମାତ୍ର ସେହି ସ୍ୱଳ୍ପ ଆଲୋଚନା ଭିତରୁ ତାଙ୍କ ଚରିତ୍ରର ମହନୀୟତା ବାରି ହୋଇ ପଡୁଛି । ସେ କର୍ତ୍ତବ୍ୟ ପରାୟଣ । ତାଙ୍କର ରହିଛି ଉଚ୍ଚ ମୂଲ୍ୟବୋଧ । ସେ ବଂଶ ପରମ୍ପରା, ସୁନାମରେ ଦାଗ ଲାଗିବାକୁ ଦେଇ ନାହାନ୍ତି ।

ଅଯୋଧା ରାଜଗାଦୀ 'ପର ପଦାର୍ଥ' ରୂପେ ରାମଙ୍କ ପାଇଁ ସମ୍ଭାଳି ରଖି ଚଉଦ ବର୍ଷ ଅପେକ୍ଷା କରିଛନ୍ତି । ତାଙ୍କର ତ୍ୟାଗ, ଲକ୍ଷ୍ମଣଙ୍କ ତ୍ୟାଗ ଠାରୁ କୌଣସି ମାତ୍ରାରେ କମ୍ ନୁହେଁ । ସେ ଧୀର, ସ୍ଥିର, ବିଚାରବନ୍ତ, ଆଦର୍ଶ ପୁରୁଷ । ସେ ନୀତିନିଷ୍ଠ । ସେ ଜଣେ ଉତ୍ତମ ବଶମ୍ୱଦ ଭାଇ । ରାମଙ୍କ ପ୍ରତି ତାଙ୍କର ଶ୍ରଦ୍ଧା, ସମ୍ମାନ ତାଙ୍କର କାର୍ଯ୍ୟରୁ ପ୍ରମାଣିତ ହୋଇଛି । ତାଙ୍କର କାର୍ଯ୍ୟ ଓ ସିଦ୍ଧାନ୍ତ ବଳରେ ସେ ଦଶରଥ ତଥା ଲକ୍ଷ୍ମଣଙ୍କର ତାଙ୍କ ପ୍ରତି ଥିବା ସନ୍ଦେହକୁ ଅମୂଳକ ବୋଲି ପ୍ରମାଣିତ କରିଛନ୍ତି ।

ଭରତଙ୍କ ଚରିତ୍ର ରାମଙ୍କ ଚରିତ୍ର ସହିତ ତୁଳନୀୟ । ରାମଙ୍କ ପରି ନିର୍ଲୋଭୀ । ରାମ ରାଜଗାଦୀ ହାତରୁ ଚାଲିଗଲା ବୋଲି ଟିକେ ମାତ୍ର କ୍ଷୋଭ ପ୍ରକାଶ କରି ନାହାନ୍ତି । ଭରତଙ୍କ ହାତକୁ ଆସିଥିବା ରାଜଗାଦୀ ଗ୍ରହଣ କରିବାକୁ ରାଜି ହୋଇ ନାହାନ୍ତି ।

ରାମ ଯେପରି ବଂଶ ପରମ୍ପରାରେ କଳଙ୍କ ନଲାଗିବା ପାଇଁ ସଚେତନ ଓ ସେଥିପାଇଁ ସମସ୍ତଙ୍କ ବାରଣ ସତ୍ତ୍ୱେ ପିତୃ ସତ୍ୟପାଳି ଚଉଦ ବର୍ଷ ବନବାସ କରିଛନ୍ତି, ଭରତ ମଧ ସେହିପରି ବଂଶ ପରମ୍ପରା ଓ ସୁନାମକୁ ହିଁ ପ୍ରାଧାନ୍ୟ ଓ ପ୍ରାଥମିକତା ଦେଇଛନ୍ତି । କ୍ଷଣକ ପାଇଁ ମଧ ନିଜ ସ୍ୱାର୍ଥ ଚିନ୍ତା କରି ରାଜଗାଦୀ ଗ୍ରହଣ କରିବାକୁ ଇଚ୍ଛା କରିନାହାନ୍ତି ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଜଣେ ନିଜ ଜନ୍ମଦାତା ପିତାଙ୍କର ଅବିମୃଶ୍ୟକାରୀତାର ପରିଣାମ ଭୋଗ କରିଛି ତ ଆଉ ଜଣେ ନିଜ ମାତାଙ୍କ ସ୍ୱାର୍ଥପରତାର ପ୍ରାୟଶ୍ଚିତ ପାଇଁ ସେହି ସମାନ ପ୍ରକାର ପରିଣାମକୁ ହସ ହସ ମୁହଁରେ ହାତ ପାତି ଗ୍ରହଣ କରିନେଇଛନ୍ତି ।

ରାମାୟଣ ପୃଷ୍ଠାରେ ସ୍ୱଳ୍ପ ଆଲୋଚିତ ଭରତ ଜଣେ ଅତ୍ୟନ୍ତ ମହାନ ଓ ଆଦର୍ଶ ଚରିତ୍ର ।

## ଶ୍ରୀରାମଙ୍କ ଅବତାର ପ୍ରଶ୍ନ

ଦଶରଥ ପୁତ୍ର, ରାମାୟଣର ନାୟକ ରାମଚନ୍ଦ୍ରଙ୍କୁ ପ୍ରଭୁ ନାରାୟଣଙ୍କ ଅବତାର ରୂପେ ବିଶ୍ୱାସ କରାଯାଏ। ଏପରି ଧାରଣା, ବିଶ୍ୱାସର ହେତୁ କ'ଣ? କ'ଣ ପାଇଁ ଜନ ମାନସରେ ରାମ ଅବତାର ପୁରୁଷ ରୂପେ ସ୍ଥାନ ପାଇଛନ୍ତି? କେଉଁ ବିଶେଷତା ପାଇଁ ତାଙ୍କୁ ଅବତାର ରୂପେ ଗ୍ରହଣ କରାଯାଇଛି? ବାଲ୍ୟ ସମୟରୁ ଲଙ୍କା ଯୁଦ୍ଧ ପରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ଶାସନ ଭାର ସମ୍ଭାଳିବା ପର୍ଯ୍ୟନ୍ତ ରାମଙ୍କୁ ଅନେକ ବିଷମ ପରିସ୍ଥିତିର ସମ୍ମୁଖୀନ୍ନ ହେବାକୁ ପଡିଛି ଓ ସେ କ୍ରମାଗତ ସେଥିରୁ ମୁକୁଳି ଆସିଛନ୍ତି ଓ ପ୍ରତିଟି ସଙ୍କଟ ତାଙ୍କ ଚରିତ୍ରକୁ କ୍ରମାଗତ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କରିଛି। ସାଧାରଣତଃ ଅନ୍ୟ କୌଣସି ରାଜପୁତ୍ର ଭାଗ୍ୟରେ ଏପରି ସଙ୍କଟମୟ ପରିସ୍ଥିତି ପ୍ରାୟ ନାହିଁ।

ରାମଙ୍କ ଅବତାର ପ୍ରଶ୍ନର ଉତ୍ତର ଖୋଜିବାକୁ ହେଲେ ରାମଙ୍କ ଜୀବନ ତଥା ସେ ସାମନା କରିଥିବା ସଙ୍କଟ ସବୁର ଆଲୋଚନା ଅତ୍ୟନ୍ତ ଆବଶ୍ୟକ।

ପ୍ରଥମେ ଦେଖାଯାଉ, ଏ ଅବତାର ବ୍ୟାପାରଟି କ'ଣ? ଅବତାର ବୋଇଲେ ଆମେ କ'ଣ ବୁଝୁଛୁ? ସେତକ ସ୍ଥିର ହୋଇଗଲା ପରେ, କିଏ ଅବତାର କି ନାହିଁ ତାହା ନିର୍ଣ୍ଣିତ ହୋଇପାରିବ। କାରଣ ସେଇ ମାପକାଠିଟି ପକାଇ ଆମେ ଉପସଂହାରରେ ପହଞ୍ଚି ପାରିବା।

ସାଧାରଣ ଜନତା ବୁଝେ ଯେ ଅବତାରର ଅର୍ଥ ହେଉଛି ସମାଜର, ମାନବସମାଜର ସଙ୍କଟ କାଳରେ ଭଗବାନ ମନୁଷ୍ୟ ରୂପରେ ଜନ୍ମ ନିଅନ୍ତି। ଏକ ନିର୍ଦ୍ଦିଷ୍ଟ କର୍ମ ସମ୍ପାଦନ ପରେ, ଯେଉଁଠୁ ଆସିଥାଆନ୍ତି, ଯଥା ବୈକୁଣ୍ଠପୁର, କୈଳାସ ପର୍ବତ ବା ସ୍ୱର୍ଗପୁରକୁ ବାହୁଡି ଯାଆନ୍ତି। ଆଉ ମଧ୍ୟ ସାଧାରଣତଃ ବିଶ୍ୱାସ କରାଯାଏ ଯେ ଭଗବାନ ମାତୃଗର୍ଭରେ ଏ ଧରାପୃଷ୍ଠରେ ଉଦୟ ହେବା ବେଳକୁ ଏବଂ ତା'ପରକୁ ପର ଅନେକ ଅଲୌକିକ ଘଟଣାମାନ ଘଟେ ଓ ତାହା ଜନସମାଜକୁ ଭଗବାନଙ୍କୁ ଅବତରିବାର ସୂଚନା ଦେଇଥାଏ। ଜନ୍ମ ପରେ ମଧ୍ୟ ଭଗବାନ ମନୁଷ୍ୟ ରୂପରେ ଅନେକ ଅଲୌକିକ, ଅସମ୍ଭବ କାର୍ଯ୍ୟ ଅବଲୀଳାକ୍ରମେ କରିପାରନ୍ତି।

ଏସବୁ ଜନ ମାନସରେ ଅବତାର ପୁରୁଷଙ୍କ ଛବି । ମାତ୍ର ଏ ସବୁକୁ ଆକ୍ଷରିକ ଅର୍ଥରେ ଗ୍ରହଣ କରି ନେବା ଉଚିତ ନିର୍ଣ୍ଣୟ ନୁହେଁ । ଅବତାର କୁହନ୍ତୁ ବା ଯୁଗ ପୁରୁଷ କୁହନ୍ତୁ ଧରାପୃଷ୍ଠକୁ ତାଙ୍କର ଆଗମନ ହୁଏ ଏହା ସତ୍ୟ । ମାତ୍ର ଯୁଗପୁରୁଷଙ୍କ ଆବିର୍ଭାବ ବା ଧରାବତରଣ କିଛି ଚଟ୍ କରି ଆକସ୍ମିକ ଘଟିଯାଏ ନାହିଁ । 'ଯେତେବେଳେ ଧର୍ମରେ ସଙ୍କଟ ଦେଖାଦିଏ, ସେତେବେଳେ ଦୁଷ୍ଟମାନଙ୍କୁ ଦମନ କରି ଧର୍ମର ପୁନଃ ସ୍ଥାପନା ପାଇଁ ମୋତେ ଜନ୍ମ ନେବାକୁ ପଡେ ।' ଏହା ହିଁ ପ୍ରଭୁଙ୍କ ଅବତରିବାର କାରଣ ଓ ଲକ୍ଷ୍ୟ । ଏହାହିଁ ଗୀତାର ସନ୍ଦେଶ । ପରବର୍ତ୍ତୀ କାଳରେ ବାଖ୍ୟାକାରମାନେ ଲୋକପ୍ରିୟ ଭାଷାରେ, ଢଙ୍ଗରେ ବାଖ୍ୟା କରିବାକୁ ଯାଇ ଏଥିରେ ଅନେକ ଯୋଗ, ବିଯୋଗ କରି ବର୍ଣ୍ଣନାକୁ ରୋଚକ ଓ ରୋମାଞ୍ଚକର କରି ପକାଇଛନ୍ତି । ମାତ୍ର ସେ ପ୍ରକ୍ଷିପ୍ତ, ପ୍ରଗଳ୍ଭ ବର୍ଣ୍ଣନାରେ ଭାସିଗଲେ ଆମେ ଅବତାର ବା ଯୁଗ ପୁରୁଷର ସ୍ୱରୂପ ଠିକ୍ ବୁଝି ପାରିବା ନାହିଁ । ମଞ୍ଜ କଥାଟି ଅବୁଝା ରହିଯିବ ।

ଧର୍ମ ସଙ୍କଟ ସମୟରେ ଅବତାର ପୁରୁଷ ଜନ୍ମ ନିଅନ୍ତି । ଉଦ୍ଦେଶ୍ୟ ସମାଜରେ ବ୍ୟାପିଥିବା ଅରାଜକତା, ଅସାମାଜିକତା ତଥା ଅପସଂସ୍କୃତିର ନିରାକରଣ ।

ଏ ଧର୍ମ ସଙ୍କଟଟି କ'ଣ ? ମନୁଷ୍ୟ ଏକ ସାମାଜିକ ପ୍ରାଣୀ । କେତେକ ନିର୍ଦ୍ଦିଷ୍ଟ ନୀତି ନିୟମ, ବିଧି ବ୍ୟବସ୍ଥା ଭିତର ଦେଇ ତା'ର ଜୀବନ । ଏ ବିଧି ବ୍ୟବସ୍ଥା, ନୀତି ନିୟମ କେହି ଦିନକ ଭିତରେ ବିନା ବିଚାରରେ ସମାଜ ଉପରେ ଥାପି ଦେଇ ନାହିଁ । ଅନେକ ପରୀକ୍ଷା, ନିରୀକ୍ଷା, ବିଚାର ବିମର୍ଷ ପରେ କ୍ରମାଗତ ଘଷିମାଜି, ପରଖି ସମାଜ ତା ନିଜ ପାଇଁ ଏ ବିଧି ବ୍ୟବସ୍ଥା ନିର୍ଣ୍ଣୟ କରିଛି । କାରଣ ସାମୁହିକ ପ୍ରଗତି ଓ ଉନ୍ନତି ପାଇଁ ଏକ ଶୃଙ୍ଖଳିତ ବ୍ୟବସ୍ଥା ଅପରିହାର୍ଯ୍ୟ । ଏ ନୀତି ବିଚ୍ୟୁତ ହେଲେ ସମାଜ ଦଣ୍ଡର ବନ୍ଦୋବସ୍ତ ମଧ କରିଛି । ମାତ୍ର ଏ ସବୁ ସମାଜକୁ ଆଗେଇ ନେବା ପାଇଁ, ଶୃଙ୍ଖଳିତ କରି ଚଳାଇବା ପାଇଁ ।

ଏ ସବୁକୁ ଗଭୀର ବିଚାର କରି ଦେଖିଲେ ଜାଣି ହେବ ଯେ ସାମୁହିକ ହିତ ସାଧନ ଏ ଶୃଙ୍ଖଳା, ନୀତି ବା ଦଣ୍ଡ ବ୍ୟବସ୍ଥାର ଉଦ୍ଦେଶ୍ୟ ।

ମାତ୍ର ସମୟ ଆସେ, କିଛି ସ୍ୱାର୍ଥପରତା ଦେଖାଦିଏ । ସମାଜ ତା'ର ସୁପରିଚାଳନା ପାଇଁ ଯେଉଁ ଦଳପତି ବା ଶାସକ ହାତରେ କ୍ଷମତା ଦେଇଥାଏ, ଶାସକ ନିଜେ ବା ତା'ର ଅପାରଗତାର ସୁଯୋଗ ନେଇ ଅନ୍ୟ କେତେକ ସ୍ୱାର୍ଥପର ଶୃଙ୍ଖଳା ଭାଙ୍ଗନ୍ତି । ସମାଜ ଦିଗହରା ହୁଏ । ଅରାଜକତା ବ୍ୟାପେ, ନୀତିବାନ କଷ୍ଟପାଏ, ଅତ୍ୟାଚାର ଭୋଗେ, ଦୁଷ୍ଟଶକ୍ତି ପ୍ରାବଲ୍ୟ ପାଏ । ଏପରି ଅବସ୍ଥାରେ ସମାଜର ସାମୁହିକ ପ୍ରଗତି ବାଧା ପାଏ । ଏହାହିଁ ଧର୍ମ ସଙ୍କଟ । ଇତିହାସରେ ଏପରି ଅବସ୍ଥା ବାରମ୍ବାର ଆସିଛି । ସାଧାରଣ ଶାନ୍ତିପ୍ରିୟ ଜନତାର ଜୀବନ ଦୁର୍ବିସହ ହୋଇପଡେ । ସମୟକ୍ରମେ ଏହି ଅରାଜକତା, ଅଶାନ୍ତି, ବିଶୃଙ୍ଖଳା ସମାଜର ପ୍ରତିଟି ଅଙ୍ଗକୁ ବ୍ୟାପିଯାଏ ଏବଂ ଏହି ଅରାଜକତା ବ୍ୟାପକ ହୋଇ ସମାଜର ମୂଳଦୁଆକୁ ଦୋହଲାଇ ଦିଏ ।

ଏହି ଅରାଜକତା ସହିତ ଜନ୍ମ ନେଇଥାଏ ତା ପ୍ରତି ବିରୋଧାଭାସ । ଏହି ବିରୋଧାଭାସ ମାନସିକ ସ୍ତରରେ କ୍ରମେ ସାଧାରଣ ଜନତା ମଧ୍ୟରେ ବ୍ୟାପ୍ତ ହୁଏ । ଏହା ଦିନକରେ ହୁଏ ନାହିଁ । ପ୍ରତିଟି ଅନ୍ୟାୟ, ପ୍ରତିଟି ଅତ୍ୟାଚାର, ପ୍ରତିଟି ବିଶୃଙ୍ଖଳା ଅନୁରୂପ ବିରୋଧାଭାସ ସୃଷ୍ଟି କରେ, ଅସନ୍ତୋଷ ସୃଷ୍ଟି କରେ । ଦିନ ପରେ ଦିନ, ବର୍ଷ ପରେ ବର୍ଷ ଯେଉଁ ଅସନ୍ତୋଷ, ବିରୋଧାଭାସ ସାଧାରଣ ଶାନ୍ତିପ୍ରିୟ ଜନତା ମନରେ କୁହୁଳୁ ଥାଏ, ସେଥିରୁ ସୃଷ୍ଟ ଗୋଟାଏ ଚେତନା, ଅତ୍ୟନ୍ତ ଶକ୍ତିଶାଳୀ ଚେତନା, ଯାହା ଅରାଜକତାର ବିପରୀତ ଧର୍ମୀ, ତାହା ଗଗନ ପବନରେ ଖେଳି ବୁଲେ ଓ ସମୟକ୍ରମେ ଦିନକୁ ଦିନ ତାହା ପରିପୁଷ୍ଟ ହେଉଥାଏ ।

ଏତିକି ବେଳେ ହିଁ ଅବତାର ପୁରୁଷ ଜନ୍ମ ନିଅନ୍ତି । ଅବତାର ପୁରୁଷ ସମୟର ସୃଷ୍ଟି । ଠିକ୍ ସମୟ ନଆସିଲେ ଚେତନା ଭ୍ରୁଣ ଧରେ ନାହିଁ । ପୁରୁଷ ପୁରୁଷ ଧରି ଏ ଯେଉଁ ଅସନ୍ତୋଷ, ଅରାଜକତା ବିରୋଧୀ ଚେତନା ଜନ ମାନସରେ ପୁଷ୍ଟ ହେଉଥାଏ, ଅରାଜକତା ଚରମ ସୀମାରେ ପହଞ୍ଚିଲେ ଏହି ଚେତନା ରୂପ ଗ୍ରହଣ କରେ । ଅବତାର ପୁରୁଷ ଜନ୍ମ ନିଅନ୍ତି । ତା' ପୂର୍ବରୁ ନୁହେଁ ।

ଯେହେତୁ ଅବତାର ପୁରୁଷ ବା ଯୁଗ ପୁରୁଷଙ୍କ ଜନ୍ମ ଏହିପରି ଏକ ଚେତନାରୁ, ସ୍ୱାଭାବିକ ଭାବେ ଏହି ବିଶୃଙ୍ଖଳା ଓ ଅରାଜକତା ବିରୋଧରେ ଲଢାଇ କରି ସମାଜର ବିଧି ବ୍ୟବସ୍ଥାକୁ ଠିକ୍ ବାଟରେ ପକାଇବା ତାଙ୍କର ମୁଖ୍ୟ କାମ ହୋଇପଡେ । ଦୁଷ୍ଟମାନଙ୍କୁ ନିପାତ କରିବା ଓ ଶାନ୍ତିପ୍ରିୟ ଜନତାକୁ ନିରାପତ୍ତା ଦେଇ ଧର୍ମ ସଙ୍କଟରୁ ସମାଜକୁ ରକ୍ଷା କରିବା ହୁଏ ତାଙ୍କର ଲକ୍ଷ୍ୟ ।

ଅବତାର ଗ୍ରହଣକୁ ଏହି ଭାବରେ ଗ୍ରହଣ କରିବା ବୋଧହୁଏ ଅଧିକ ଯୁକ୍ତି ସଂଗତ ହେବ । ଆଉ ରହିଲା ଅଲୌକିକତାର କଥା । ଅବତାର ପୁରୁଷଙ୍କ କାର୍ଯ୍ୟକଳାପ ସହିତ ଅଲୌକିକତାକୁ ଯୋଡି ଦିଆଯାଇଛି । ସମୟକ୍ରମେ ରାମଚନ୍ଦ୍ର ଓ ତାଙ୍କର ଜୀବନଯାତ୍ରା ପରେ ହଜାର ହଜାର ବର୍ଷ ବିତିବା ଭିତରେ ରାମଗାଥାର ଅନେକ ବ୍ୟାଖ୍ୟାକାର ବାହାରିଛନ୍ତି । ଅନେକ କିଛି ନା କିଛି ନୂଆ କଥା ଯୋଡି ଦେଇଛନ୍ତି ବା ଅତୀତ, ବର୍ତ୍ତମାନ ସହିତ ବିଭିନ୍ନ ପ୍ରକାରେ ଗୁନ୍ଥି ଦେଇଛନ୍ତି । ସବୁ ଯୁଗରେ ସବୁ କାଳରେ ଏପରି ଉତ୍ସାହୀ ବାହୁଲ୍ୟବାଦୀମାନେ ଥିଲେ ଓ ଅଛନ୍ତି । ସେମାନେ ବୁଝନ୍ତି ନାହିଁ ଯେ ତାଙ୍କର ଏ ନିରୁତା ଚାତୁରୀ ଅବତାର ପୁରୁଷଙ୍କ ବ୍ୟକ୍ତିତ୍ୱ ପ୍ରତି ଅପମାନ । ସେ ଯାହାହେଉ ଏପରି ପ୍ରକ୍ଷିପ୍ତ, ଅପ୍ରାସଂଗିକ, ଅବିଶ୍ୱାସନୀୟ ବାଖ୍ୟାର ଅଳିଆଗଦା ମଧ୍ୟରୁ ଆମକୁ ରାମଙ୍କର ଚରିତ୍ରର ମଞ୍ଜ କଥାଟି, ଯାହାକି ଶୁଦ୍ଧ ସୁବର୍ଣ୍ଣ ପରି ଉଜ୍ଜ୍ୱଳ, ତାହାକୁ ଖୋଜିବାକୁ ପଡିବ ଏବଂ ତାହାକୁ ଆଧାର କରି ଆମର ଆଲୋଚନା ଆଗେଇବ । ଆଉ ଗୋଟିଏ କଥା କହି ରଖିବା ଦରକାର: ଅବତାର ପୁରୁଷଙ୍କ କ୍ଷେତ୍ରରେ କିଛି ଅଲୌକିକତା ବା ଅବିଶ୍ୱାସନୀୟ ଶକ୍ତିର ସ୍ଫୁରଣ ଘଟେ । ଅନେକ କ୍ଷେତ୍ରରେ ସେମାନେ ଅଦ୍ଭୁତ ଅସାଧାରଣ ଶକ୍ତିର ଅଧିକାରୀ ହୋଇଥାଆନ୍ତି ଏବଂ ସମୟକ୍ରମେ ତାଙ୍କ ବ୍ୟକ୍ତିତ୍ୱ ସହିତ ତାହା ଫୁଟି ଉଠେ ।

ମାତ୍ର ଆଉ ପାଞ୍ଚ ଜଣଙ୍କ ପାଖରେ ମଧ୍ୟ ଅନେକ ସମୟରେ ଅଲୌକିକ ସାମର୍ଥ୍ୟ, ସ୍ମରଣ ଶକ୍ତି, ଭବିଷ୍ୟତ ଦୃଷ୍ଟି ଥିବାର ମଧ୍ୟ ଆମେ ଜାଣିଛେ । ତେଣୁ ରାମଙ୍କ ଅବତାରତ୍ୱ ପ୍ରଶ୍ନର ଆଲୋଚନା ସମୟରେ ସେ ଅଲୌକିକତା ଉପରେ ଅତି ବେଶୀ ବିଶେଷତ୍ୱ ଦେବା ଅନାବଶ୍ୟକ । ତାଙ୍କ ବ୍ୟକ୍ତିତ୍ୱର ବିକାଶ ସହିତ ଏ ସବୁ ଅଙ୍ଗାଙ୍ଗୀଭାବେ ଜଡିତ । ଏ ସମସ୍ତ କ୍ରମେ ଆମର ଆଲୋଚନା ପରିସରକୁ ଆସିବ ଏବଂ ପାଠକ ସେଥିରୁ ନିଜର ସିଦ୍ଧାନ୍ତ ନେଇ ପାରିବେ ।

ରାମଙ୍କ ଜନ୍ମ ସାଭାବିକ ଜନ୍ମ ନୁହଁ । ଦଶରଥ ପୁତ୍ର ଲାଭ ପାଇଁ ଯଜ୍ଞ କରାଇଛନ୍ତି ଓ ଯଜ୍ଞ ଚରୁ ଖାଇବା ପରେ ତିନି ରାଣୀଙ୍କ ଔରସରୁ ଚାରୋଟି ପୁତ୍ର ଲାଭ ହୋଇଛି । ରାମଙ୍କୁ ପନ୍ଦର/ଷୋହଳ ବର୍ଷ ହେବା ପର୍ଯ୍ୟନ୍ତ ସେପରି କିଛି ଉଲ୍ଲେଖନୀୟ ଘଟଣା ଘଟିନାହିଁ । ସେ ବଶିଷ୍ଠଙ୍କ ଆଶ୍ରମରେ ଶିକ୍ଷା ଲାଭ କରିଛନ୍ତି । ଶାସ୍ତ୍ର ସହିତ ଅସ୍ତ୍ର ଶସ୍ତ୍ର ବିଦ୍ୟା ମଧ୍ୟ ଶିଖିଛନ୍ତି ଓ ସେଥିରେ ପାରଙ୍ଗମ ମଧ୍ୟ ହୋଇଛନ୍ତି । ଚଉଦ ବର୍ଷ ପରେ ବଶିଷ୍ଠଙ୍କ ଆଶ୍ରମରୁ ଫେରି ପିତା ଦଶରଥ ଓ ଗୁରୁ ବଶିଷ୍ଠଙ୍କ ଅନୁମତି ନେଇ ଭାରତ ଭ୍ରମଣରେ ବାହାରିଛନ୍ତି । ସାଙ୍ଗରେ ଲକ୍ଷ୍ମଣ ଅଛନ୍ତି । ସେମାନେ ଅନେକ ଆଶ୍ରମ ବୁଲିଛନ୍ତି, ମୁନି ଋଷିଙ୍କୁ ଭେଟି ତାଙ୍କ ଆଶୀର୍ବାଦ ନେଇଛନ୍ତି । ଏଠାରେ ତାଙ୍କର ଉତ୍ତମ ସଂସ୍କାର, ମଧୁର, ଅହଂକାରଶୂନ୍ୟ ବ୍ୟବହାରର କ୍ରମେ ପରିଚୟ ମିଳିଛି ଓ ଜଣେ ନମ୍ର, ଭଦ୍ର, କୁଳୀନ, ସଂସ୍କାରଯୁକ୍ତ ରାଜପୁତ୍ର ହିସାବରେ ତାଙ୍କର ସାମୁହିକ ଗ୍ରହଣୀୟତା ବଢିଛି । ରାମ ଉଚ୍ଚକୁଳ ସମ୍ଭୁତ ପୁଣି ପ୍ରସିଦ୍ଧ ତପସୀ ବଶିଷ୍ଠଙ୍କ ପାଖରେ ଶିକ୍ଷା ପାଇଛନ୍ତି, ତେଣୁ ଏ ସମସ୍ତ ଗୁଣର ଅଧିକାରୀ ହେବା ତାଙ୍କ ପାଇଁ ସାଭାବିକ । ହୁଏତ ଏହି କମନୀୟ ବ୍ୟକ୍ତିତ୍ୱ ଭବିଷ୍ୟତରେ ତାଙ୍କୁ ପୁରୁଷୋତ୍ତମ ରୂପେ ପରିଚୟ ଦେବାରେ ପ୍ରଥମ ସୋପାନ ହୋଇଛି ।

ତାଙ୍କର ବିଶେଷତାର ପ୍ରଥମ ପରିଚୟ ମିଳିଛି ଯଜ୍ଞ ରକ୍ଷା ପାଇଁ ବିଶ୍ୱାମିତ୍ରଙ୍କ ସହ ତାଙ୍କ ଆଶ୍ରମକୁ (ସିଦ୍ଧାଶ୍ରମ) ଯାତ୍ରା ସମୟରେ । ବିଶ୍ୱାମିତ୍ର ରାମଙ୍କୁ ପ୍ରଶ୍ନ-ଉତ୍ତର ଛଳରେ ଆର୍ଯ୍ୟାବର୍ତ୍ତର ବିଭିନ୍ନ ରାଜବଂଶ, ବିଭିନ୍ନ ମୁନି ଋଷି, ପ୍ରସିଦ୍ଧ ଆଶ୍ରମ ସବୁର ଇତିହାସ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ରାଜବଂଶର ଅତୀତ, ବର୍ତ୍ତମାନର ଇତିହାସ ସହିତ ଆର୍ଯ୍ୟ ଧର୍ମର ପ୍ରଚାର ଓ ପ୍ରସାରରେ ଲାଗିଥିବା ତପସୀମାନେ ବର୍ତ୍ତମାନ ସମ୍ମୁଖୀନ ହେଉଥିବା ବିରୋଧ, ଅତ୍ୟାଚାର ଓ ବିଘ୍ନର ବର୍ଣ୍ଣନା କରିଛନ୍ତି । ରାମ ଧୈର୍ଯ୍ୟ ସହକାରେ ଏସବୁ ଶୁଣିଛନ୍ତି । ଚିନ୍ତାଶୀଳ, ବୁଦ୍ଧିମାନ ରାମ ହୁଏତ କ୍ଷତ୍ରୀୟ ହିସାବରେ ମାନସିକ ସ୍ତରରେ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିବେ ଯେ କେବଳ ବିଶ୍ୱାମିତ୍ରଙ୍କ ଯଜ୍ଞ ରକ୍ଷା ନୁହେଁ ଆର୍ଯ୍ୟାବର୍ତ୍ତ ତଥା ଆର୍ଯ୍ୟ ଧର୍ମର ସୁରକ୍ଷା ପାଇଁ ସମଗ୍ର ମୁନି ଋଷି ଯେଉଁମାନେ ଦୁର୍ଗମ ଅଞ୍ଚଳରେ ଆଶ୍ରମ ସ୍ଥାପନ କରି ଆର୍ଯ୍ୟ ଧର୍ମର ଧ୍ୱଜା ଉଡାଉଛନ୍ତି, ସେମାନଙ୍କୁ ମଧ୍ୟ ନିରାପତ୍ତା ଦେବା ତାଙ୍କର କର୍ତ୍ତବ୍ୟ । ରାମ ପୂର୍ବରୁ ବିଭିନ୍ନ ଆଶ୍ରମ, ଲୋକାଳୟ ଭ୍ରମଣ କରିଛନ୍ତି । ଆର୍ଯ୍ୟ ସମାଜର ଅନ୍ତର୍ନିହିତ ଶକ୍ତି ତଥା ଅନୁପ୍ରବେଶ କରୁଥିବା ଅପସଂସ୍କାର ବିଷୟରେ ସେ ଜ୍ଞାତ ଥିବେ । ସେହି ଅପସଂସ୍କାରକୁ ହଟାଇବାକୁ ହେଲେ ଶିକ୍ଷାର ପ୍ରସାର ଦରକାର ଓ ସେହି

ଲକ୍ଷ୍ୟରେ ବ୍ରତୀ ଥିବା ଆଶ୍ରମଗୁଡିକର ସୁରକ୍ଷା ଓ ନିରାପତ୍ତା ଅପରିହାର୍ଯ୍ୟ । ଏ ସମସ୍ତ ଚିନ୍ତା, ଯାହା ଆର୍ଯ୍ୟ ଧର୍ମ ଓ ସମାଜର ସାମୁହିକ ସୁରକ୍ଷା ଓ ପ୍ରସାର ପାଇଁ ଉଦ୍ଦିଷ୍ଟ, ସବୁ ମିଶାମିଶି, ଫେଣ୍ଟି ହୋଇ ରାମଙ୍କର ଯୁବକ ମନରେ ଏକ ଦୃଢ ସିଦ୍ଧାନ୍ତର ରୂପ ନେଇଛି । ହୁଏତ ରାମଙ୍କୁ ସାଙ୍ଗରେ ଆଣି, ଏତେ ପରିଶ୍ରମ କରିବା ପଛରେ ବିଶ୍ୱାମିତ୍ରଙ୍କର ସେହିପରି କିଛି ଉଦ୍ଦେଶ୍ୟ ରହିଛି ।

ମାତ୍ର ଏଠାରେ ରାମଙ୍କର ଅଲୌକିକତା ବା ଅତିମାନବୀୟ ଗୁଣର କୌଣସି ସୂଚନା ନାହିଁ । ବରଂ ଜଣେ ମନନଶୀଳ, ଧୀମାନ, ନମ୍ର, ଭଦ୍ର ଏକାଗ୍ର ବିଦ୍ୟାର୍ଥୀର ପରିଚୟ ମିଳୁଛି । ବିଶ୍ୱାମିତ୍ର ଜଣେ ଉପଯୁକ୍ତ ଛାତ୍ର ପାଇଛନ୍ତି ଓ ରାମ ଜଣେ ଉପଯୁକ୍ତ ଦିଗ୍‌ଦର୍ଶକ ପାଇ ସବୁକିଛି ଶିଖି ନେଇଛନ୍ତି । ତାଙ୍କର ବ୍ୟକ୍ତିତ୍ୱ କ୍ରମାଗତ ଭାବେ ଉନ୍ନତ ଓ ପ୍ରସ୍ଫୁଟିତ ହେଉଛି । ଏହା ନିଶ୍ଚୟ ଜଣେ ଅତ୍ୟନ୍ତ ସମର୍ଥ, ଯୋଗ୍ୟ ଯୁବ୍‌କର ପରିଚୟ ଦେଉଛି ।

ରାମଙ୍କ ଯୋଗ୍ୟତା ହେତୁ ବିଶ୍ୱାମିତ୍ର ତାଙ୍କୁ ସାଙ୍ଗରେ ଆଣିଛନ୍ତି ଓ ବାଟସାରା ତାଙ୍କୁ ଯୋଗ୍ୟରୁ ଯୋଗ୍ୟତର କରିବାରେ ଲାଗିପଡିଛନ୍ତି । କେବଳ ଅସ୍ତ୍ରଶସ୍ତ୍ର ଶିକ୍ଷା ନୁହଁ, ଆର୍ଯ୍ୟାବର୍ତ୍ତର ଇତିହାସ ଓ ତା'ର ସମ୍ମୁଖରେ ଥିବା ବିପଦ ସବୁକୁ ବର୍ଣ୍ଣନା କରି ସେ ରାମଙ୍କୁ ଆଗାମୀ ସମୟ ପାଇଁ ପ୍ରସ୍ତୁତ କରିଛନ୍ତି । ରାମ ତାଙ୍କର ଅସାଧାରଣ ଧୀଶକ୍ତିର ପରିଚୟ ଦେଇ ମହର୍ଷିଙ୍କୁ ନିରାଶ କରିନାହାନ୍ତି । ହୁଏତ ରାମଙ୍କୁ ଭବିଷ୍ୟତ ପାଇଁ ଗଢି ତୋଳିବା ଲକ୍ଷ୍ୟ ନେଇ ଯୋଜନାବଦ୍ଧ ଭାବେ ମହର୍ଷି ଏପରି କରିଛନ୍ତି ।

ପୂର୍ବ ପରିଚ୍ଛେଦରେ ଉଲ୍ଲେଖ କରିଛି ଯେ ବିଶ୍ୱାମିତ୍ର ହିମାଳୟରେ ସରସ୍ୱତୀ ନଦୀକୂଳରୁ ତପସ୍ୟା ଛାଡି ଗୁରୁ ନିର୍ଦ୍ଦେଶରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ସମତଳକୁ ଆସିଛନ୍ତି । ସେହି ଉଦ୍ଦେଶ୍ୟ ପୂରଣ ପାଇଁ ତାଙ୍କର ଜଣେ ସମର୍ଥ, ଅଙ୍ଗୀକାରବଦ୍ଧ ସେନାପତି ଦରକାର । ରାମ ନିଜେ ଜାଣି ନପାରିଲେ ମଧ୍ୟ, ଭବିଷ୍ୟତରେ କ'ଣ ହେବାକୁ ଯାଉଛି, କେଉଁ ପରିସ୍ଥିତିର ସାମନା କରିବାକୁ ହେବ, ଆର୍ଯ୍ୟାବର୍ତ୍ତକୁ ରକ୍ଷା କରିବା ପାଇଁ ଜଣକୁ କେଉଁ କେଉଁ ସଙ୍କଟର ସମ୍ମୁଖୀନ ହେବାକୁ ହେବ, ତାହା ବିଶ୍ୱାମିତ୍ର ଜାଣିଛନ୍ତି । ସେଥିପାଇଁ କେବଳ ଶକ୍ତିମାନ ନୁହେଁ, ସେ ଖୋଜିଛନ୍ତି ଜଣେ ଧୀମାନ, ଭଦ୍ର, ସଂଯତ, ନମ୍ର ତଥା ଉଚ୍ଚ ବଂଶଜ କ୍ଷତ୍ରୀୟ ପୁରୁଷ । ଯାହାର ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିବ, ଯେ ଧର୍ମାନୁରାଗୀ, ନ୍ୟାୟବନ୍ତ ମଧ୍ୟ ହୋଇଥିବ, ସେହି କେବଳ ଆର୍ଯ୍ୟ ଧର୍ମକୁ ସୁରକ୍ଷା ଦେଇ ସମାଜକୁ ସଙ୍କଟରୁ ରକ୍ଷା କରିପାରିବ ।

ରାମଚନ୍ଦ୍ରଙ୍କୁ ଉପଯୁକ୍ତ ମନେ କରି ବିଶ୍ୱାମିତ୍ର ତାଙ୍କୁ ସାଙ୍ଗରେ ଆଣିଛନ୍ତି । ପିତୃଗୃହରୁ କାଢି ଆଣି ତାଙ୍କୁ ବୃହତ୍ତର ଲକ୍ଷ୍ୟ ହାସଲ ପାଇଁ ପ୍ରତିଟି ପଦକ୍ଷେପରେ ପ୍ରସ୍ତୁତ କରିଛନ୍ତି ଓ ରାମ ମଧ୍ୟ ମହର୍ଷିଙ୍କର ତାଙ୍କ ଉପରେ ଥିବା ଆସ୍ଥା ନିଷ୍ଫଳ ହେବାକୁ ଦେଇ ନାହାନ୍ତି । କେବଳ ଶିକ୍ଷା ନୁହେଁ ଜଣେ ଯୋଦ୍ଧା ପାଇଁ ଅସ୍ତ୍ରଶସ୍ତ୍ର ଜ୍ଞାନ ଯେପରି ଦରକାର, ଶକ୍ତିଶାଳୀ ଅସ୍ତ୍ର ମଧ୍ୟ ଦରକାର । ବିଶ୍ୱାମିତ୍ର ନିଜେ ଜଣେ ଶକ୍ତିଶାଳୀ କ୍ଷତ୍ରୀୟ ଶାସକ ଥିଲେ ।

ଅନେକ ଦୁଷ୍ପ୍ରାପ୍ୟ ଅସ୍ତ୍ରଶସ୍ତ୍ର ତାଙ୍କ ପାଖରେ ଥିଲା । ମହାଦେବଙ୍କୁ ତପସ୍ୟା କରି ମଧ୍ୟ ସେ ଅନେକ କିଛି ଅସ୍ତ୍ରତତ୍ୱ ପାଇଥିଲେ, ସେ ସମସ୍ତ ସେ ରାମଙ୍କୁ ପ୍ରଦାନ କରିଛନ୍ତି ।

ମନେହୁଏ ଷୋହଳ ବର୍ଷ ପର୍ଯ୍ୟନ୍ତ ରାମଙ୍କ ବ୍ୟକ୍ତିତ୍ୱର ଯେଉଁ ସବୁ ବିଶେଷତା ଆଖିରେ ପଡ଼େ ତାହା ଅସାଧାରଣ ନିଶ୍ଚିତ ମାତ୍ର ତାକୁ ଅଲୌକିକ କହିବା ଠିକ୍ ହେବ ନାହିଁ ବା ରାମଙ୍କୁ ଅବତାର ପୁରୁଷ ବୋଲି ବର୍ଣ୍ଣନା କରିବା ପାଇଁ ଏତକ ଯଥେଷ୍ଟ ନୁହେଁ ନିଶ୍ଚୟ । ଏଠାରେ ଜଣେ ସମର୍ଥ ଗୁରୁଙ୍କୁ ଜଣେ ସମର୍ଥ ଶିଷ୍ୟ ମିଳିଯାଇଛି । ଗୁରୁ ମନ ପ୍ରାଣଦେଇ ଶିଷ୍ୟଙ୍କୁ ତାଙ୍କର ଉତ୍ତରାଧୀକାରୀ ଭାବରେ ସବୁ କିଛି ଶିଖାଇ ଚାଲିଛନ୍ତି ଆଉ ସମର୍ଥ ଶିଷ୍ୟ ସୁଯୋଗ ପାଇ ତୃଷାର୍ତ୍ତ ପାଣି ଶୋଷି ନେବା ପରି ସମସ୍ତ ଶିକ୍ଷାକୁ ଶୋଷି ନେଇଛନ୍ତି ।

ଏ ପର୍ଯ୍ୟନ୍ତ ଘଟଣାବଳୀକୁ ଏହିପରି ଭାବରେ ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ ହେବ । ବରଂ ରାମଙ୍କ ଅନ୍ତର୍ନିହିତ ଅଗ୍ନିକୁ ଠାବ କରି ପାରିଥିବାରୁ ବିଶ୍ୱାମିତ୍ର ଅନେକ ପ୍ରଶଂସାର ପାତ୍ର ।

ଏହାପରର ପ୍ରତିଟି ଘଟଣା ରାମଙ୍କୁ ଏକ ବଳିଷ୍ଠ ଓ ଅନନ୍ୟ ବ୍ୟକ୍ତିତ୍ୱ ଭାବେ କ୍ରମାଗତ ପ୍ରତିଷ୍ଠା କରି ଚାଲିଛି । ବିଶ୍ୱାମିତ୍ରଙ୍କ ଯଜ୍ଞ ରକ୍ଷା ସମୟରେ ରାକ୍ଷସମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ସେ ଦେଇଥିବା ଶକ୍ତି, ସାମର୍ଥ୍ୟର ପରିଚୟରୁ ମନେହୁଏ ସେ ଜଣେ ଅତ୍ୟନ୍ତ ପ୍ରତିଭାଶାଳୀ ଛାତ୍ର । ଗୁରୁ ବଶିଷ୍ଠ ତଥା ବିଶ୍ୱାମିତ୍ରଙ୍କ ଠାରୁ ଯାହା ଶିକ୍ଷା କରିଛନ୍ତି ତାହା ଠିକ୍ ଭାବରେ କାମରେ ଲଗାଇ ପାରିଛନ୍ତି । ତାଙ୍କ ଉପରେ ସମର୍ପି ଦିଆଯାଇଥିବା କର୍ମଟି ଏକାଗ୍ରତା ଓ ନିଷ୍ଠାର ସହ ସମ୍ପାଦନ କରିବାରେ ଯେଉଁ ସମର୍ପଣ ମନୋଭାବ ଦେଖାଇଛନ୍ତି ତାହା ଅସାଧାରଣ । ଲକ୍ଷ୍ୟ ଉପରେ ଏକାଗ୍ର ହୋଇ ସେ କାର୍ଯ୍ୟ କରିଛନ୍ତି ଓ ସଫଳ ହୋଇଛନ୍ତି । ଏହା ରାମଙ୍କୁ ବୀର, ତଥା ଉଚ୍ଚକୋଟୀର ସଫଳ ଯୋଦ୍ଧା ଭାବେ ପରିଚିତ କରାଇଛି । ତା ସହିତ ଗୁରୁଙ୍କ ପ୍ରତି ଭକ୍ତି ତଥା ଉତ୍ସର୍ଗ ମନୋଭାବ ସାଙ୍ଗକୁ ଅଧିକରୁ ଅଧିକ ଜାଣିବା ପାଇଁ ଆଗ୍ରହ ତାଙ୍କ ଚରିତ୍ରର ଏକ ମହନୀୟ ଉଲ୍ଲେଖନୀୟ ଦିଗ ।

ଏହାପରେ ଆସିଛି ମିଥିଳା ଯାତ୍ରା ଓ ଯାତ୍ରା ପଥରେ ଅହଲ୍ୟା ଉଦ୍ଧାର । ଅହଲ୍ୟା ଉଦ୍ଧାର ବ୍ୟାପାରରେ ଅନ୍ୟତ୍ର ବିସ୍ତୃତ ଆଲୋଚନା ରହିଛି । ତା'ର ପୁନରାବୃତ୍ତି ଅନାବଶ୍ୟକ । ମାତ୍ର ସେ ପ୍ରସଙ୍ଗ ବା ଅହଲ୍ୟା ଉଦ୍ଧାର ରାମଙ୍କୁ ଜଣେ ଉଦାର ସମାଜ ସଂସ୍କାରକ ରୂପେ ପ୍ରତିଷ୍ଠିତ କରିଛି । ଯାହା ଅନ୍ୟାୟ, ଅବିଚାର, ଜାଣି ମଧ୍ୟ ଅନ୍ୟ କେହି ପ୍ରତିବାଦ କରିବାକୁ ସାହସ କରୁନଥିଲେ, ରାମ ତାହା କରିଛନ୍ତି । ଯେଉଁଠି ସମାଜ ଜଣେ ଋଷି ପତ୍ନୀଙ୍କୁ ନିର୍ଯ୍ୟାତିତା ହେବାକୁ ଛାଡି ଦେଇ ବାହାରେ ରହି କେବଳ ଦୁଃଖ ପ୍ରକାଶ କରି ନିଜର କର୍ତ୍ତବ୍ୟ ସାରୁଥିଲା ସେଠାରେ ରାମ ପରିଣାମକୁ ଭ୍ରୂକ୍ଷେପ ନକରି, ହୁଏତ ରକ୍ଷଣଶୀଳ ଗୋଷ୍ଠୀକୁ ଖାତିର ନକରି ଅହଲ୍ୟାଙ୍କୁ ବାସନ୍ଦରୁ ମୁକ୍ତ କରିଛନ୍ତି । କେବଳ ସେତକ ନୁହେଁ, ତାଙ୍କର କାମକୁ ସାଧାରଣ ଜନତା ମୁକ୍ତ କଣ୍ଠରେ ସମର୍ଥନ କରିଛି ।

ପ୍ରତିଟି ଘଟଣା ରାମଙ୍କୁ ଗୋଟିଏ ପରେ ଗୋଟିଏ ପାହାଚ ଉପରକୁ ଉଠିବାରେ ସାହାଯ୍ୟ କରିଚାଲିଛି । ତାପରେ ଆସିଛି ଶିବଧନୁ ଭଙ୍ଗ । ଏଇଟି ଗୋଟିଏ ଅନନ୍ୟ ଧନୁ । କଠିନ ଧାତୁରେ ନିର୍ମିତ । ଆକାର, ପ୍ରକାର ଓ ଓଜନରେ ବିଶାଳ । ସାଧାରଣ ଜନତା କଥା ଥାଉ ଜଣେ ଅତ୍ୟନ୍ତ ସମର୍ଥ ଯୋଦ୍ଧା ମଧ କେବଳ ଶାରୀରିକ ଶକ୍ତି ପ୍ରୟୋଗ କରି ଏହାର ଗୁଣ ଚଢାଇବା ଦୂରର କଥା ଭୂମିରୁ ଉଠାଇ ମଧ ପାରିବ ନାହିଁ । ମାତ୍ର ରାମ ଅବଲୀଳା କ୍ରମେ ସେଇଟି ଯେ କୌଣସି ସାଧାରଣ ଧନୁ ପରି ଉଠାଇ ଦେଇଛନ୍ତି ଓ ଗୁଣ ଚଢାଇବା ବେଳେ ସେଇଟା ମଡ ମଡ ଶବ୍ଦ କରି ଭାଙ୍ଗି ଯାଇଛି । ବହୁ ପୁରୁଣା ଧନୁ ହୋଇଥିବାରୁ ବା ବ୍ୟବହୃତ ଧାତୁରେ କିଛି ଖାଦ ଥିବା ହେତୁ ବା କଳଙ୍କି ଲାଗିଥିବା ହେତୁ ହୁଏତ ଏପରି ଘଟି ଥାଇପାରେ । ମାତ୍ର ଏହା କେବଳ ଅନୁମାନର କଥା । ମାତ୍ର ଶିବଧନୁ ଭଙ୍ଗ ଏକ ବିଶେଷ ଓ ଅନନ୍ୟ କୃତିତ୍ୱ ତାହା ନିଃସନ୍ଦେହରେ କୁହାଯାଇପାରେ । ଏହାର ନାୟକ ତ ରାମଚନ୍ଦ୍ର, ମାତ୍ର ବିଶ୍ୱାମିତ୍ରଙ୍କ ଭୂମିକାକୁ ଏଠାରେ ମଧ ସ୍ୱୀକାର କରିବାକୁ ହେବ । ପ୍ରଶ୍ନ ଉଠିବ ଶିବଧନୁ ତ ରାମ ଉଠାଇଲେ, ରାମ ଗୁଣ ଚଢାଇଲେ ଏବଂ ତାହା ଭାଙ୍ଗିଲା । ତେବେ ଏଠାରେ ବିଶ୍ୱାମିତ୍ର ଆସିଲେ କିପରି ? ତାହା ଏହିପରି -- ରାମ ତ ପ୍ରତ୍ୟକ୍ଷ ନାୟକ । ମାତ୍ର ମହର୍ଷି ବିଶ୍ୱାମିତ୍ର ହେଉଛନ୍ତି ପରୋକ୍ଷ ନାୟକ ।

ଯାତ୍ରା ପଥରେ, ବିଶ୍ରାମ ସମୟରେ ବିଶ୍ୱାମିତ୍ର ରାମଙ୍କୁ ବିଭିନ୍ନ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ବିଦ୍ୟା ଶିଖାଇଛନ୍ତି । ଅନେକ ଅତ୍ୟନ୍ତ ଶକ୍ତିଶାଳୀ ଅସ୍ତ୍ର ରାମଙ୍କୁ ପ୍ରଦାନ ସହିତ ତା'ର ପ୍ରୟୋଗର ଗୂଢ ତତ୍ୱ ତାଙ୍କୁ ବତାଇ ଦେଇଛନ୍ତି । ଚିତ୍ତକୁ ଏକାଗ୍ର କରି ଗୋଟିଏ ବିନ୍ଦୁ (ଲକ୍ଷ୍ୟ)ରେ କେନ୍ଦ୍ର କରି କିପରି ଅସାଧ ସାଧନ କରାଯାଇ ପାରିବ, କିପରି ପ୍ରୟୋଗ ସମୟରେ ଏକମନସ୍କ ହୋଇ ଅସ୍ତ୍ରକୁ ଆରାଧନା କରି ଜୀବନ୍ୟାସ ଦେଇ ତା'ର ଶକ୍ତିକୁ ସହସ୍ରଗୁଣ ବୃଦ୍ଧି କରାଯାଇପାରିବ, ତାହାହିଁ ବିଶ୍ୱାମିତ୍ର ରାମଙ୍କୁ ଶିଖାଇଛନ୍ତି । ରାମଙ୍କ କୃତିତ୍ୱ ହେଉଛି ବିଶ୍ୱାମିତ୍ର ପ୍ରଦତ୍ତ ଶିକ୍ଷା ସେ ଖୁବ୍ ଶୀଘ୍ର ଆପଣେଇ ନେଇଛନ୍ତି ଏବଂ ଉପଯୁକ୍ତ କ୍ଷେତ୍ରରେ ତା'ର ନିର୍ଭୁଲ ପ୍ରୟୋଗ କରି ଲକ୍ଷ୍ୟ ହାସଲ କରିପାରିଛନ୍ତି, ଅସାଧ ସାଧନ କରିପାରିଛନ୍ତି ।

ଯେଉଁ ଧନୁରେ ଗୁଣ ଚଢାଇବା ତ ଦୂରର କଥା ଅନ୍ୟ କେହି ଭୂଇଁରୁ ମଧ ଉଠାଇପାରିଲେ ନାହିଁ, ତାକୁ ରାମ ବିଶ୍ୱାମିତ୍ରଙ୍କ ନିର୍ଦ୍ଦେଶିତ କୌଶଳ ବା ଶିକ୍ଷାର ସଫଳ ପ୍ରୟୋଗ କରି ତାହା ହାସଲ କରିପାରିଲେ । ନିଜର ସମଗ୍ର ଇନ୍ଦ୍ରିୟକୁ ଅନ୍ତର୍ମୁଖୀ କରି, ଗୋଟିଏ ବିନ୍ଦୁରେ ଲକ୍ଷ୍ୟ ସ୍ଥିର କରି ଧନୁଟିକୁ ଅନାୟସରେ ଉଠାଇଲେ ଓ ଗୁଣ ଚଢାଇବା ବେଳେ ଭାଙ୍ଗି ଦେଇ ପାରିଲେ । ଏଥିରେ ଗୁରୁ ଓ ଶିଷ୍ୟ ଉଭୟଙ୍କର କୃତିତ୍ୱ ସ୍ୱୀକାର୍ଯ୍ୟ । ଏ ଅସାଧାରଣ କୃତିତ୍ୱ ପଛରେ ଗୁରୁଶିଷ୍ୟ ବ୍ୟତିରେକ ଆଉ ଜଣଙ୍କର ଅବଦାନ ମଧ ରହିଛି । ଭୁଲି ଗଲେ ଚଳିବ ନାହିଁ ଯେ ଏ ଶିବଧନୁ ଭାଙ୍ଗିବା ପରି ଏକ ଅସାଧାରଣ ସାଫଲ୍ୟ ହାସଲ ପଛରେ ପ୍ରତ୍ୟକ୍ଷରେ ନହେଲେ ମଧ ପରୋକ୍ଷରେ ସୀତାଙ୍କର କିଛି

ଅବଦାନ ରହିଛି । ହୁଏତ ପାଠକ ଆଶ୍ଚର୍ଯ୍ୟ ହେଉଥିବେ, ଏ ଧନୁ ଭାଙ୍ଗିବା ସହିତ ସୀତାଙ୍କର କି ସମ୍ପର୍କ ? ପରୋକ୍ଷ ସମ୍ପର୍କ ରହିଛି ।

ରାମ ମିଥିଳାରେ ପହଞ୍ଚିବା ପରେ ତାଙ୍କ ପାଇଁ ଅଭିପ୍ରେତ ଶିବିରରେ ବିଶ୍ରାମ ନେଇଛନ୍ତି । ପ୍ରାତଃକାଳରେ ନଗର ଭ୍ରମଣରେ ବାହାରିଛନ୍ତି । ରାଜପ୍ରାସାଦ ବାଟ ଦେଇ ଯିବା ସମୟରେ ସୀତାଙ୍କୁ ଉଦ୍ୟାନରେ ବୁଲିବାର ଦେଖିଛନ୍ତି ଏବଂ ଦୁଇଜଣ ପରସ୍ପରକୁ ଅକସ୍ମାତ ଦେଖିଛନ୍ତି । ମାତ୍ର କ୍ଷଣକ ପାଇଁ ଚାରି ଚକ୍ଷୁର ମିଳନ ଘଟିଛି । ସେଇ ଗୋଟିଏ ମୁହୂର୍ତ୍ତରେ ରାମ ନିଜ ଭିତରେ ଏକ ଅଦ୍ଭୁତ ଶିହରଣ, ଅଦ୍ଭୁତ ପୁଲକ, ବିସ୍ଫୋରଣ ଅନୁଭବ କରିଛନ୍ତି । ସଂଯମୀ, ବ୍ରହ୍ମଚାରୀ, ଉଚ୍ଚ ସଂସ୍କାରଯୁକ୍ତ, କୁଳୀନ ରାମଙ୍କ କ୍ଷେତ୍ରରେ ସେଇ ଗୋଟିଏ କ୍ଷଣରେ ଯାହା ଘଟିଛି ତାକୁ କେଉଁ ଭାଷାରେ ବର୍ଣ୍ଣନା କରାଯାଇ ପାରିବ ? ଏହା ଯୌବନସୁଲଭ ଚପଳତା ବା କ୍ଷଣିକ ଉନ୍ମାଦନା ବୋଲି କହିଲେ ରାମଙ୍କ ପ୍ରତି ଅତ୍ୟନ୍ତ ଅନ୍ୟାୟ ହେବ । ଏ ଅନୁଭବ କ୍ଷଣିକ ଚପଳତା ବା ଉନ୍ମାଦନା କଦାପି ନୁହେଁ ।

ସେଇ ଗୋଟିଏ କ୍ଷଣର ଦେଖାରେ ରାମଙ୍କର ଏକ ସମ୍ମୋହିତ ଅବସ୍ଥା ଆସିଯାଇଛି । ତାଙ୍କର ମନେ ହୋଇଛି ଏ ଯୁବତୀଟି ତାଙ୍କର ଅପରିଚିତ ନୁହେଁ । ଅନେକ ଅନେକ ଜନ୍ମରୁ ସୀତା ତାଙ୍କର ଏବଂ ଏ ଜନ୍ମରେ ମଧ ସୀତା ତାଙ୍କୁ ହିଁ ପ୍ରାପ୍ତ ହେବେ । ଏଥିରେ ଅନ୍ୟଥା ହୋଇ ପାରିବ ନାହିଁ । ସୀତାଙ୍କ ଜନ୍ମ ତାଙ୍କରି ପାଇଁ, ଏପରି ଏକ ଦୃଢଧାରଣା ସତଃ ତାଙ୍କ ମନ ଭିତରକୁ ଆସିଛି ଏବଂ ତାଙ୍କର ମନେ ହୋଇଛି ଏ ଯେଉଁ ପରୀକ୍ଷା, ନିରୀକ୍ଷା ତାହା ଔପଚାରିକ ମାତ୍ର । ସୀତା ତାଙ୍କର ଏହା ବିଧି ନିର୍ଦ୍ଦିଷ୍ଟ । ଏ ପ୍ରକାର ଏକ ସମ୍ମୋହିତ ଧାରଣା ତାଙ୍କ ମନକୁ ସମ୍ପୂର୍ଣ୍ଣ ଆବୋରି ନେଇଛି । ମାତ୍ର ଗୋଟିଏ କ୍ଷଣ ପାଇଁ ଆଉ ତାଙ୍କ ମନକୁ ଛୁଇଁ ନାହିଁ ଯେ ସୀତା ଓ ତାଙ୍କ ମଝିରେ ଯେଉଁ ବିଶାଳ ଧନୁଟି ରହିଛି, ତାହା କିଛି ବାଧା ସୃଷ୍ଟି କରିବ । ନା, ଏ ଧାରଣା ତାଙ୍କ ମନକୁ ଆସିନାହିଁ । କ୍ଷଣକ ପାଇଁ ମଧ୍ୟ ଆସିନାହିଁ ।

ଏଇ ଦୃଢମନ୍ୟତା, ତାଙ୍କୁ ଏ ପରୀକ୍ଷାରେ ବିଜୟଟୀକା ପିନ୍ଧାଇବାରେ ସାହାଯ୍ୟ କରିଛି । ଶିବଧନୁକୁ ପ୍ରଣାମ କରି ସ୍ପର୍ଶ କରିବା ସମୟରେ ତାଙ୍କର ସମ୍ମୋହିତ ଅବସ୍ଥା, ବିଶ୍ୱାମିତ୍ରଙ୍କ ଶିକ୍ଷା ତାଙ୍କୁ ଏକାଗ୍ର କରିଛି । ତାଙ୍କର ଚତୁର୍ଦ୍ଦିଗରେ କ'ଣ ଘଟୁଛି ତାଙ୍କର ଲକ୍ଷ୍ୟ ନାହିଁ । ସମଗ୍ର ଇନ୍ଦ୍ରିୟ ଏକ ବିନ୍ଦୁରେ ନିବିଷ୍ଟ । ସେ ବିନ୍ଦୁଟି ପ୍ରକୃତରେ ଶିବଧନୁ ନୁହେଁ । ସେ ବିନ୍ଦୁଟି ହେଉଛି ସୀତାମୟତା । ସମ୍ପୂର୍ଣ୍ଣ ସମ୍ମୋହିତ ଅବସ୍ଥାରେ ଅନାୟସରେ ଶିବଧନୁଟି ଉଠାଇବା ବେଳେ ସେ ପ୍ରାୟତଃ ବାହ୍ୟଜ୍ଞାନଶୂନ୍ୟ । ଏଇ ସମ୍ମୋହନ, ଏଇ ଦୃଢ ମନସ୍କତା, ଯାହା ତାଙ୍କ ସମଗ୍ର ସତ୍ତାକୁ ସେ ସମୟରେ ଆବୋରି ନେଇଛି ଓ ଅସାଧାରଣ ସଫଳତା ଦେଇଛି, ତାହାର ଆଧାର କେବଳ ସୀତା । ସୀତାଙ୍କ ଯାଗାରେ ସେଦିନ ମିଥିଳାର ଅନ୍ୟ କେହି କନ୍ୟାଟିଏ ଥିଲେ, ପ୍ରଥମ କ୍ଷଣକ ଚକ୍ଷୁ ମିଳନରେ ଏପରି ଅସାଧାରଣ ପ୍ରତିକ୍ରିୟା ରାମଙ୍କ ଶରୀରରେ, ମନରେ ସଂଘଟିତ ହୋଇ ନଥାନ୍ତା । ଆମର

ବିଚାରରେ, ଏଇଥିପାଇଁ ରାମଙ୍କ ଶିବଧନୁ ଭଙ୍ଗ କୃତିତ୍ୱରେ ଗୁରୁଶିଷ୍ୟ ଦୁଇଜଣଙ୍କର ଅବଦାନ ସହିତ ସୀତାଙ୍କର ପରୋକ୍ଷ ଯୋଗଦାନକୁ ସ୍ୱୀକାର କରିବା ସଂଗତ ହେବ।

ସୀତା ବିବାହ ପରେ ମିଥିଳାରୁ ଫେରିବା ବାଟରେ ଘଟିଛି ପର୍ଶୁରାମଙ୍କ ସହ ବିବାଦ। ପରିଣାମରେ ପର୍ଶୁରାମ ପରାଜୟ ସ୍ୱୀକାର କରିଛନ୍ତି ଓ ତାଙ୍କର ଅହଂକାର ଖର୍ବ ହୋଇଛି। ଉଲ୍ଲେଖଯୋଗ୍ୟ ଯେ ପର୍ଶୁରାମଙ୍କ ସହ ମୁକାବିଲା ସମୟରେ ସାଙ୍ଗରେ ବିଶ୍ୱାମିତ୍ର ନାହାନ୍ତି। ସୀତା ବିବାହ ପରେ ମିଥିଳାରୁ ରାମଙ୍କୁ ଦଶରଥ ଓ ବଶିଷ୍ଠଙ୍କ ହାତକୁ ଫେରାଇ ଦେଇ ସରସ୍ୱତୀ ନଦୀ କୂଳକୁ ତପସ୍ୟା କରିବାକୁ ଫେରିଯାଇଛନ୍ତି।

ସେ ଯେଉଁ ଉଦ୍ଦେଶ୍ୟ ନେଇ ପାଞ୍ଚ ହଜାର ବର୍ଷର ତପସ୍ୟା ଭାଙ୍ଗି ଗୁରୁ ଆଜ୍ଞାରେ ହିମାଳୟ କନ୍ଦର ଛାଡି ସମତଳକୁ ଆସିଥିଲେ, ସେ କାର୍ଯ୍ୟର ସଫଳ ରୂପାୟନ ପାଇଁ ସେ ଉର୍ବର କ୍ଷେତ୍ର ପ୍ରସ୍ତୁତ କରି ଦେଇଛନ୍ତି। ଉନ୍ନତ କିସମର ମଞ୍ଜିଟି ପୋତି ଦେଇ ଗଛ ହେବା ଯାଏଁ ଅପେକ୍ଷା କରିଛନ୍ତି ଓ ତାପରେ ସେ ଫେରି ଯାଇଛନ୍ତି ସରସ୍ୱତୀ ନଦୀ ତଟକୁ ତପସ୍ୟା ପାଇଁ। ସେ ଯେଉଁ ଉଦ୍ଦେଶ୍ୟ ନେଇ ତପସ୍ୟା ଭାଙ୍ଗି ଆସିଥିଲେ ଓ କିପରି ତା'ର ସଫଳ ରୂପାୟନ କରିପାରିଲେ ସେ ସମ୍ପର୍କରେ ଅନ୍ୟତ୍ର ଆଲୋଚନା କରାଯାଇଥିବାରୁ ତାହାର ପୁନାରଲୋଚନା କରୁନାହିଁ।

ବର୍ତ୍ତମାନ ଆଲୋଚ୍ୟ ରାମ-ପର୍ଶୁରାମ ବିବାଦ। ଏଠାରେ ତାଙ୍କ ସହିତ ବିଶ୍ୱାମିତ୍ର ନାହାନ୍ତି, ମାତ୍ର ବିଶ୍ୱାମିତ୍ର ପ୍ରଦତ୍ତ ଅମୂଲ୍ୟ ସମ୍ପଦ ଶିକ୍ଷା ତାଙ୍କ ପାଖରେ ରହିଛି। ତା'ର ପ୍ରୟୋଗ କଳା ମଧ୍ୟ ସେ ହାସଲ କରି ନେଇଛନ୍ତି।

ଶିବଧନୁ ଅନୁରୂପ ଅନ୍ୟ ଏକ ଧନୁ ପର୍ଶୁରାମଙ୍କ ପାଖରେ ଥିଲା। ସେଇଟିରେ ଗୁଣ ଚଢାଇବାକୁ ସେ ରାମଙ୍କୁ ଆହ୍ୱାନ କରିଛନ୍ତି। ଯେଉଁ ବିଦ୍ୟାବଳରେ, ଯେଉଁ କୌଶଳ ଅବଲମ୍ବନ କରି, ଯେଉଁ ଏକାଗ୍ରତା ଓ ଏକ ସ୍ଥିର ମନସ୍କତା ବଳରେ ରାମ ଶିବଧନୁକୁ ଆୟତ୍ତ କରି ପାରିଥିଲେ ସେହି ଏକା କୌଶଳର ଅବଲମ୍ବନରେ, ରାମ ଅନାୟସରେ ପର୍ଶୁରାମଙ୍କ ଆହ୍ୱାନର ମୁକାବିଲା କରିଛନ୍ତି ଓ ସଫଳ ମଧ୍ୟ ହୋଇଛନ୍ତି। ଧନୁରେ ଗୁଣ ଚଢାଇଛନ୍ତି। ଏଠାରେ ବିଶ୍ୱାମିତ୍ରଙ୍କ ଜ୍ଞାନ ଓ କୌଶଳ ସହିତ ହୁଏତ ମିଶିଛି ପର୍ଶୁରାମଙ୍କର ଅନ୍ୟାୟ, ଅଯୌକ୍ତିକ କ୍ଷତ୍ରୀୟ ବିରୋଧୀ ମନୋଭାବ ପ୍ରତି ରାମଙ୍କର ପ୍ରବଳ ଘୃଣା ଓ ବିରକ୍ତି। ହୁଏତ ରାମ ନିଜେ କ୍ଷତ୍ରିୟ ସନ୍ତାନ ହୋଇଥିବାରୁ ପର୍ଶୁରାମଙ୍କ କ୍ଷତ୍ରୀୟ ସଂହାର ହୁଂକାରକୁ ସେ ବରଦାସ୍ତ କରିପାରି ନାହନ୍ତି। ବର୍ତ୍ତମାନ ତା'ର ଉତ୍ତର ଦେବାର ସୁଯୋଗ ତାଙ୍କ ପାଖରେ ପହଞ୍ଚିଛି ଓ ସେ ତା'ର ସଦୁପୋଯୋଗ କରିଛନ୍ତି। ଜଣେ ସମର୍ଥ, ବୁଦ୍ଧିମାନ, ଏକାଗ୍ର, କୁଶଳୀ କ୍ଷତ୍ରୀୟ ବୀର ପୁରୁଷର ପରିଚୟ ସେ ଦେଇଛନ୍ତି।

ସେ ଯାହାହେଉ ଏ ପର୍ଯ୍ୟନ୍ତ ରାମଙ୍କ ଜୀବନରେ ଘଟିଥିବା ପ୍ରମୁଖ ଘଟଣା ସବୁରୁ କୌଣସିଟିରେ ଅଲୌକିକତାର ପରିଚୟ ମିଳେ ନାହିଁ। ଅସାଧାରଣ ଧୀ, ଅସାଧାରଣ ବୁଦ୍ଧି, ଜ୍ଞାନ, ଏକାଗ୍ରତା, ଶକ୍ତି, ସାମର୍ଥ୍ୟ ଓ ନିପୁଣତାର ପରିଚୟ ନିଶ୍ଚୟ ମିଳୁଛି। ତା

ସହିତ ମିଶିଛି ତାଙ୍କର ନମ୍ରତା, ଗୁରୁ, ବ୍ରାହ୍ମଣ ଭକ୍ତି, ନିଷ୍ଠା, ଶାଳୀନ ଆଚରଣ । ଏସବୁ ଗୋଟିଏ ଅନନ୍ୟ, ଅସାଧାରଣ ବ୍ୟକ୍ତିତ୍ୱର ପରିଚୟ ଦେଇଛି । ଯାହାକିଛି ଆମେ ଦେଖୁଛେ ତାହା ଜଣେ ମନୁଷ୍ୟ ପାଇଁ ଅସାଧ ମାତ୍ର ଅସମ୍ଭବ ବୋଲି ମନେ ହୁଏନା । ତେଣୁ ଯାହା ଜଣେ ମନୁଷ୍ୟ, ଅନନ୍ୟ ମନୁଷ୍ୟ କ୍ଷେତ୍ରରେ ସମ୍ଭବ, ତାକୁ ଅଲୌକିକ ବୋଲି କହିବା ଅନୁଚିତ୍ ହେବ ।

ଏହାପରେ ଆସୁଛି, ପିତୃସତ୍ୟ ପାଳି ବନବାସ ପ୍ରସଙ୍ଗ । ଯେ କୌଣସି କାରଣ ବା ପରିସ୍ଥିତିରେ ହେଉ, କୈକେୟୀଙ୍କୁ ଦେଇଥିବା ବରର ପରିଣାମ ସ୍ୱରୂପ ରାମଙ୍କୁ ବନବାସ କରିବାକୁ ପଡିଛି । ତାପୁଣି ଚଉଦ ବର୍ଷ ପାଇଁ । ସୀତା ସମସ୍ତଙ୍କ ବାରଣ ସତ୍ୱେ ରାମଙ୍କ ସହିତ ଯାଇଛନ୍ତି ଓ ଭାଇ ଲକ୍ଷ୍ମଣ ମଧ ଯାଇଛନ୍ତି । ରାତି ପାହିଥିଲେ ରାମ ଯୁବରାଜ-ଅଭିଷିକ୍ତ ହୋଇଥାଆନ୍ତେ ଓ ବୃଦ୍ଧ ନରପତିଙ୍କ ଠାରୁ ରାଜ୍ୟଭାର ସମ୍ଭାଳି ଥାଆନ୍ତେ । ମାତ୍ର ତାହା ହୋଇନାହିଁ । ରାମ ରାଜଗାଦିକୁ ପଛରେ ପକାଇ ବନବାସ ପାଇଁ ଯାଇଛନ୍ତି ।

ଏଇଟା ନିଶ୍ଚିତ ଏକ ବିଚାର ସଙ୍କଟର ବେଳ । ଗୋଟାଏ ପଟେ ରାଜଗାଦୀ, ଅନ୍ୟପଟେ ଚଉଦ ବର୍ଷ ବନବାସ ଓ ଅନିଶ୍ଚିତ ଜୀବନ । ମାତ୍ର ପିତାଙ୍କ ନିଷ୍ପତ୍ତି ଉପରେ ରାମ ପଦେ ମାତ୍ର ପ୍ରଶ୍ନ କରିନାହାନ୍ତି । ଭରତଙ୍କ ଅନୁପସ୍ଥିତିରେ ତାଙ୍କର ଅଭିଷେକ ପାଇଁ ଦଶରଥଙ୍କ ଇଚ୍ଛାକୁ ଯେପରି ବିନା ପ୍ରଶ୍ନରେ ମାନି ନେଇଛନ୍ତି, ବନବାସ ପାଇଁ ଯିବା ବେଳେ ପିତାଙ୍କର ନିଷ୍ପତ୍ତିର ଔଚିତ୍ୟ ନେଇ ମଧ ପ୍ରଶ୍ନ ଉଠାଇ ନାହାନ୍ତି । ଏଠାରେ ରାମଙ୍କ ଚରିତ୍ରର ଏକ ଜଟୀଳ ଦିଗ ଆଗକୁ ଆସୁଛି । ତା'ର ଆଲୋଚନା ଟିକିଏ ପରେ । ମାତ୍ର ଏହି ବନବାସ ନିଷ୍ପତ୍ତି ନେବାରେ ରାମଙ୍କୁ ଗୋଟିଏ କ୍ଷଣ ମଧ ଦ୍ୱିଧା କରିବାର ଦେଖା ଯାଇନାହିଁ । ଏଥିରୁ ରାମଙ୍କ ନିଃସ୍ୱାର୍ଥପରତା ତଥା ନୀତି ନିଷ୍ଠତାର ପରିଚୟ ମିଳୁଛି ।

ଅଯୋଧ୍ୟାବାସୀ, ମାତା କୌଶଲ୍ୟା, ଗୁରୁ ବଶିଷ୍ଠ ତଥା ପାତ୍ର ମନ୍ତ୍ରୀମାନେ ବୁଝାଇଛନ୍ତି ଯେ ଏହା ଦଶରଥଙ୍କ ଅନ୍ୟାୟ ନିର୍ଦ୍ଦେଶ ଓ ଏହାର ପାଳନ ଅପରିହାର୍ଯ୍ୟ ନୁହେଁ । ଗୁରୁ ବଶିଷ୍ଠ ମଧ ସେହି ଏକ ପ୍ରକାର ନିର୍ଣ୍ଣୟ ଦେଇଛନ୍ତି । ମାତ୍ର ରାମ ନିଜ ନିଷ୍ପତ୍ତିରେ ଅଟଳ । ରାଜଗାଦୀ ହାତ ପାଆନ୍ତାରୁ ଖସିଗଲା ବୋଲି ମନରେ ତାଙ୍କର କ୍ଷୋଭ ଆସି ନାହିଁ କି ଆଗାମୀ ଅନିଶ୍ଚିତ ଅନ୍ଧକାରକୁ ଯିବା ପାଇଁ କୌଣସି କୁଣ୍ଠା ଆସିନାହିଁ । ନିଜ ନିଷ୍ପତ୍ତି ହେଉଛି ପିତୃସତ୍ୟ ପାଳନ । ପିତୃସତ୍ୟ ଉଚିତ୍ ହେଉ ବା ଅନୁଚିତ୍ ହେଉ । ଅନ୍ୟଥା ବିଚାର ରାମଙ୍କ ପାଇଁ ନିରର୍ଥକ । ସେ ନିଜ ନିଷ୍ପତ୍ତିରେ ଅଟଳ ରହିଛନ୍ତି । ଏହି ନୀତିନିଷ୍ଠତା ନିଶ୍ଚିତ ଭାବେ ସାମୁହିକ ଭାବେ ସମାଜ ପାଇଁ ଏକ ଆଦର୍ଶ । ଯୁଗ ବଦଳିବ, ସମୟ ବଦଳିବ, ଅଭିନେତା ବଦଳିବେ ମାତ୍ର ରାମଙ୍କର ଏ ନିଷ୍ପତ୍ତି ପଛରେ ଥିବା ନିଷ୍ଠା, ନିଃସ୍ୱାର୍ଥପରତା ତାଙ୍କର ବ୍ୟକ୍ତିତ୍ୱର ମହନୀୟତାକୁ ଅମଳିନ କରି ରଖିବ ।

ଦଶରଥଙ୍କ ନିଷ୍ପତ୍ତିରେ ଲକ୍ଷ୍ମଣ ଉତ୍‌କ୍ଷିପ୍ତ ହୋଇଛନ୍ତି ଓ ପିତାଙ୍କ ପ୍ରତି ଅଶାଳୀନ ବାକ୍ୟ

ବ୍ୟବହାର କରି ବିଦ୍ରୋହ ଘୋଷଣା ପାଇଁ ପ୍ରସ୍ତୁତ ହୋଇଛନ୍ତି । ଏପରି ହୋଇଥିଲେ ଲକ୍ଷ୍ମଣଙ୍କୁ ଅଯୋଧ୍ୟାବାସୀ ଓ ସେନାବାହିନୀର ହୁଏତ ସମର୍ଥନ ମିଳିଥାଆନ୍ତା । କାରଣ ଦଶରଥ ଯେ ଅତ୍ୟନ୍ତ ଗର୍ହିତ ଆଚରଣ କରିଛନ୍ତି ଓ ତା' ପୁଣି ରାମଙ୍କ ପରି ପୁଅ ପ୍ରତି, ତାହା ସାଧାରଣ ଜନତା ମନରେ ମଧ୍ୟ କ୍ରୋଧ ଓ ବିରକ୍ତି ଭାବ ଆଣିଥିଲା । ମାତ୍ର ରାମ ଏସବୁରେ ସାମାନ୍ୟତମ ବିଚଳିତ ବା ପ୍ରଭାବିତ ହୋଇ ନାହାନ୍ତି । ତାଙ୍କ ବିଚାରରେ ପିତା ଥରେ ବଚନ ଦେଇଛନ୍ତି ଅର୍ଥ ତାହା ପୁତ୍ର ହିସାବରେ ସେ ପାଳନ କରିବେ । ଯାହା ଘଟିଯାଉ ।

ଉପଯୁକ୍ତ ସଂସ୍କାର, ନିଷ୍ଠା, ସଂଯମ ତଥା ସ୍ଥିର ବୁଦ୍ଧି ନଥିଲେ ଜଣେ ଗୋଟିଏ କ୍ଷଣରେ ଏତେ ବଡ ତ୍ୟାଗ ସ୍ୱୀକାର କରି ଅନିଶ୍ଚିତତାକୁ ବରଣ କରିପାରିବ ନାହିଁ । ଏ ବ୍ୟାପାରରେ ରାମ ଅନନ୍ୟ ।

ପୂର୍ବରୁ ଉଲ୍ଲେଖ କରିଛି, ରାମଙ୍କ ଚରିତ୍ରର ଗୋଟିଏ ଜଟୀଳ ଦିଗ, ଏହା ପିତୃସତ୍ୟ ପାଳନ ଅବସରରେ ଆଖି ଆଗକୁ ଆସେ । ତାହାର ଆଲୋଚନା ଲୋଡ଼ା । ରାଜଗାଦୀ ତୁଚ୍ଛ କରି ବନବାସ ଅବସରରେ କେତୋଟି ଘଟଣା ଘଟିଛି ଯାହାକୁ ବିଚାର କଲେ ପାଠକକୁ କିଛିଟା ମାନସିକ ଦ୍ୱନ୍ଦରେ ପଡିବାକୁ ହୁଏ ।

ଦଶରଥଙ୍କର ଦେହାନ୍ତ ଘଟିଛି । ଭରତ ମାତୁଳାଳୟରୁ ଡକରାପାଇ ଫେରି ଆସିଛନ୍ତି । ଅଯୋଧ୍ୟା ଉପରେ ବିତି ଯାଇଥିବା ଝଡ ବିଷୟରେ ସେ ଜ୍ଞାତ ହୋଇଛନ୍ତି । କୈକେୟୀ ଯେ ଅକ୍ଷମଣୀୟ ଅପରାଧ କରିଛନ୍ତି, ତାହା ସେ ବୁଝି ପାରିଛନ୍ତି । ବଂଶର ସୁନାମରେ କଳଙ୍କ ଲାଗିବା ସହିତ ସଂସାର ସମ୍ମୁଖରେ ଭରତଙ୍କୁ ମା'ଙ୍କର ସ୍ୱାର୍ଥପରତା ଯେ କ୍ଷୁଦ୍ର କରି ଦେଇଛି, ତାହା ସେ ବୁଝିଛନ୍ତି ଓ ମ୍ରିୟମାଣ ହୋଇପଡିଛନ୍ତି । ଦଶରଥଙ୍କ ମୃତ୍ୟୁ ପରର ଆନୁଷ୍ଠାନିକ କାର୍ଯ୍ୟ ସମ୍ପାଦନ ପରେ ରାଜଗାଦୀରେ ବସିବା ପାଇଁ ସମ୍ପୂର୍ଣ୍ଣ ମନା କରିଦେଇଛନ୍ତି । ପାତ୍ର ମନ୍ତ୍ରୀ ଓ ତିନି ବିଧବା ରାଣୀଙ୍କ ଗହଣରେ ସୈନ୍ୟ ସାମନ୍ତ ସହ ରାମଚନ୍ଦ୍ରଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଇ ଅଯୋଧ୍ୟା ଫେରାଇ ଆଣିବା ପାଇଁ ବାହାରିଛନ୍ତି । ଦୂରରୁ ଭରତ ବିଶାଳ ବାହିନୀ ସହ ଆସୁଥିବାର ଦେଖି ଲକ୍ଷ୍ମଣ ତାଙ୍କର ଅଭିପ୍ରାୟ ନେଇ ସନ୍ଦେହୀ ହୋଇ ପଡିଛନ୍ତି ଓ ନିଷ୍କଣ୍ଟକ ରାଜ୍ୟ ଭୋଗ କରିବା ପାଇଁ ଭରତ ସେମାନଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ଆସୁଛି ବୋଲି ମନେକରି ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଛନ୍ତି । ମାତ୍ର ଏଠାରେ ରାମଙ୍କର ପ୍ରତିକ୍ରିୟା ପ୍ରଣିଧାନ ଯୋଗ୍ୟ । ସେ କ୍ଷଣକ ପାଇଁ ମଧ୍ୟ ଭରତଙ୍କ ଆଗମନକୁ ସନ୍ଦେହ ଚକ୍ଷୁରେ ଦେଖି ନାହାନ୍ତି ବରଂ ଲକ୍ଷ୍ମଣ ଏପରି ଏକ ଭାବନାକୁ ମନରେ ପ୍ରଶ୍ରୟ ଦେଉଥିବାରୁ ତାହାକୁ ନାପସନ୍ଦ କରିଛନ୍ତି । ଜଣେ ଅନ୍ତର ଭିତରେ ସମ୍ପୂର୍ଣ୍ଣ ସ୍ୱଚ୍ଛ ନହେଲେ ଏପରି ପ୍ରତିକ୍ରିୟା ପ୍ରକାଶ କରିବା ଅସମ୍ଭବ । ଭରତଙ୍କ ଉପରେ ଗଭୀର ଆସ୍ଥା ରାମଙ୍କ ଚରିତ୍ରର ଆଉ ଏକ ଉଜ୍ଜ୍ୱଳ ତାରକା ।

ସେ ଯାହାହେଉ, ଭରତଙ୍କ ଆଗମନର ଉଦ୍ଦେଶ୍ୟ ଓ ନିବେଦନ ତଥା ଗୁରୁ ବଶିଷ୍ଠ, ମାତା କୌଶଲ୍ୟା ଇତ୍ୟାଦିଙ୍କର ଆଗ୍ରହ ଜାଣିବାପରେ ମଧ୍ୟ ରାମ ଅତ୍ୟନ୍ତ ବିନମ୍ର ମାତ୍ର

ଦୃଢ ଭାବରେ ଅଯୋଧ୍ୟାର ରାଜା ହେବା ପାଇଁ ପିତୃ ସତ୍ୟ ଲଂଘନ କରିବାକୁ ଅଗ୍ରାହ୍ୟ କରିଛନ୍ତି । ସେ ବିଷୟରେ ଆଲୋଚନା ବର୍ତ୍ତମାନର ପ୍ରସଙ୍ଗ ନୁହେଁ । ଭରତ ନିଜ ମା'ଙ୍କର ଆଚରଣ ପାଇଁ କ୍ଷୋଭ ପ୍ରକାଶ କରିବା ବେଳେ ରାମ ତାଙ୍କୁ ପ୍ରବୋଧନା ଦେଇ କୈକେୟୀଙ୍କ ଆଚରଣକୁ ନାପସନ୍ଦ କରିବାକୁ ବା ସେଥିପାଇଁ ଲଜ୍ଜିତ ନହେବାକୁ ପରାମର୍ଶ ଦେଇଛନ୍ତି । ସେ କହିଛନ୍ତି ଯେ ଦଶରଥ କୈକେୟୀଙ୍କୁ ବିବାହ କାଳରେ ଶ୍ୱଶୁର ଅଶ୍ୱପତିଙ୍କୁ କନ୍ୟାଶୁଳ୍କ ହିସାବରେ କୈକେୟୀଙ୍କ ପୁତ୍ରକୁ ରାଜଗାଦି ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଯଦି ଠିକ୍ ସମୟରେ ମାତା କୈକେୟୀ ଦଶରଥଙ୍କୁ ପ୍ରତିଶ୍ରୁତି କଥା ସ୍ମରଣ କରାଇନଥାନ୍ତେ ତେବେ ଦଶରଥ ସତ୍ୟଭଗ୍ନ ଦୋଷରେ ଦୋଷୀ ହୋଇଥାଆନ୍ତେ । ଇକ୍ଷ୍ୱାକୁ ବଂଶରେ କଳଙ୍କ ଲାଗିଥାଆନ୍ତା । ରାମଙ୍କ ବିଚାରରେ କୈକେୟୀ ବର ମାଗି ନେବା ଦ୍ୱାରା ଦଶରଥ ତଥା ସମଗ୍ର ରଘୁକୁଳ ଏକ ଚରମ ବିପର୍ଯ୍ୟୟରୁ ରକ୍ଷା ପାଇଗଲେ । ନଚେତ୍ ଯୁଗ ଯୁଗକୁ ବଂଶର ସୁନାମରେ କଳା ଦାଗ ରହି ଯାଇଥାଆନ୍ତା । ଏଇଟି ଗୋଟିଏ ସାଧାରଣରେ ଅଜଣା ପ୍ରସଙ୍ଗ । ମାତ୍ର ରାମ କେବଳ ପ୍ରବୋଧନା ଦେବା ପାଇଁ ମିଛ କହିବାର ପ୍ରଶ୍ନ ଉଠୁ ନାହିଁ । ତାଙ୍କ ଭାଷାରେ ଦଶରଥ ନିଜେ ତାଙ୍କୁ ଏକଥା କହିଛନ୍ତି ।

ଏସବୁ ଠିକ୍ ଅଛି । ଅଯୋଧ୍ୟାରେ କୈକେୟୀଙ୍କ ବର ମାଗିବା ନେଇ ଯେଉଁ ଘଣ୍ଟାଚକଟା ଲାଗିଲା, ଯେଉଁ ଆରୋପ, ଯେଉଁ ମତାନ୍ତର, ମନାନ୍ତର ସୃଷ୍ଟି ହେଲା, ସେସବୁ ଏଡେଇ ଦିଆଯାଇପାରି ଥାଆନ୍ତା, ଯଦି ଏ ବ୍ୟାପାରଟି ସାଧାରଣରେ ଆଗରୁ ପ୍ରଚାରିତ ଓ ଆଲୋଚିତ ହୋଇଥାଆନ୍ତା । ମାତ୍ର ତା ହୋଇ ନାହିଁ । ଏତକ ବୁଝିବାରେ ଅସୁବିଧା ନାହିଁ । ହୁଏତ କ୍ଷଣକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଦଶରଥ ଅଶ୍ୱପତିଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ରାମଙ୍କ ଆବିର୍ଭାବ ପରେ ତାଙ୍କର ଗୁଣଗ୍ରାମ, ଚାଲିଚଳଣ ଇତ୍ୟାଦିରେ ମୁଗ୍ଧ ହୋଇ ରାମଙ୍କ ପ୍ରତି ଅତି ମାତ୍ରାରେ ବାନ୍ଧି ହୋଇ ପଡିଛନ୍ତି ଓ ଏପରି ଗୋଟିଏ ସର୍ବଗୁଣସମ୍ପନ୍ନ ଜ୍ୟେଷ୍ଠ ପୁତ୍ରକୁ ତା'ର ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ କରିବାକୁ ତାଙ୍କର ହୃଦୟ କହିନାହିଁ ।

ମାତ୍ର ଏ ବ୍ୟାପରଟି ଯଦି ଦଶରଥ ରାମଙ୍କୁ କହିଲେ ତେବେ ରାମଙ୍କର ପ୍ରତିକ୍ରିୟା କ'ଣ ହେଲା । ଯୁବରାଜ ପଦରେ ଅଭିଷେକ ପାଇଁ ପ୍ରସ୍ତୁତି ଆରମ୍ଭରୁ ଦଶରଥ ରାମଙ୍କୁ କହିଛନ୍ତି ଯେ ଭରତଙ୍କ ଅନୁପସ୍ଥିତିରେ ଯଥାଶୀଘ୍ର ସେ ଏ ଉତ୍ସବ ସମ୍ପାଦନ କରି ଦେବାକୁ ଚାହୁଁଛନ୍ତି । ଭରତଙ୍କୁ ସେ ସନ୍ଦେହ ନକଲେ ମଧ ସମ୍ପୂର୍ଣ୍ଣ ଭରସା ମଧ କରିପାରୁ ନାହାନ୍ତି ବୋଲି ନିଜେ ପ୍ରକାଶ କରିଛନ୍ତି । ହୁଏତ ଏଇ ପ୍ରତିଶ୍ରୁତି ବ୍ୟାପାରଟି ଦଶରଥଙ୍କ ମନରେ ଅଛି ଓ ଭରତ ହୁଏତ ଅଶ୍ୱପତିଙ୍କଠାରୁ ଏ ପ୍ରତିଶ୍ରୁତି ପ୍ରସଙ୍ଗ ଜାଣିଥିବ ଏବଂ ଠିକ୍ ସମୟରେ ରାଜଗାଦୀ ନିୟମତଃ ତା'ର ପ୍ରାପ୍ୟ ବୋଲି ଦାବୀ କରି ରାମ-ଅଭିଷେକରେ ବାଧା ସୃଷ୍ଟି କରିବ । ଏହା ସମ୍ଭବ । ଏ ଦୁଃଶ୍ଚିନ୍ତା ଦଶରଥଙ୍କ ମନରେ ଆସିଥିବ । ସେଥିନେଇ ସେ ଭରତ ଅଜା ଘରେ ଥିବା ସମୟରେ ଏ ଉତ୍ସବଟି ସାରି ଦେବାକୁ ବସିଛନ୍ତି । ମାତ୍ର ରାମ ଯଦି ଦଶରଥଙ୍କ ଠାରୁ ଏ ବ୍ୟାପାରଟି ଜାଣିଲେ ତେବେ, ସେ ପିତାଙ୍କର ଏ ଅନ୍ୟାୟ ଆଚରଣରେ ନିଜକୁ ସାମିଲ ନକରିବା ଅଧିକ ଉଚିତ୍ ହୋଇଥାଆନ୍ତା ।

ରାମ ଅଭିଷିକ୍ତ ହୋଇଥିଲେ ଦଶରଥ ସତ୍ୟଭଙ୍ଗ ଦୋଷରେ ଦୋଷୀ ହୋଇଥାନ୍ତେ ଏବଂ ତାଙ୍କର ଚଞ୍ଚଳତା ପଦାରେ ପଡିଥାଆନ୍ତା । ଯେତେବେଳେ ରାମ ବଂଶ ପରମ୍ପରା ତଥା ସୁନାମ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଉଛନ୍ତି, ସେହି କାରଣ ଦର୍ଶାଇ ପିତାଙ୍କୁ ଏଥିରୁ ନିବୃତ କରିପାରିଥାଆନ୍ତେ ।

ଏପରି ହୋଇନାହିଁ । ଏପରି ନ ହେବାର କାରଣ କ'ଣ ହୋଇପାରେ ? ରାମ ଯେ ରାଜଗାଦୀ ପାଇଁ ଲାଳାୟିତ ଥିଲେ ଓ ସେଥିପାଇଁ ଜାଣି ବୁଝି ଦଶରଥଙ୍କୁ ଚକ୍ରାନ୍ତରେ ସାହାଯ୍ୟ କଲେ ତାହା କସ୍ମିନ କାଳେ ବିଶ୍ୱାସ ଯୋଗ୍ୟ ନୁହେଁ । ଏଇଟି ଦଶରଥଙ୍କ ପକ୍ଷରୁ କରାଯାଇଥିବା ଗୋଟିଏ ଚକ୍ରାନ୍ତ ବୋଲି ମନେ ହେଉଛି । ଭରତଙ୍କୁ ବଞ୍ଚିତ କରି, ପ୍ରତିଶ୍ରୁତିକୁ ଅଣଦେଖା କରି ରାମକୁ ଅଭିଷିକ୍ତ କରିବା ବେଳେ ସେ ଅଶ୍ୱପତିଙ୍କୁ ନଡାକିବା ସାଭାବିକ । ମାତ୍ର ଏପରି ଏକ ବିଶେଷ ଉତ୍ସବକୁ ଜନକଙ୍କୁ ମଧ୍ୟ ନିମନ୍ତ୍ରଣ କରି ନାହାନ୍ତି । ରାଜ ସଭା ଡକାଇ ରାମଙ୍କ ସପକ୍ଷରେ ପୂର୍ଣ୍ଣ ଅନୁମୋଦନ ନେବା ସମୟରେ ନିଜର ବୃଦ୍ଧାବସ୍ଥାର ବାହାନା ନେଇଛନ୍ତି ମାତ୍ର କନ୍ୟାଶୁଳ୍କ କଥାଟି ଉଠାଇ ନାହାନ୍ତି । ରାମ ନିର୍ଲୋଭ, ରାମ ନିଃସାର୍ଥପର ଏହା ଉପରେ କୌଣସି କାଳେ କେହି ମଧ୍ୟ ପ୍ରଶ୍ନବାଚୀ ଲଗାଇ ପାରିବ ନାହିଁ । ରାମ ରାଜଗାଦୀ ପାଇଁ ରାଜି ହୋଇ ଯିବା ପଛରେ କ'ଣ ପିତାଙ୍କ ଭୁଲଟାକୁ ସ୍ମରଣ କରାଇ ଦେଇ ତାଙ୍କ ମନରେ ଦୁଃଖ ଦେବାକୁ ନଚାହିଁବା, ଏହି କାରଣ ଅଛି ବୋଲି ଆମେ ମନେ କରିବା ? ଆମର ସଂଶୟ ଓ ଦ୍ୱନ୍ଦ ଏଇ ଗୋଲକ ଧନ୍ଦାକୁ ନେଇ । ପ୍ରିୟ ପାଠକ, ଏହାର ସମାଧାନ ଆପଣମାନଙ୍କ ବୁଝାମଣା ଉପରେ ଛାଡି ଦେବା ଉଚିତ୍ ମନେ କରୁଛି ।

ଏହାପର ଘଟଣାକୁ ଆସନ୍ତୁ । ବନବାସ ସମୟ ସୁଖରେ ଦୁଃଖରେ, ଭଲରେ ମନ୍ଦରେ ଆଗେଇ ଚାଲିଛି । ଏହି ସମୟରେ ରାବଣ ସୀତାଙ୍କୁ ହରଣ କରି ନେଇଛି । ଏ ଘଟଣାରେ ରାମ ଅତ୍ୟନ୍ତ ଅସହାୟ ଓ ଅଥୟ ହୋଇ ପଡିଛନ୍ତି । ଯେ କୌଣସି ସାଧାରଣ ମଣିଷଟିଏ ପରି କାନ୍ଦିଛନ୍ତି, ଭାଗ୍ୟକୁ ଦୋଷ ଦେଇଛନ୍ତି । ରାମ ସଂଯମୀ, ବିଚାରବନ୍ତ, ଧର୍ମ ଆଶ୍ରିତ । ମାତ୍ର ଠିକ୍ ଘଡିସନ୍ଧି ମୁହୂର୍ତ୍ତର ତାଙ୍କର ପ୍ରତିକ୍ରିୟା କୌଣସି ସାଧାରଣ ମଣିଷଠାରୁ ଭିନ୍ନ ନୁହେଁ । ରାମଙ୍କ ଚରିତ୍ରରେ ଏ ମାନବିକ ଦୁର୍ବଳତା, ତାଙ୍କର ଅବତାରତ୍ୱ ଓ ଅଲୌକିକ ପ୍ରତିଭାର ଆଲୋଚନା ସମୟରେ ପ୍ରଣିଧାନ ଯୋଗ୍ୟ । ବାଳୀ ମୃତ୍ୟୁ ସମୟରେ ତାକୁ ଲୁଚିଛପି ମାରିବାର ଔଚିତ୍ୟ ନେଇ ଅନେକ ମାର୍ମିକ ପ୍ରଶ୍ନ ପଚାରିଛି । ରାମ ସେପରି ଅନୁଚିତ କର୍ମ ପାଇଁ ଅନୁତପ୍ତ ହେବା ତ ଦୂରର କଥା ବରଂ ନିଜକୁ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ କରିବା ପାଇଁ ଅନେକ ଦୁର୍ବଳ ଯୁକ୍ତି ଓ ବାହାନାର ଆଶ୍ରୟ ନେଇଛନ୍ତି । ବାଳୀ ସୁଗ୍ରୀବ ପରିଚ୍ଛେଦରେ ଏହାର ବିସ୍ତାରିତ ଆଲୋଚନା କରାଯାଇଛି । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ନିଜର ଲକ୍ଷ୍ୟ ହାସଲ ପାଇଁ ସମ୍ପୂର୍ଣ୍ଣ ଉଚିତ୍ ପନ୍ଥାର ଆଶ୍ରୟ ନନେଇ ସମୟର ଆବଶ୍ୟକତା ଦୃଷ୍ଟିରୁ ଟିକିଏ ବଙ୍କା ରାସ୍ତା ବାଛି ନେଇଛନ୍ତି । ସାଧାରଣ ଦୃଷ୍ଟିରେ ଏହା ଏକ ଗର୍ହିତ ଅପରାଧ ହୋଇ ନପାରେ । ମାତ୍ର ରାମଙ୍କ ଅବତାରତ୍ୱ ପ୍ରଶ୍ନର

ବିଚାର ସମୟରେ ଲକ୍ଷ୍ୟ ହାସଲ ପାଇଁ ରାମଙ୍କର ଏହି ମାନବୀୟ ଦୁର୍ବଳତାଟିକୁ ବିଚାରକୁ ନେବା ଉଚିତ ହେବ ।

ଆସନ୍ତୁ, ଏହାପରେ ସେତୁବନ୍ଧ ଓ ରାବଣ ସହ ଯୁଦ୍ଧ ବିଷୟଟିକୁ ଆସିବା । ନୂଆକରି ସେତୁବନ୍ଧଟି, ନିର୍ମାଣ କରି ହେଉ ବା ଆଗରୁ ଥିବା ସେତୁବନ୍ଧଟିକୁ ଅଧିକାରକୁ ନେଇ ଓ ମରାମତି କରି ହେଉ, ରାମ ଯେ ବିରାଟ ସେନା ସହ ଲଙ୍କାରେ ପହଞ୍ଚି ପାରିଛନ୍ତି, ସେଥିରୁ ସେ ଯେ ଜଣେ ସଫଳ ସାମରିକ ପରିଚାଳକ, ତା'ର ପରିଚୟ ମିଳୁଛି । ବିଭୀଷଣ ଆସି ତାଙ୍କ ପାଖରେ ଶରଣ ପଶିବା ସମୟରେ ମଧ୍ୟ ସେ ସେହି କୂଟନୀତି, ସାମରିକ କୌଶଳ ତଥା ପ୍ରୟୋଗାତ୍ମକ ତୀକ୍ଷ୍ଣ ବୁଦ୍ଧିର ପରିଚୟ ଦେଇଛନ୍ତି । ବିଭୀଷଣକୁ ଶରଣ ଦେଇ, ସଖା ହିସାବରେ ଗ୍ରହଣ କରିବାରେ ତାଙ୍କର ଉଦାରତା ଅପେକ୍ଷା, ଶତ୍ରୁର ଭେଦ ଜାଣିବାର ଉଦ୍ଦେଶ୍ୟ ବରଂ ଅଧିକ ସୁସ୍ପଷ୍ଟ । ବିଭୀଷଣକୁ ହାତମୁଠାରେ ରଖିବା ପାଇଁ ସେ ତା' ଆଗରେ ସପ୍ନଟିଏ ଝୁଲାଇ ରଖିଛନ୍ତି । ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ମଧ୍ୟ ସେ ତାକୁ ଲଙ୍କାର ରାଜପଦରେ ଅଭିଷିକ୍ତ କରିଛନ୍ତି । ଏହା ନିଛକ କୂଟନୀତି ଓ ଘଟଣାକ୍ରମରେ ଆମେ ଦେଖିଛେ ଯେ ରାବଣକୁ ହରାଇବାରେ ବିଭୀଷଣର ସାହାଯ୍ୟ ତାଙ୍କ ପାଇଁ ଅପରିହାର୍ଯ୍ୟ ହୋଇଛି ।

ଏ ସମଗ୍ର ଘଟଣା ପ୍ରବାହରୁ ଆମେ ଦେଖିପାରିବା ଯେ ଏ କ୍ଷେତ୍ରରେ ରାମ ଲକ୍ଷ୍ୟ ହାସଲ ପାଇଁ ସେ ସମୟର ଅନୁସୃତ ସ୍ୱୀକୃତ ନୀତି ନିୟମ, କୂଟ କପଟ, କୌଶଳ, ଭେଦ ନୀତିର ସାହାଯ୍ୟ ନେଇଛନ୍ତି ଓ ଲକ୍ଷ୍ୟ ହାସଲ କରିଛନ୍ତି । ତାଙ୍କର ଅସ୍ତ୍ରଶସ୍ତ୍ର ଜ୍ଞାନ ଯାହା ସେ ବଶିଷ୍ଠଙ୍କ ଠାରୁ ତଥା ବିଶେଷ ରୂପେ ବିଶ୍ୱାମିତ୍ରଙ୍କଠାରୁ ଶିକ୍ଷା କରିଥିଲେ ଓ ପାଇଥିଲେ ତା'ର ଉଚିତ୍ ଓ ସଫଳ ପରୀକ୍ଷା ଏ ଯୁଦ୍ଧରେ କରିଛନ୍ତି ଓ ସୁଫଳ ମଧ୍ୟ ପାଇଛନ୍ତି । ସେ ଜଣେ ସଫଳ, ସମର୍ଥ ଯୋଦ୍ଧା, ବୀର ପୁରୁଷ ତଥା ସାମରିକ ଗୋଟି ଚାଳନାରେ ନିପୁଣ ଜଣେ ସେନାପତି ମଧ୍ୟ । ଆମର କହିବାର କଥା ଯେ ଏ ସବୁର ପରିଚୟ ରାବଣ ସହିତ ଯୁଦ୍ଧ ଓ ତହିଁରେ ବିଜୟରୁ ଆମକୁ ମିଳୁଛି । ଏତକକୁ ବିଚାରକୁ ନେଇ ଆମେ ତାଙ୍କୁ ଅବତାର ବୋଲି ଗ୍ରହଣ କରିବା କି ନାହିଁ ତାହା ବିଚାର ଆଲୋଚନାର ଅପେକ୍ଷା ରଖୁଛି ।

ଯୁଦ୍ଧ ଶେଷ ହେଲା । ବିଭୀଷଣ ଲଙ୍କାରେ ପ୍ରବେଶ କରିବା ପରେ ତାଙ୍କର ପ୍ରଥମ କାମ ହେଲା, ସୀତାଙ୍କୁ ଉଚିତ ସମ୍ମାନର ସହ ଆଣି ରାମଙ୍କ ସହ ଭେଟ କରାଇବା ଓ ସମର୍ପି ଦେବା । ସେ ତାଙ୍କର କାମ କରିଛନ୍ତି । ମାତ୍ର ସୀତାଙ୍କୁ ଦେଖିବା ପରେ ରାମଙ୍କ ପ୍ରତିକ୍ରିୟା ପ୍ରଣିଧାନ ଯୋଗ୍ୟ ।

ସାମନାରେ ରାମଙ୍କୁ ଦେଖି ସୀତାଙ୍କ ଆଖିରୁ ଅବିରଳ ଲୋତକ ଧାର ଛୁଟିଛି । ସୀତାଙ୍କୁ ରାମ ଏତେ ଦିନ ପରେ ଦେଖି ତାଙ୍କ ଆଖିରୁ ଲୁହ ପୋଛି ଆଶ୍ୱାସନା ଦେବେ, ଏଇଆ ହୁଏତ ସମସ୍ତେ ସେଠାରେ ଆଶା କରୁଥିବେ । ମାତ୍ର ତାହା ହୋଇ ନାହିଁ । ରାମ

କୌଣସି ପ୍ରକାର ଭାବପ୍ରବଣତା ପ୍ରକାଶ ନକରି ମନର କଥା ପ୍ରକାଶ କରି କହୁଛନ୍ତି 'ରାବଣ ମୋର ଅନୁପସ୍ଥିତିର ସୁଯୋଗ ନେଇ ଯେଉଁ ଗର୍ହିତ ଅପରାଧ କରିଥିଲା ତାହା ଥିଲା ମୋର ପୁରୁଷାକାର ପ୍ରତି ଆହ୍ୱାନ । ମୁଁ ଶତ୍ରୁକୁ ନିପାତ କରି ପ୍ରତିଶୋଧ ନେଇଛି ଓ ମୋର କ୍ରୋଧ ଶାନ୍ତ ହୋଇଛି ।' କେବଳ ଏତିକି କହି ରାମ ସନ୍ତୁଷ୍ଟ ହୋଇ ନାହାନ୍ତି । ଏତକ ପରେ ରାମ ସୀତାଙ୍କୁ ନିଜ ଶିବିରକୁ ନେଇ ଦୁଇପଦ ଆଶ୍ୱାସନାର ବାଣୀ ଶୁଣାଇଥିଲେ ହୁଏତ ତାହା ସୀତାଙ୍କର ଆକୁଳ ପ୍ରତୀକ୍ଷାଜନିତ ଦୁଃଖ ଦୂର କରିପାରି ଥାଆନ୍ତା । ସେଇ କ୍ଷଣରେ ସୀତାଙ୍କ ମନ କ'ଣ ଚାହୁଁ ନଥିବ ଯେ ପତିଙ୍କ ସହ କେତୋଟି ନିରୋଳା ମୁହୂର୍ତ୍ତ ପାଇବା ପାଇଁ? ଏପରି ଚାହିଁବା କ'ଣ ସ୍ୱାଭାବିକ ନୁହେଁ । ମାତ୍ର ରାମ ସୀତାଙ୍କୁ ସେ ସୁଯୋଗ ଦେଇ ନାହାନ୍ତି । କଣ୍ଠରେ କୌଣସି ପ୍ରକାର ଭାବପ୍ରବଣତା ବା ପତ୍ନୀ ସହିତ ମଧୁର ସମ୍ପର୍କ ଜନିତ ସ୍ୱାଭାବିକ କୋମଳତାର ଛିଟା ନରଖି ସେ କହୁଛନ୍ତି 'ସୀତା ତୁମେ ଜାଣି ରଖିବା ଉଚିତ୍ ତୁମ ପାଇଁ ମୁଁ ଏହି ସଂଗ୍ରାମ, ଏ ବିରାଟ ଆୟୋଜନ, ଏ ପରିଶ୍ରମ କରିନାହିଁ । ମିତ୍ରମାନଙ୍କ ସାହାଯ୍ୟରେ କଠିନ ପ୍ରଚେଷ୍ଟା କରି ଯେଉଁ ବିପଦରୁ ମୁଁ ଆଜି ଉତ୍ତୀର୍ଣ୍ଣ ହୋଇଛି ତାହା କେବଳ ତୁମକୁ ରାବଣ କବଳରୁ ଉଦ୍ଧାର କରିବାକୁ ନୁହେଁ । ମୋର ଏ ପ୍ରଚେଷ୍ଟା ପଛରେ ମୁଖ୍ୟତଃ ରହିଛି ଇକ୍ଷ୍ୱାକୁ ବଂଶର ମର୍ଯ୍ୟାଦା ରକ୍ଷା । ଯଦି ରାବଣଠାରୁ ମୁଁ ପ୍ରତିଶୋଧ ନେଇ ପାରି ନଥାନ୍ତି ଏହା ହୋଇଥାନ୍ତା ମୋର ପୌରୁଷ, ମୋର ବ୍ୟକ୍ତିତ୍ୱ ଓ ମୋର ସାମର୍ଥ୍ୟ ପ୍ରତି ଏକ ପ୍ରଶ୍ନବାଚୀ ଏବଂ ଯୁଗ ଯୁଗକୁ ଇକ୍ଷ୍ୱାକୁ ବଂଶ, ପରମ୍ପରାରେ କଳଙ୍କର ଅଲିଭା ଦାଗ ରହିଯାଇଥାଆନ୍ତା । ମୁଁ ସର୍ବଦା ମୋର ବଂଶର ମର୍ଯ୍ୟାଦା ତଥା ପରମ୍ପରାକୁ ସର୍ବୋଚ୍ଚ ଆସନ ଦେଇ ଆସିଛି । ତାହାକୁ ଭୂଲୁଣ୍ଠିତ ନକରାଇବା ଥିଲା ମୋର ପୌରୁଷ ପାଇଁ ଏକ ବିଶେଷ ଆହ୍ୱାନ । ମୁଁ ଖୁସୀ ଯେ ମୁଁ ବିଜୟୀ ହୋଇଛି, ରଘୁ ବଂଶର ଉଚ୍ଚ ପରମ୍ପରା, ଗୌରବ ବଜାୟ ରଖିଛି ।

'ଏହାଥିଲା ମୋର ଏ ଆୟୋଜନ ଓ ସଂଗ୍ରାମର ମୁଖ୍ୟ ଉଦ୍ଦେଶ୍ୟ । ତୁମକୁ ରାବଣ କବଳରୁ କେବଳ ଉଦ୍ଧାର ମୋର ମୁଖ୍ୟ ଉଦ୍ଦେଶ୍ୟ ନଥିଲା । ମୁଖ୍ୟ ଉଦ୍ଦେଶ୍ୟ ଥିଲା, ରାବଣର ମୋ ପୌରୁଷ ପ୍ରତି ଆହ୍ୱାନର ଉତ୍ତର । ତେଣୁ ବର୍ତ୍ତମାନ ରାବଣକୁ ସଂହାର କରି ମୁଁ ପ୍ରତିଶୋଧ ନେଇ ସାରିବା ପରେ ତୁମ ପାଖରେ ମୋର ପ୍ରୟୋଜନ ଶେଷ ହୋଇଛି । ତୁମେ ତୁମ ଇଚ୍ଛା ମୁତାବକ ଅନ୍ୟତ୍ର ଯାଇପାର । ତୁମେ ରାବଣ ଗୃହରେ ଏକ ବର୍ଷରୁ ଉର୍ଦ୍ଧ୍ୱ ରହିଛ, ରାବଣ ତୁମକୁ କାମାସକ୍ତ ଦୃଷ୍ଟିରେ ଦେଖି ଆସିଛି । ସର୍ବୋପରି ତୁମକୁ କୋଳାଗ୍ରତ କରି ସେ ଦଣ୍ଡକ ବନରୁ ଏ ପର୍ଯ୍ୟନ୍ତ ଆଣିଛି । ତୁମର ଦିବ୍ୟ ସୁନ୍ଦର ରୂପ ଦିନ ପରେ ଦିନ ଦେଖି ଯେ ରାବଣ ଏତେ ଦିନ ଧୈର୍ଯ୍ୟ ଧରି ରହିଛି, ତାହା ବିଶ୍ୱାସ କରିବାକୁ କଷ୍ଟ ହେଉଛି ।'

ସୀତା ଏପରି କଟୁ ବାକ୍ୟ ରାମଙ୍କ ଠାରୁ ଶୁଣିବା ପରେ ତାଙ୍କର ମାନସିକ ଅବସ୍ଥା କ'ଣ ହୋଇଥିବ ତାହା କଳ୍ପନା କରିବା କଷ୍ଟକର ନୁହେଁ । ସୀତା ନିଜର ସନ୍ତୁଳନ ହରାଇବା ସତ୍ତ୍ୱେ ରାମଙ୍କ ଅଭିଯୋଗର ଉତ୍ତର ଦେଇଛନ୍ତି । ରାବଣ ଅପହରଣ କରିବା

ଏବଂ ଏତେଦିନ ଲଙ୍କାରେ ରଖିବା ବ୍ୟାପାରରେ ସେ ତାଙ୍କର ନିର୍ଦ୍ଦୋଷତା ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିଛନ୍ତି । ଆମର ମନେହୁଏ ସୀତାଙ୍କ ବର୍ଣ୍ଣନା ବଙ୍ଗ ରାମଙ୍କ ବିଚାରର ରକ୍ଷଣଶୀଳତା ଓ ପୁରୁଷ ସୁଲଭ ଅହଂକାର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରୁଛି । ଏହାପରେ ସେ ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରି ରାମଙ୍କୁ କ୍ଷମା ଯାଚନା ପାଇଁ ପ୍ରାର୍ଥନା କରି ବଞ୍ଚିବାକୁ ଚାହିଁ ନାହାନ୍ତି । ସେ ନିଜର ନିଷ୍ଠା ଓ ଆନ୍ତରୀକତା ପ୍ରତି ରାମଙ୍କର ସଂଶୟ ପରେ ନିଜର ସାଭିମାନକୁ ବଳି ଦେଇ ବଞ୍ଚି ରହିବା ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ବୋଲି ମନେ କରିଛନ୍ତି । ତାଙ୍କର କର୍ତ୍ତବ୍ୟ ସେ ସ୍ଥିର କରିନେଇଛନ୍ତି । ଏ କ୍ଷେତ୍ରରେ, ଏ ପରିସ୍ଥିତିରେ ଯାହା ମର୍ଯ୍ୟାଦାଜନକ ତାହାହିଁ ସେ କରିଛନ୍ତି । ଲକ୍ଷ୍ମଣଙ୍କୁ ଆଦେଶ ଦେଇ ଅଗ୍ନି ପ୍ରସ୍ତୁତ କରି ସେଥିରେ ଝାସ ଦେଇଛନ୍ତି । ମାତ୍ର ତାଙ୍କର ସମ୍ପୂର୍ଣ୍ଣ ନର୍ଦ୍ଦୋଷ, ନିଷ୍କଳଙ୍କ ଚରିତ୍ର ଓ ନିଷ୍ଠା ହେତୁ ଅଗ୍ନି ମଧ ତାଙ୍କୁ ସ୍ପର୍ଶ କରିନାହିଁ । ସେ ଶୁଦ୍ଧ ସୁବର୍ଣ୍ଣ ପରି ଅଗ୍ନିରୁ ଅକ୍ଷତ ବାହାରି ଆସିଛନ୍ତି । ମାତ୍ର ଏହା ଆମର ପ୍ରସଙ୍ଗ ନୁହେଁ । ଆମର ପ୍ରସଙ୍ଗ ହେଉଛି ରାମଙ୍କ କାର୍ଯ୍ୟର ଔଚିତ୍ୟ । ରାମଙ୍କ ଦୋଷାରୋପର ଉତ୍ତରରେ ନତମୁଖୀ ସୀତାଙ୍କର ଉତ୍ତର ଆମେ ଆଲୋଚନା କରିବା ।

ସୀତା ଉତ୍ତରରେ କହିଛନ୍ତି, 'ପ୍ରଭୁ ମୁଁ ଏ ପ୍ରକାର କଟୁ, ହୃଦୟହୀନ ଭାଷା ଆପଣଙ୍କଠାରୁ ଆଶା କରି ନଥିଲି । ଏ ସମସ୍ତ ଘଟଣା, ଦୁର୍ଘଟଣାରେ ମୋର କୌଣସି ଭୂମିକା ନାହିଁ । ମୋତେ ରାବଣ ବଳପୂର୍ବକ ଅପହରଣ କରି ନେଇଛି । ମୁଁ ସଇଚ୍ଛାରେ ଯାଇନାହିଁ । ଅପହରଣ ସମୟରେ ସେ ମୋର ଅଙ୍ଗ ସ୍ପର୍ଶ କରିଛି । ମାତ୍ର ତାହା ମୋର ଅସହାୟତା, ବିବଶତା କାରଣରୁ । ତେଣୁ ରାବଣ ମୋର ଗାତ୍ର ସ୍ପର୍ଶ କରିଥିବା ହେତୁ ଯେଉଁ କଳଙ୍କ ମୋତେ ଦେଉଛନ୍ତି, ତାହା କଦାଚିତ୍ ମୋର ପ୍ରାପ୍ୟ ନୁହେଁ । ମୋର ମନ ମୋର ଅଧୀନ । ତାହା କସ୍ମିନ କାଳେ ଆପଣଙ୍କ ବ୍ୟତୀତ ଅନ୍ୟ କାହାରି ଚିନ୍ତାକୁ ସ୍ଥାନ ଦେଇନାହିଁ । ମୋ ମନ ସଦା ସର୍ବଦା ଆପଣଙ୍କ ଚରଣ କମଳରେ ସମର୍ପିତ ଥିଲା ଏବଂ ରହିଛି ମଧ । ମାତ୍ର ମୁଁ ଅବଳା, ସେହି କାରଣରୁ ମୋର ଶରୀରକୁ ଅନ୍ୟର ସ୍ପର୍ଶରୁ ରକ୍ଷା କରିବା ମୋର ଶକ୍ତିର ବାହାରେ । ଏହି ଅନୁଚିତ କର୍ମ ରାବଣର, ଯେଉଁଥିପାଇଁ ଆପଣ ତାଙ୍କୁ ଦଣ୍ଡ ଦେଇଛନ୍ତି । ମାତ୍ର ତା'ର ଅନୁଚିତ୍ କର୍ମ ପାଇଁ ମୋ ଉପରେ ଦୋଷାରୋପ ଅନ୍ୟାୟ ।'

ଏହି ଘଟଣାକୁ ଆଲୋଚନା କଲେ ଆମେ ରାମଙ୍କ ଚରିତ୍ରର ଗୋଟିଏ ପ୍ରାଞ୍ଜଳ ଚିତ୍ର ପାଇପାରିବା ।

ରାମ ଅହଲ୍ୟାଙ୍କୁ ଉଦ୍ଧାର କରି ସମାଜର ମୁଖ୍ୟ ସ୍ରୋତରେ ସାମିଲ କରିବା ସମୟରେ ଯେଉଁ ଉଦାରତା ଓ ମହାନୁଭବତା ପ୍ରଦର୍ଶନ କରିଛନ୍ତି, ଆପଣା ପତ୍ନୀ କ୍ଷେତ୍ରରେ ତାହା ଭୁଲି ଯାଇଛନ୍ତି । ଅହଲ୍ୟାଙ୍କ କ୍ଷେତ୍ରରେ ସେ ଜଣେ ଦୂରଦର୍ଶୀ, ସମାଜ ସଂସ୍କାରକର ପରିଚୟ ଦେଇଛନ୍ତି । ପ୍ରଚଳିତ ସାମାଜିକ ରକ୍ଷଣଶୀଳ ପରମ୍ପରା, ଭ୍ରମ ପୂର୍ଣ୍ଣ ସାମାଜିକ ସିଦ୍ଧାନ୍ତକୁ ଆଡେଇ ଦେବାର ସାହସ ଦେଖାଇଛନ୍ତି ଓ ସମାଜ ତାଙ୍କ ନିଷ୍ପତ୍ତିକୁ ଗ୍ରହଣ

କରିଯାଇଛି । ଏହି ଅହଲ୍ୟା ଉଦ୍ଧାର ତାଙ୍କୁ ଜନତା ମନରେ ଗୋଟାଏ ଉଚ୍ଚତର ଅସାଧାରଣ ବ୍ୟକ୍ତିତ୍ୱର ଆସନ ଦେଇଛି ।

ମାତ୍ର ସୀତାଙ୍କ କ୍ଷେତ୍ରରେ ସେ ପୂର୍ବର ଉଦାରତା ଭୁଲି ଯାଇ ବଂଶ ପରମ୍ପରା, ମର୍ଯ୍ୟାଦାର ଦ୍ୱାହି ଦେଇ ଯେଉଁ ପ୍ରକାର ପ୍ରତିକ୍ରିୟା ଦେଖାଇଛନ୍ତି ତାହା ତାଙ୍କୁ ଚରମ ରକ୍ଷଣଶୀଳ ଅହଂକାରୀ ପୁରୁଷ ଭାବେ ଦେଖିବାକୁ ଆମକୁ ବାଧ କରୁଛି । ତାଙ୍କ ପାଇଁ ବଂଶ ପରମ୍ପରା, କୁଳ ମର୍ଯ୍ୟାଦା, ପୂର୍ବ ପୁରୁଷଙ୍କ ସୁନାମ ଅଧିକ ଶ୍ରେୟ ହୋଇଛି, ପତ୍ନୀର ମର୍ଯ୍ୟାଦା, ତ୍ୟାଗ, ସ୍ୱାଭିମାନ ନୁହେଁ । ସେହି କ୍ଷତ୍ରୀୟ ଅହଂକାର ଏଠାରେ କାମ କରିଛି । ସୀତାଙ୍କୁ ନିରାପତ୍ତା ଦେବା ଦାୟିତ୍ୱ ତାଙ୍କର ଥିଲା ଏବଂ କାରଣ ଯାହା ବି ହେଉ ତାହା ସେ କରି ପାରିନାହାନ୍ତି । ଏଥିନେଇ କ୍ଷଣକ ପାଇଁ ମଧ୍ୟ ତାଙ୍କ ମନରେ କ୍ଷୋଭ ଆସିନାହିଁ । ଏ କ୍ଷେତ୍ରରେ ତାଙ୍କ ନିଜର ଦାୟିତ୍ୱ- ଯେ କିଛି ଥିଲା ସେ ତାହା କ୍ଷଣକ ପାଇଁ ସ୍ୱୀକାର କରି ନାହାନ୍ତି । ବରଂ ଏ ସବୁ ପାଇଁ ସତେ ଯେପରି ସୀତା ହିଁ କେବଳ ଦାୟୀ । ସେହି ବିଚାରରେ ସର୍ବଜନ ସମ୍ମୁଖରେ ସେ ସୀତାଙ୍କୁ ଭର୍ତ୍ସନା କରିଛନ୍ତି । ତାଙ୍କ ଚରିତ୍ର ପ୍ରତି ପ୍ରଶ୍ନବାଚୀ ଲଗାଇଛନ୍ତି । ତାଙ୍କୁ ତ୍ୟାଗ କରୁଛନ୍ତି ବୋଲି ସିଦ୍ଧାନ୍ତ ଶୁଣାଇଛନ୍ତି ।

ଜଣେ ଉଦାର, ସ୍ନେହଶୀଳ ପତି ହିସାବରେ ସେ ଥରକ ପାଇଁ ମଧ୍ୟ ମନେ ପକାଇନାହାନ୍ତି, ସୀତା ରାଜ ଉଆସ ଛାଡି କ'ଣ ପାଇଁ ଜଙ୍ଗଲର ଦୁଃଖ କଷ୍ଟ ଆଦରି ନେଇଛନ୍ତି । ନିଜର ପତ୍ନୀକୁ ନିରାପତ୍ତା ନଦେଇ ପାରିଥିବାର ଅପାରଗତା ସ୍ୱୀକାର ନକରି, ସୀତାଙ୍କୁ ଦାୟୀ କରିବା ଓ ସେ ଦୋଷରେ ତାଙ୍କୁ ଚରମ ଦଣ୍ଡ ଦେବା, ତାଙ୍କୁ ତ୍ୟାଗ କରିବାର ସିଦ୍ଧାନ୍ତକୁ କେବଳ କ୍ଷତ୍ରୀୟ ପୁରୁଷର ଅହଂକାର ବ୍ୟତୀତ ଆଉ କ'ଣ କୁହାଯାଇ ପାରିବ ।

ରାବଣ ସୀତାଙ୍କୁ ବଳପୂର୍ବକ ହରଣ କରିଛି । ସୀତା ସ୍ୱଇଚ୍ଛାରେ ଯାଇ ନାହାନ୍ତି । ଜଟାୟୁଠାରୁ ମଧ୍ୟ ସୀତାଙ୍କର ଅସହାୟତା ଓ ସେଦିନର କଥା ସେ ଶୁଣିଛନ୍ତି । ତା ସତ୍ୱେ ସୀତାଙ୍କ ଚରିତ୍ରର ସ୍ୱଚ୍ଛତା ଉପରେ ସନ୍ଦେହ ଆରୋପ କରିବା ଯେ ଅତ୍ୟନ୍ତ ଅବିଚାର ଓ ରୁଗ୍ଣ ମାନସିକତା ଏଥିରେ ସନ୍ଦେହ ନାହିଁ ।

ସୀତା ଅଗ୍ନିରେ ପ୍ରବେଶ କରିଛନ୍ତି ଓ ସେଥିରୁ ସେ ଅକ୍ଷତ ବାହାରି ଆସିଛନ୍ତି ତାହା ଅନ୍ୟ ଏକ ପ୍ରସଙ୍ଗ । ଆମର ଆଲୋଚ୍ୟ ହେଉଛି ରାମଙ୍କ ଚରିତ୍ରର ଏ ଜଟୀଳ ଦିଗ । ସୀତାଙ୍କ ପ୍ରତି ତାଙ୍କର ଦୋଷାରୋପ, କଟୁ ଭାଷା ପ୍ରୟୋଗ ଓ ତ୍ୟାଗ କରିବାର ସିଦ୍ଧାନ୍ତ କେବଳ ରାମଙ୍କର ଅପାରଗତା ଜନିତ ହୀନମନ୍ୟତା ପଦାରେ ପକାଉଛି । ତାଙ୍କର ଉଦାରତା, ମହନୀୟତା ଏଠାରେ ଖୋଜିଲେ ମଧ୍ୟ ମିଳୁନାହିଁ । ପୁରୁଷସୁଲଭ ଅହଂକାର ଓ ରକ୍ଷଣଶୀଳ ମନୋଭାବ ପଦାକୁ ଆସୁଛି । ସ୍ତ୍ରୀ ଗୋଟିଏ ପଦାର୍ଥ । ତା'ର ମନ/ଇଚ୍ଛା ବୋଲି କିଛି ନାହିଁ, ତା'ର ସ୍ୱାଭିମାନ ବୋଲି କିଛି ନାହିଁ । ସେ କେବଳ ଗୋଡର ପିନ୍ଧା ଜୋତା । ଏହି ପ୍ରକାର ରକ୍ଷଣଶୀଳ, କଠୋରପନ୍ଥୀ ଚିନ୍ତାଧାରା ଏଠାରେ ରାମଙ୍କ କାର୍ଯ୍ୟ ଦ୍ୱାରା ପୃଷ୍ଠପୋଷକତା ପାଉଛି । ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଅହଲ୍ୟାଙ୍କ

କ୍ଷେତ୍ରରେ ସମସାମୟିକ ଅପସଂସ୍କାର, ରକ୍ଷଣଶୀଳତାର ଊର୍ଦ୍ଧ୍ୱକୁ ଯାଇ ଯେଉଁ ଯୁଗାନ୍ତକାରୀ ଉଦାହରଣ ସୃଷ୍ଟି କରିଥିଲେ, ତାହା ଏଠାରେ, ସୀତାଙ୍କ କ୍ଷେତ୍ରରେ ମାଟିରେ ମିଶିଯାଇଛି ।

ସେ ଯାହାହେଉ, ଏ ସବୁ ଘଟଣା, ଦୁର୍ଘଟଣା ଓ କ୍ରିୟା, ପ୍ରତିକ୍ରିୟା ପରେ ଆମକୁ ରାମଙ୍କ ଚରିତ୍ରର ଗୋଟିଏ ମୋଟାମୋଟି ପ୍ରାଞ୍ଜଳ ଚିତ୍ର ମିଳୁଛି ।

ରାମ ପିଲାଦିନୁ ଜଣେ ଉତ୍ତମ ପୁତ୍ର, ଉତ୍ତମ ଛାତ୍ରର ପରିଚୟ ଦେଇଛନ୍ତି । ସେ ନମ୍ର, ଭଦ୍ର; ବଂଶ ପରମ୍ପରା ପ୍ରତି ସର୍ବଦା ସଜାଗ । ତାଙ୍କର ଗୁରୁ, ବ୍ରାହ୍ମଣ, ଜ୍ୟେଷ୍ଠମାନଙ୍କ ପ୍ରତି ସର୍ବଦା ଭକ୍ତି ଓ ସମ୍ମାନ ରହିଛି । ସେ ଆଜ୍ଞାବହ । କନିଷ୍ଠମାନଙ୍କ ପ୍ରତି ସର୍ବଦା ସ୍ନେହଶୀଳ । ସେ ଦୟାଳୁ, ଦାନଶୀଳ, ମିଷ୍ଟଭାଷୀ, ସମ୍ବେଦନଶୀଳ । ଜଣେ ଉତ୍ତମ ବ୍ୟକ୍ତି ହେବା ପାଇଁ ଯେଉଁ ସବୁ ସୁଗୁଣର ଆବଶ୍ୟକତା ସେ ସମସ୍ତ ତାଙ୍କ ପାଖରେ ଭରପୂର ରହିଛି । ସେ ଅସ୍ତ୍ରଶସ୍ତ୍ରରେ ଧୁରନ୍ଧର । ସେ ସତ୍ୟନିଷ୍ଠ । ତେଣୁ ସାଧାରଣ ଜନତା, ପ୍ରଜା ସମୂହ ତାଙ୍କୁ ଜଣେ ଆଦର୍ଶ ପୁରୁଷ ରୂପେ ଗ୍ରହଣ କରିଛନ୍ତି ।

ରାମଙ୍କୁ ଜଣେ ଆଦର୍ଶ ଶାସକ ବୋଲି ମଧ୍ୟ କୁହାଯାଇପାରେ ଯଦିଓ ତାଙ୍କ ଶାସନ ନୈପୁଣ୍ୟର ବର୍ଣ୍ଣନା ପାଇଁ ରାମାୟଣରେ ଯଥେଷ୍ଟ ସୁଯୋଗ ଆସିନାହିଁ । ମାତ୍ର ତାଙ୍କର ସମସ୍ତ ସୁଗୁଣକୁ ଆଧାର କରି ଏହି ଉପସଂହାରରେ ଉପନୀତ ହେବାରେ କୌଣସି ତ୍ରୁଟି ହେବାର ଆଶଙ୍କା ନାହିଁ ।

ବିଶ୍ୱାମିତ୍ରଙ୍କ ସହ ଯଜ୍ଞ ରକ୍ଷା କରିବା ପାଇଁ ଯିବା ପାଇଁ ବାହାରିବାଠାରୁ ହେଉ ବା ପର୍ଶୁରାମ ବିବାଦ, ବାଳୀ ସହିତ ଯୁଦ୍ଧ ଏବଂ ଶେଷରେ ଲଙ୍କା ବିଜୟ ଏ ସମସ୍ତ ବ୍ୟାପାରରେ ସେ ସର୍ବଦା ନିଜର ବଂଶ ମର୍ଯ୍ୟାଦା ରକ୍ଷା କରିବାକୁ ସଚେତନ । ଇକ୍ଷ୍ୱାକୁ ବଂଶର ସୁନାମରେ କଳଙ୍କ ନଲାଗୁ ଏଥିପାଇଁ ଯେ କୌଣସି ମୂଲ୍ୟ ଦେବାକୁ ସେ ପ୍ରସ୍ତୁତ । ଏ କ୍ଷେତ୍ରରେ ଗୋଟିଏ ପ୍ରାଚୀନ, କୁଳୀନ ପ୍ରତିଷ୍ଠିତ ରାଜବଂଶର ଉପଯୁକ୍ତ ଦାୟଦ ହିସାବରେ ସେ ସମସ୍ତ ସମ୍ମାନର ଅଧିକାରୀ ।

କେବଳ ବଂଶ ପରମ୍ପରା ନୁହେଁ, ସମସ୍ତ ଆର୍ଯ୍ୟାବର୍ତ୍ତ ପାଇଁ ମଧ୍ୟ ସେ ଚିନ୍ତା କରିଛନ୍ତି ଓ ଆର୍ଯ୍ୟ ଧର୍ମର ରକ୍ଷା ଓ ପ୍ରସାର ପାଇଁ ବାରମ୍ବାର ଦଣ୍ଡକ ବଣରେ ଆଦିମ ଜାତି, ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିଛନ୍ତି । ଆର୍ଯ୍ୟ ଧର୍ମର ପ୍ରଚାର, ପ୍ରସାର ଓ ପୁଷ୍ଟି ଯେଉଁ ମହର୍ଷିମାନଙ୍କ ଉପରେ ନିର୍ଭରଶୀଳ, ସେମାନଙ୍କର ନିରାପତ୍ତାର ଦାୟୀତ୍ୱ ସେ ନିଜ କାନ୍ଧକୁ ନେଇଛନ୍ତି । ବ୍ୟକ୍ତିଗତ ବଂଶ ମର୍ଯ୍ୟାଦା ରକ୍ଷା ପାଇଁ ଯେପରି ସଚେତନ, ସାମାଜିକ ଦାୟୀତ୍ୱ ତୁଲାଇବାକୁ ମଧ୍ୟ ତତୋଧିକ ଯତ୍ନଶୀଳ ।

ସେ ସଂଯମୀ, ଉଦାର ଓ ସ୍ନେହଶୀଳ । ଭରତଙ୍କ ଆଗମନକୁ ସେ ଲକ୍ଷ୍ମଣଙ୍କ ପରି ସନ୍ଦେହ କରି ନାହାନ୍ତି । ବରଂ ଭରତଙ୍କୁ ବିଶ୍ୱାସକୁ ନେଇଛନ୍ତି । ସେ ସତ୍ୟନିଷ୍ଠ, ଧର୍ମାତ୍ମା, ନିଃସାର୍ଥପର, କର୍ତ୍ତବ୍ୟପରାୟଣ । ରାଜଗାଦୀରେ ବସିବାକୁ ସମସ୍ତ ପ୍ରସ୍ତୁତିର ପର ମୁହୂର୍ତ୍ତରେ

ପିତୃସତ୍ୟ ପାଳି ବନବାସକୁ ଯିବା ବେଳେ ମଧ ତାଙ୍କର କୌଣସି ପ୍ରତିକ୍ରିୟା ଘଟି ନାହିଁ। ସେ ଧୀର ସ୍ଥିର ଭାବେ, ସମସ୍ତଙ୍କୁ ବୁଝାଇ, ଅନୁମତି ନେଇ ପିତୃ ସତ୍ୟ ପାଳନ ପାଇଁ ଅଯୋଧା ଛାଡିଛନ୍ତି।

ଦଶରଥଙ୍କ କାର୍ଯ୍ୟ ଅନୁଚିତ୍, ଶାସ୍ତ୍ରାନୁମୋଦିତ ନୁହେଁ। କୁଳଗୁରୁ ବଶିଷ୍ଠ ଓ ମାତା କୌଶଲ୍ୟାଙ୍କ ଆପତ୍ତି ସତ୍ୱେ ମଧ ରାମ ବନବାସ ନିଷ୍ପତ୍ତିରୁ କ୍ଷାନ୍ତ ହୋଇ ନାହାନ୍ତି। ଲକ୍ଷ୍ମଣ ଦଶରଥଙ୍କ ପ୍ରତି କଟୁ ବାକ୍ୟ ପ୍ରୟୋଗ କରିବା ସେ ପସନ୍ଦ କରି ନାହାନ୍ତି। ଏଠାରେ ସେ ଗୁରୁ, ମାତା ଓ ଅନ୍ୟାନ୍ୟ ଗୁରୁଜନଙ୍କ ପରାମର୍ଶକୁ ମାନି ନାହାନ୍ତି। ତାଙ୍କ ପାଇଁ ପିତୃସତ୍ୟ, ତାହା ଭୁଲ ହେଉ ବା ଠିକ୍ ହେଉ, ପାଳନ ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ। ବିନା ପ୍ରତିବାଦରେ ହସି ହସି ସେ ସମସ୍ତଙ୍କଠାରୁ, ଏପରିକି କୈକେୟୀଙ୍କ ଠାରୁ ବିଦାୟ ନେଇ ଅଯୋଧା ଛାଡିଛନ୍ତି। ଏ ସନ୍ଧିକ୍ଷଣରେ ସେ ମନରେ କୌଣସି ଦ୍ୱେଷ ରଖି ନାହାନ୍ତି।

ଏଗୁଡିକ ତାଙ୍କ ଚରିତ୍ରର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ।

ବର୍ତ୍ତମାନ ଆମେ ଆମର ମୂଳ ପ୍ରଶ୍ନକୁ ଆସିବା। ତା ହେଉଛି ରାମଙ୍କ ଅବତାର ପ୍ରଶ୍ନ। ଆମେ ଏ ପର୍ଯ୍ୟନ୍ତ ରାମଙ୍କ ଜୀବନରେ ଘଟି ଥିବା ପ୍ରମୁଖ ଘଟଣାବଳୀର ଆଲୋଚନା କରି ତାଙ୍କର ଚରିତ୍ର, ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ପ୍ରାଞ୍ଜଳ ଚିତ୍ର ପାଇଲେ। ମାତ୍ର ଜଣେ ଅବତାର ପୁରୁଷ ରୂପେ ଗ୍ରହଣୀୟ ହେବା ପାଇଁ, ଏ ସବୁ ସୁଗୁଣ ଯଥେଷ୍ଟ କି? ଜଣେ ଅବତାର ପୁରୁଷ ପାଖରେ କେଉଁ କେଉଁ ଗୁଣ, ଧର୍ମ ରହିବା ଦରକାର? ଆମ ପାଖରେ ଗୀତାର ବାଣୀ ଏଥିପାଇଁ ସ୍ପଷ୍ଟ କରି ଦେଇଛି -- ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ। ଅଭ୍ୟୁତ୍‌ଥାନମ୍ ଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହମ୍। ପରିତ୍ରାଣାୟ ସାଧୁନାଂ, ବିନାଶାୟ ଚ ଦୁଷ୍କୃତଂ। ଧର୍ମସଂସ୍ଥାପନାର୍ଥାୟ, ସମ୍ଭବାମି ଯୁଗେ ଯୁଗେ।

ଧର୍ମରେ ଯେତେବେଳେ ଗ୍ଲାନି ଆସେ, ଅବକ୍ଷୟ ଦେଖାଦିଏ, ସମାଜ ପଥ ଭ୍ରଷ୍ଟ ହୁଏ, ଭ୍ରଷ୍ଟାଚାର ଅନୀତି ସମାଜକୁ କବଳିତ କରେ, ସାଧୁମାନେ ପୀଡିତ ହୁଅନ୍ତି, ଦୁଷ୍ଟାତ୍ମାମାନେ ପ୍ରବଳ ହୁଅନ୍ତି, ସେତେବେଳେ ଦୁଷ୍ଟମାନଙ୍କୁ ବିନାଶ କରି ସାଧୁମାନଙ୍କୁ ରକ୍ଷା କରିବା ପାଇଁ ଅବତାର ଜନ୍ମ ନିଏ ଓ ସମାଜକୁ ଅବକ୍ଷୟରୁ ବଞ୍ଚାଏ।

ଏହି ମାପକାଠିରେ ରାମଙ୍କୁ ଆମେ ଅବତାର ପୁରୁଷ ରୂପେ ଗ୍ରହଣ କରିପାରିବା କି ନାହିଁ? ପାଠକ ମନେ ରଖନ୍ତୁ ତ୍ରେତା ଯୁଗରେ ଅବତାର ପୁରୁଷର ମାପକାଠି କ'ଣ ଥିଲା ତାହା ଆମକୁ ଜଣା ନାହିଁ। ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ବାଣୀକୁ ଆମେ ଗ୍ରହଣ କରି ଆଲୋଚନାରେ ଆଗଉଛୁ।

ବିଶ୍ୱାମିତ୍ରଙ୍କ ସହିତ ଯଜ୍ଞ ରକ୍ଷା କରିବାକୁ ଯିବାଠାରୁ ଆରମ୍ଭ କରି, ପର୍ଶୁରାମ ବିବାଦ, ବାଳୀ ବଧ, ବନବାସ, ଅନ୍ତିମରେ ଲଙ୍କା ବିଜୟର ଆଲୋଚନା କରି ରାମଙ୍କ ଚରିତ୍ର, ବ୍ୟକ୍ତିତ୍ୱର ଅନେକ ଉଜ୍ଜ୍ୱଳ ଦିଗର ପରିଚୟ ପାଇଛୁ। ତା' ସହିତ ମଧ ଅନେକ ମାନବୀୟ

ଦୋଷ ଦୁର୍ବଳତା ମଧ୍ୟ ତାଙ୍କ ବିଚାର ଓ ସିଦ୍ଧାନ୍ତରେ ଆମେ ଦେଖିଛୁ। ରାମଙ୍କ ଜୀବନର ଦୁଇଟି ମୁଖ୍ୟ ଘଟଣାରେ ତାଙ୍କର ସିଦ୍ଧାନ୍ତ ଆଲୋଚନା -- ଲଙ୍କା ବିଜୟ ପରେ ସୀତାଙ୍କ ପ୍ରତି ଆରୋପ ଓ ପରିତ୍ୟାଗ ବ୍ୟାପାର -- ଆମେ ବିଶଦଭାବେ ଆଲୋଚନା କରିଛୁ। ବର୍ତ୍ତମାନ ଦ୍ୱିତୀୟ ସିଦ୍ଧାନ୍ତ ପିତୃ ସତ୍ୟ ପାଳି ବନବାସ। ଏ ବନବାସ ବ୍ୟାପାର ତ କିଛିଟା ଆଲୋଚନା କଲେ ମାତ୍ର ଏହି ସିଦ୍ଧାନ୍ତ ପଛରେ ରାମଙ୍କର ଉଦ୍ଦେଶ୍ୟ କ'ଣ, ଏ ସିଦ୍ଧାନ୍ତର ଆଧାର କ'ଣ? ରାମ କେଉଁ ଆଦର୍ଶ ସମାଜ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ?

ଆମର ମନେହୁଏ ଏ କ୍ଷେତ୍ରରେ ସେ କେବଳ ବଂଶ ମର୍ଯ୍ୟାଦାକୁ ପ୍ରାଥମିକତା ଦେଇଛନ୍ତି ଏବଂ ତା ସହିତ ତାଙ୍କ ମନରେ ହୁଏତ ରହିଛି ବ୍ୟକ୍ତିଗତ ପ୍ରତିଷ୍ଠା। ସେ ମନେ କରିଥିବେ ଆଜି ନହେଲେ ମଧ୍ୟ ଆସନ୍ତା କାଲି କେହି ଏକଥା କହିପାରେ ଯେ ରାମ ପିତୃସତ୍ୟ ପାଳନରେ ତ୍ରୁଟୀ କଲେ। ଏହି ବ୍ୟକ୍ତିଗତ ଆରୋପ ତାଙ୍କ ନିଜ ମର୍ଯ୍ୟାଦାରେ ଆଞ୍ଚ ଆଣିବ। ଏହି ଚିନ୍ତା ଏହି ଭାବନା ତାଙ୍କ ମନକୁ ଭାରାକ୍ରାନ୍ତ କରିଥିବ। ସେ ନିର୍ଲୋଭ ଓ ନିଃସାର୍ଥପର ଏଥିରେ ସାମାନ୍ୟତମ ସନ୍ଦେହ ନାହିଁ। ମାତ୍ର ଲୋକାପବାଦରେ ସେ ବ୍ୟକ୍ତିଗତ ଭାବେ ଭାଗୀଦାର ହେବାକୁ ଚାହିଁ ନାହାନ୍ତି। ରାମଙ୍କର ଏହି ତ୍ୟାଗ, ସତ୍ୟନିଷ୍ଠତା ନିଜ ଚରିତ୍ରର ବଳିଷ୍ଠତା ପ୍ରମାଣ କରୁଛି। ମାତ୍ର ଏହି ପିତୃସତ୍ୟ ପାଳନ ନିଷ୍ପତ୍ତି (ମାତା କୌଶଲ୍ୟା ତଥା କୁଳଗୁରୁ ବଶିଷ୍ଠଙ୍କ ପରାମର୍ଶ ପରେ ମଧ୍ୟ) ନିଜର ବ୍ୟକ୍ତିଗତ ମର୍ଯ୍ୟାଦା, ସୁନାମ ପ୍ରତିଷ୍ଠା ପାଇଁ ନୁହେଁ କି? ମାତା କୌଶଲ୍ୟା ଓ କୁଳଗୁରୁ ବଶିଷ୍ଠ ରଘୁ ବଂଶର ମର୍ଯ୍ୟାଦାକୁ ଅଣଦେଖା କରି ରାମଙ୍କୁ ରାଜଗାଦୀ ସମ୍ଭାଳିବାକୁ ପରାମର୍ଶ କଦାପି ଦେଇ ନଥିବେ। ଶାସ୍ତ୍ରାନୁମୋଦିତ ପନ୍ଥାଟି ସେ ବତାଇଥିବେ। ତେବେ ରାମ କୁଳଗୁରୁଙ୍କର (ମାତା କୌଶଲ୍ୟାଙ୍କର ନହେଲା ନାହିଁ) ସୁଚିନ୍ତିତ, ଶାସ୍ତ୍ରନୁମୋଦିତ ପରାମର୍ଶ ଗ୍ରହଣ ନକରିବା ପଛରେ କାରଣ କ'ଣ? ରାମ ନିର୍ବୋଧ ନୁହନ୍ତି। ସେ ମନ ଭିତରେ ଭଲ ମନ୍ଦ ସବୁ ଦିଗରୁ ବିଚାର କରି, ନିଜର ସିଦ୍ଧାନ୍ତ (ପିତୃସତ୍ୟ ପାଳନ କରି ବନବାସ କରିବେ)ରେ ଦୃଢ଼ ରହିଛନ୍ତି ଓ ଜଣେ ଅବିଚଳିତ ବ୍ୟକ୍ତିତ୍ୱ ହିସାବରେ ବ୍ୟକ୍ତିଗତ ପ୍ରତିଷ୍ଠା ଅର୍ଜନ କରିଛନ୍ତି।

ବର୍ତ୍ତମାନ ବିଚାର କରିବାର କଥା ରାମଙ୍କର ଜୀବନର ଏହି ଦୁଇଟି ପ୍ରମୁଖ ଘଟଣାରେ ତାଙ୍କର ବିଚାର ଓ ସିଦ୍ଧାନ୍ତ ତାଙ୍କୁ କ'ଣ ପ୍ରାପ୍ତ କରାଇଛି। ସେ ଚାହିଁଥିବା ମୁତାବକ ବଂଶ ମର୍ଯ୍ୟାଦା ରକ୍ଷା ହୋଇଛି। ରଘୁବଂଶରେ କଳଙ୍କର ଦାଗ ଲାଗି ନାହିଁ। ତାଙ୍କ ନିଜକୁ ସେ ନିର୍ଦ୍ଦୋଷ ଓ ସତ୍ୟନିଷ୍ଠର ପ୍ରତିଷ୍ଠା ଦେଇ ପାରିଛନ୍ତି। ରାବଣକୁ ବଧ କରି ପ୍ରତିଶୋଧ ନେଇ କ୍ଷତ୍ରୀୟ ଧର୍ମ ପାଳନ କରିଛନ୍ତି।

ଏଗୁଡ଼ିକ ବାଦ୍ ଭବିଷ୍ୟତ ବଂଶଧରଙ୍କ ପାଇଁ ଏସବୁ ସିଦ୍ଧାନ୍ତ, ବିଚାର କେଉଁ ପ୍ରକାର ଆଦର୍ଶ ସ୍ଥାପନା କରୁଛି। ଏ ସିଦ୍ଧାନ୍ତ ଭବିଷ୍ୟତ ସମାଜ ପାଇଁ ଉଚିତ୍ ଦିଗ୍‌ଦର୍ଶନ ଦେଇ ପାରିବ କି? ରାମଙ୍କ ଅବତାରତ୍ୱ ବୁଝିବା ପାଇଁ, ଏସବୁର ବିଚାର ଆଲୋଚନା ଆବଶ୍ୟକ।

ଏ ଦୁଇଟି ପ୍ରମୁଖ ଘଟଣା ନେଇ ରାମଙ୍କ ସିଦ୍ଧାନ୍ତର ସାମାଜିକ ପ୍ରଭାବ ବିଚାରକୁ ଯିବା ପୂର୍ବରୁ ଆଉ ଗୋଟିଏ ପ୍ରସଙ୍ଗ ଏଠାରେ ପାଠକଙ୍କ ବିଚାର ପାଇଁ ଉପସ୍ଥାପନା କରୁଛୁ ।

ରାମ ବନବାସ ସମୟରେ ମୁନି ଋଷିମାନଙ୍କର ନିରାପତ୍ତା ଓ ସୁରକ୍ଷା ଦାୟୀତ୍ୱ ନିଜ ଉପରକୁ ନେଇଛନ୍ତି ଓ ଦଣ୍ଡକ ବଣକୁ ସେ ନିଷ୍କଣ୍ଟକ କରିବାକୁ ନିଷ୍ପତ୍ତି ନେଇଛନ୍ତି । ଆଗରୁ ଆମେ ଆଲୋଚନା କରିଛୁ ଯେ ମୁନିଋଷିମାନଙ୍କର ଘନ ଘୋର ଜଙ୍ଗଲ ମଧ୍ୟରେ ଆଶ୍ରମ ସ୍ଥାପନ ଏକ ନିକାଞ୍ଚନ ଘଟଣା ନୁହେଁ । ଆର୍ଯ୍ୟ ଧର୍ମ ଓ ସାମ୍ରାଜ୍ୟ ବିସ୍ତାର ପାଇଁ ଏ ସବୁଥିଲା ପ୍ରଥମ ପଦକ୍ଷେପ । ସେଠାକାର ଆଦିମ ଅଧିବାସୀ, ଜନଜାତିମାନଙ୍କ ସହିତ ଯେଉଁ ସାଂସ୍କୃତିକ ବିରୋଧ ଘଟିଛି ତାହା ସ୍ୱାଭାବିକ । ଆର୍ଯ୍ୟମାନଙ୍କର ଏହି ଅନୁପ୍ରବେଶ, ଆଜିକା ଯୁଗରେ ମିଶନାରୀମାନଙ୍କର ଆଦିବାସୀ ଅଞ୍ଚଳରେ କାର୍ଯ୍ୟକଳାପ ସହ ତୁଳନୀୟ । ସେମାନେ ଅସଭ୍ୟ, ଶିକ୍ଷାର ପ୍ରସାର ଘଟାଇ ସେମାନଙ୍କୁ ସଭ୍ୟତାର ମୁଖ୍ୟ ସ୍ରୋତରେ ସାମିଲ କରିବା ଭଳି ମହାନ୍ ଲକ୍ଷ୍ୟର ଦ୍ୱାହି ଦେଇ ଆଜି ମଧ୍ୟ ଆଫ୍ରିକା ଠାରୁ ଏସିଆ ପର୍ଯ୍ୟନ୍ତ ଅନେକ ଅଞ୍ଚଳରେ ଏହି ପ୍ରକାର ସାମ୍ରାଜ୍ୟ ବିସ୍ତାର ପ୍ରଚେଷ୍ଟା ଚାଲିଛି । ଏଥିରେ ନୂଆ କିଛି ନାହିଁ । ମାତ୍ର ଆର୍ଯ୍ୟମାନଙ୍କର ଏହି ଲକ୍ଷ୍ୟର ପୃଷ୍ଟପୋଷକତାକୁ ରାମ ତାଙ୍କର କ୍ଷତ୍ରୀୟ ଧର୍ମ ପାଳନର ମର୍ଯ୍ୟାଦା ଦେଇଛନ୍ତି । ସେହି ସମୟର ଆର୍ଯ୍ୟଧର୍ମର ମାପକାଠିରେ ଏହା ଦ୍ୱାରା ସେ ଧର୍ମ ସଂସ୍ଥାପନା ପରି ମହତ୍ କାମ କରୁଛନ୍ତି ବୋଲି ସେ ନିଜେ ବିଶ୍ୱାସ କରୁଛନ୍ତି ଓ ସମାଜ ମଧ୍ୟ ଏହା ଗ୍ରହଣ କରିଛି । ମାତ୍ର ଏ ବିଚାର ତତ୍କାଳୀନ ସମୟର ପରିସୀମା ଡେଇଁ ଭବିଷ୍ୟତ ସମାଜ ପାଇଁ ଏକ ଆଦର୍ଶ ଲକ୍ଷ୍ୟ ରୂପେ ଗ୍ରହଣୀୟ ହୋଇପାରିବ କି ? ଏ ପ୍ରକାର ବିଚାର ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ସଂଘର୍ଷ ସୃଷ୍ଟି କରିବ ନାହିଁ କି ? ଯାହା ଆଜି ଘଟୁଛି -- ମୋ ଧର୍ମ ମୋ ପାଇଁ ଶ୍ରେଷ୍ଠ । ମାତ୍ର ଅନ୍ୟ ଗୋଷ୍ଠୀକୁ ମୋ ଧର୍ମରେ ପ୍ରବର୍ତ୍ତିତ କରିବା ପାଇଁ ଶକ୍ତି ପ୍ରୟୋଗ ତଥା ସଭ୍ୟ ସୁଶିକ୍ଷିତ କରିବା ଆଳରେ ବିସ୍ତାର ମନୋବୃତ୍ତି ଭିତରେ ସର୍ବଦା ବିଦ୍ୱେଷ, ଅସହିଷ୍ଣୁତା ଓ ଅହଂକାରର ମଞ୍ଜି ଲୁଚି ରହୁଛି । ତେଣୁ ଏହି କର୍ମକୁ ଏକ ସାର୍ବଜନୀନ, ସର୍ବକାଳୀନ ଆଦର୍ଶ ରୂପେ ଗ୍ରହଣ କରିବା ଆମ ବିଚାରରେ ଭ୍ରମପୂର୍ଣ୍ଣ ସିଦ୍ଧାନ୍ତ ହେବ ।

ଆସନ୍ତୁ ଆମେ ଫେରିଯିବା ଆମର ପୂର୍ବ ଆଲୋଚନାକୁ । ରାମଙ୍କ ଜୀବନର ଦୁଇ ପ୍ରମୁଖ ଘଟଣା ନେଇ ରାମଙ୍କ ପ୍ରତିକ୍ରିୟା ଓ ସିଦ୍ଧାନ୍ତ । ସୀତାଙ୍କ ପ୍ରତି ରାମଙ୍କ ଅନ୍ୟାୟ ଆରୋପକୁ ଯଦି ଆମେ ଉଚିତ ବୋଲି ଗ୍ରହଣ କରିବା ତେବେ ଆମକୁ ସେଇ ଏକା ଜିନିଷ ବିଚାର କରିବାକୁ ହେବ । ଭବିଷ୍ୟତ ସମାଜ, ଆଗାମୀ ଯୁଗ ଏଇ କାର୍ଯ୍ୟରୁ କି ପ୍ରକାର ପ୍ରେରଣା ପାଇବ ? ସେହିପରି ଅନୁଚିତ ଆଚରଣକୁ ପିତୃସତ୍ୟ ପାଳନ ଦ୍ୱାହିରେ ମାନି ସମାଜ ପାଇଁ ଆଗାମୀ ଯୁଗ ପାଇଁ କେଉଁ ଆଦର୍ଶ ରଖା ଯାଇ ପାରିବ ?

ଏହାର ଉତ୍ତର ପାଇଁ ଶାସ୍ତ୍ରରେ କିଛି ପ୍ରବଚନ, ବିଚାର, ସିଦ୍ଧାନ୍ତ ବା ଅନୁମୋଦନ ଅଛି କି ? ଏଥିପାଇଁ ଦ୍ୱାପର ଯୁଗକୁ ଆସନ୍ତୁ । ଶୁଣିବା ଶ୍ରୀକୃଷ୍ଣ ଏପରି ଏକ ସ୍ପର୍ଶକାତର

ବ୍ୟାପାରରେ କି ମତାମତ ଦେଇଛନ୍ତି । ସାମ୍ରାଜ୍ୟ ବଣ୍ଟାଆର ନେଇ ପାଣ୍ଡବ, କୌରବମାନଙ୍କ ମଧ୍ୟରେ ବିବାଦ ଆରମ୍ଭ ହୋଇଯାଇଛି । ଦ୍ୟୁତ କ୍ରୀଡାରେ ପରାସ୍ତ ହୋଇ ସର୍ତ୍ତ ଅନୁଯାୟୀ ବନବାସ ତଥା ଅଜ୍ଞାତବାସରୁ ଫେରିବା ପରେ ମଧ୍ୟ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ତାଙ୍କ ରାଜ୍ୟ ଫେରାଇବାକୁ ନାରାଜ । କୃଷ୍ଣ ଯୁଧିଷ୍ଠିରଙ୍କ ଅନୁରୋଧରେ ମଧ୍ୟସ୍ଥି ଭୂମିକା ଗ୍ରହଣ କରିଛନ୍ତି । ବିନା ଯୁଦ୍ଧରେ, ବିନା ରକ୍ତପାତରେ, ଆଲୋଚନା ମାଧ୍ୟମରେ ବିବାଦଟିର ସମାଧାନ ପାଇଁ ବାରମ୍ବାର କୌରବ ରାଜସଭାକୁ ସେ ଯାଇଛନ୍ତି । ଦୁର୍ଯ୍ୟୋଧନର ଅସହଯୋଗ ମନୋଭାବ ଜାଣି, ଯୁଧିଷ୍ଠିର କୌଣସି ପ୍ରକାରେ ଯୁଦ୍ଧ ଏଡାଇବା ଉଦ୍ଦେଶ୍ୟରେ ଇନ୍ଦ୍ରପ୍ରସ୍ଥ ନହେଲେ ନାହିଁ, ପାଞ୍ଚ ଖଣ୍ଡ ପଡା ପାଇଲେ ସନ୍ତୁଷ୍ଟ ହୋଇ ରହିବେ ବୋଲି ନିଜର ମନୋଭାବ କୃଷ୍ଣଙ୍କୁ ଜଣାଇଛନ୍ତି । ଦୁର୍ଯ୍ୟୋଧନ ଏହାର ଉତ୍ତରରେ କ'ଣ କହିଛି ଓ ଶେଷରେ କେଉଁ ପରିସ୍ଥିତିରେ ଯୁଦ୍ଧ ହୋଇଛି, ତାହା ଆମର ଆଲୋଚ୍ୟ ନୁହେଁ ।

ଯୁଧିଷ୍ଠିରଙ୍କ ଆପଣାର ନିଜ ଉତ୍ତରାଧୀକାର, ପିତୃପୁରୁଷଙ୍କଠାରୁ ପ୍ରାପ୍ତ ଅଧିକାରକୁ ତ୍ୟାଗ କରିବା ନେଇ କୃଷ୍ଣଙ୍କ ପ୍ରତିକ୍ରିୟା ଆମର ଏଠାରେ ପ୍ରଣିଧାନ ଯୋଗ୍ୟ । କୃଷ୍ଣ ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଛନ୍ତି, "ଆପଣ ନ୍ୟାୟତଃ ସମଗ୍ର ହସ୍ତିନା ସାମ୍ରାଜ୍ୟର ଅଧିକାରୀ । ନିଜ ନିଜ ଭିତରେ ବିବାଦ ଏଡାଇବାକୁ ଯାଇ ଇନ୍ଦ୍ରପ୍ରସ୍ଥକୁ ନେଇ ସନ୍ତୁଷ୍ଟ ହେଲେ । ସେତକରୁ ମଧ୍ୟ ଆପଣଙ୍କଠାରୁ କେହି ଜଣେ, ହେଉ ପଛେ ସେ ଆପଣଙ୍କ ଭାଇ, ଅନ୍ୟାୟ ଭାବେ ଉଚ୍ଛେଦ କରିବାକୁ ବସିଛି ଏବଂ ବିବାଦ ଏଡାଇବାକୁ ସେତକ ମଧ୍ୟ ତ୍ୟାଗ କରିବାକୁ ଆପଣ ପ୍ରସ୍ତୁତ ହୋଇଗଲେଣି ଏବଂ ନିଜର ଅଧିକାର ସାବ୍ୟସ୍ତ ନକରି ପାଞ୍ଚ ଖଣ୍ଡ ପଡାରେ ସନ୍ତୁଷ୍ଟ ହେବାକୁ ବସିଲେଣି । ପରିବାର ଭିତରେ ବିବାଦ, ଯୁଦ୍ଧକୁ ଏଡାଇବା ଉଦ୍ଦେଶ୍ୟରେ ଆପଣଙ୍କର ଏ ତ୍ୟାଗ, ଏ ଉନ୍ନତ ଚିନ୍ତା ଆଗାମୀ କାଳରେ ଆପଣଙ୍କୁ ବ୍ୟକ୍ତିଗତ ଭାବେ ଏକ ମହତ୍ତର ଆସନ ଦେବ । ଆପଣଙ୍କ ନିଃସ୍ୱାର୍ଥପରତା, ସତ୍ୟନିଷ୍ଠତା, ଶାନ୍ତ, ସଂଯତ ସ୍ଥିର ମନୋଭାବ ସମାଜରେ ଆପଣଙ୍କୁ ପ୍ରଶଂସନୀୟ କରିବ ।

"ମାତ୍ର ଏହାର ଅପପ୍ରୟୋଗ ଦିଗଟି ଦେଖିଛନ୍ତି ? କେବେ ସମାଜ ଉପରେ ଏହାର ପ୍ରତିକ୍ରିୟାକୁ ବିଚାରକୁ ନେଇଛନ୍ତି ? କାଲି କେହି ଖଳ ପ୍ରକୃତିର ଭାଇ ନିଛକ ସ୍ୱାର୍ଥ ପାଇଁ ବାହୁବଳରେ, ଅର୍ଥ ବଳରେ ଯଦି ଆଇନକୁ ହାତକୁ ନିଏ ଏବଂ ଭାଇକୁ ତା'ର ନ୍ୟାଯ୍ୟ ଦାବୀରୁ ବଞ୍ଚିତ କରେ, ତେବେ ପୈତୃକ ସମ୍ପତ୍ତିରୁ ବଞ୍ଚିତ ଭାଇଟି ତା'ର ନ୍ୟାଯ୍ୟ ଅଧିକାର ସାବ୍ୟସ୍ତ କରିବାକୁ ଯିବା ବାଟରେ ଆପଣଙ୍କ ଉଦାହରଣ ତା ପାଇଁ ଗୋଟିଏ କଣ୍ଟା ହେବ ନାହିଁ କି ? କେହି କେହି ହୁଏତ ଆପଣଙ୍କ ତ୍ୟାଗର ଦୃଷ୍ଟାନ୍ତ ନେଇ ବଞ୍ଚିତ ଭାଇଟିକୁ ବିବାଦ ଭିତରକୁ ନଯିବାକୁ ପରାମର୍ଶ ଦେଇ ପାରନ୍ତି -- ଯୁଧିଷ୍ଠିର ପରି ଭାଇ, ଭାଇକୁ ଗୋଟାଏ ସାମ୍ରାଜ୍ୟ ଛାଡି ଦେଲା, ଆଉ ତୁ ଜମି କେତେ ମାଣ ପାଇଁ ମା' ପେଟର ଭାଇ ସହ ଲଢାଇ କରୁଛୁ ?

"ଯଦି ଏପରି ହୁଏ, ନା ଯଦି ନୁହେଁ, ସମୟ ବଦଳିବ ଏବଂ ଏପରି ଘଟିବ ହିଁ ଘଟିବ । ସେତେବେଳେ ଏହାର ସମାଧାନ କିପରି ହେବ ? ଯେଉଁ ତ୍ୟାଗର କଥା ଆପଣ କହୁଛନ୍ତି ବ୍ୟକ୍ତିଗତ ଭାବେ ତାହା ଏକ ଉଚ୍ଚ ମୂଲ୍ୟବୋଧ, ସନ୍ଦେହ ନାହିଁ । ମାତ୍ର ନିଜର ନ୍ୟାଯ୍ୟ ଦାବୀ, ଅଧିକାର ସାବ୍ୟସ୍ତ ନକରିବା, ଅନ୍ୟାୟ ଆଗରେ, ଅତ୍ୟାଚାରୀ ପାଖରେ ତ୍ୟାଗ ଆଉ ନିଃସାର୍ଥପରତା ଛଳରେ ମଥା ପୋତି ସହିଯିବା, ଆପଣଙ୍କୁ ଏକ ବୃହତ୍ତର ଦୋଷରେ ଦୋଷୀ କରାଇବା । ସେ ଦୋଷଟି ହେଉଛି ସାମାଜିକ ସ୍ଖଳନର ଦୋଷ । ସମାଜରେ ଅଧର୍ମ, ଅନ୍ୟାୟ ଆଉ ବିଶୃଙ୍ଖଳାକୁ ଆପଣଙ୍କ ତଥାକଥିତ ତ୍ୟାଗ, ସଂଯମ ପ୍ରୋତ୍ସାହନ ଦେବ ।"

ଏହାପରର ଘଟଣା ଆମର ଏଠାରେ ଆଲୋଚ୍ୟ ନୁହେଁ । ଏହି ମାପକାଠିରେ ଆମେ ରାମଙ୍କର ଦୁଇଟି ପ୍ରମୁଖ ସିଦ୍ଧାନ୍ତ (ସୀତାଙ୍କୁ ପରିତ୍ୟାଗ ଓ ଚଉଦ ବର୍ଷ ବନବାସ)କୁ ଆସନ୍ତୁ ପରଖିବା ।

ପିତୃସତ୍ୟ ପାଳନ ପାଇଁ ବନବାସ ସେହି ସମୟର, ତତ୍‌କାଳ ସାମାଜିକ ପରିସ୍ଥିତିରେ ଏକ ମହନୀୟ ଉଦାହରଣ ନିଶ୍ଚିତ ସୃଷ୍ଟି କରିଛି ଏବଂ ସମାଜ ରାମଙ୍କ ପ୍ରଶଂସାରେ ମୁଖରିତ । ମାତ୍ର ସମାଜରେ ଯେତେବେଳେ ସଂସ୍କୃତିର ଅବକ୍ଷୟ ଘଟିବ, ଅପସଂସ୍କାର ପ୍ରବେଶ କରିବ, ପିତା ପୁତ୍ରର ସମ୍ପର୍କରେ ଅବନ୍ନତି ଘଟିବ, ସେତେବେଳେ ରାମଙ୍କର ଏ ତ୍ୟାଗ ଅନ୍ୟାୟୀ ପିତାଟି ହାତରେ ଗୋଟାଏ ଅମୋଘ ଅସ୍ତ୍ର ଧରାଇ ଦେବ ନାହିଁ କି ? ନିଜ ସାର୍ଥ ପାଇଁ ବାପଟି ରାମଙ୍କ ପିତୃସତ୍ୟ ପାଳନର ଉଦାହରଣ ଦେଇ ପୁଅକୁ ଅନେକ ଅନ୍ୟାୟ ଆଚରଣ ପାଇଁ ବାଧ କରିବାକୁ ଶକ୍ତି ପାଇବ ନାହିଁ କି ? କାଲି ହୁଏତ କେଉଁ ସାର୍ଥପର ପିତା ପରିଣତ ବୟସରେ ଯୁବତୀ ପତ୍ନୀଟିଏ ପାଇଁ ନିଜର ଅନ୍ୟାନ୍ୟ ସନ୍ତାନମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିପାରେ ଏବଂ ଏଥିପାଇଁ ରାମଙ୍କର ତ୍ୟାଗର ଉଦାହରଣର ବାହାନା ଦେଇପାରେ ।

କାଲି ହୁଏତ ଆଉ କେଉଁ ପ୍ରୌଢ଼ ପିତା ଶାରୀରିକ ଅକ୍ଷମତା ସତ୍ତ୍ୱେ ଭୋଗର ଲାଳସା ରଖି ପୁତ୍ରଠାରୁ ଯୌବନଟି ଦାବୀ କରିପାରେ । କେବଳ ଏତିକି ନୁହେଁ ସମ୍ପର୍କର ସୀମା ସରହଦ ନମାନି ଅତ୍ୟନ୍ତ ଗର୍ହିତ ଅପରାଧରେ ଲିପ୍ତ ହେବାରେ ପିତୃତ୍ୱର ଜନ୍ମଗତ ଅଧିକାର ଓ ଦାବୀର ଦ୍ୱାହି ଦେଇପାରେ । ଏପରି ଘଟିବା ସମ୍ଭବ ଏବଂ ଘଟୁଛି ମଧ୍ୟ ଏବଂ ଏଥିପାଇଁ କେହି ଯଦି ରାମଙ୍କ ପରି ମର୍ଯ୍ୟାଦା ପୁରୁଷର ପିତୃସତ୍ୟ ପାଳନର ଦୃଷ୍ଟାନ୍ତ ଦିଏ, ତେବେ ସେ କ୍ଷେତ୍ରରେ ସମାଜର ଅବସ୍ଥା କ'ଣ ହେବ ?

ବୋଧହୁଏ ସେହି ଏକା ଦୋଷରେ ରାମଙ୍କ ସିଦ୍ଧାନ୍ତ ଦୋଷୀ ହେବ । ତା ହେଉଛି 'ସାମାଜିକ ସ୍ଖଳନ'ର ଦୋଷ । ସତ୍ କର୍ମ, ଯୁଗ ପରେ ଯୁଗ ବଞ୍ଚି ରହେ, ବାରମ୍ବାର ପରିକ୍ଷିତ ହେଉଥାଏ ଆଉ ସମାଜକୁ ଧ୍ରୁବତାରା ପରି ଯୁଗ ଯୁଗ ଧରି ଦିଗ୍‌ଦର୍ଶନ ଦେଉଥାଏ ।

ଏ ଗଲା ରାମଙ୍କ ପିତୃ ସତ୍ୟ ପାଳନ । ଆର ପ୍ରମୁଖ ଘଟଣାଟି ହେଉଛି, ଲଙ୍କା ବିଜୟ ପରେ ସୀତାଙ୍କ ଚରିତ୍ରକୁ ସନ୍ଦେହ କରି ତାଙ୍କୁ ପରିତ୍ୟାଗ । ଏ କାର୍ଯ୍ୟର ବିଶଦ୍

ଆଲୋଚନା ଆମେ କରିଛେ। ବର୍ତ୍ତମାନ କେବଳ ଦେଖନ୍ତୁ ଏ ପ୍ରକାର ପତ୍ନୀ ତ୍ୟାଗର ସିଦ୍ଧାନ୍ତ ଯାହା ରାମ ଅନ୍ୟାୟ ଭାବେ, ଅବିଚାରିତ ଭାବେ ନେଇଛନ୍ତି, ଯାହାର ଆଧାର ସାମାନ୍ୟ ଅପ୍ରମାଣିତ ସନ୍ଦେହ ଆଉ ଯେଉଁଥି ପାଇଁ ସୀତା ମୋଟେ ଦାୟୀ ନୁହନ୍ତି ତା'ର ପ୍ରଭାବ ସମାଜ ଉପରେ କିପରି ପଡିବ। ହୁଏତ ତତ୍‌କାଳୀନ ରକ୍ଷଣଶୀଳ ସମାଜ ବା କ୍ଷତ୍ରୀୟ ଅହଂକାର, ବଂଶ ମର୍ଯ୍ୟାଦା ବାହାନାରେ ଏହାକୁ ସେ ସମୟରେ ସମର୍ଥନ କରିଥିବ। ମାତ୍ର ରାମଙ୍କର ଏହି ବିଚାର ଏହି ସିଦ୍ଧାନ୍ତ ସମାଜ ପାଇଁ ସର୍ବକାଳୀନ ଆଦର୍ଶ ହୋଇପାରିବ କି? ଆଉ ଏହି ସିଦ୍ଧାନ୍ତ ଦ୍ୱାହି ଦେଇ ସମାଜ ତା'ର ଏକ ପ୍ରମୁଖ ଅତ୍ୟାବଶ୍ୟକ, ଅପରିହାର୍ଯ୍ୟ ଅଂଶକୁ ଅବହେଳିତ କରି ରଖିବ ନାହିଁ କି? ନାରୀ ଜାତିକୁ ଏକ ସମ୍ମାନନୀୟ ଆସନ ଦେବାରେ ଏହି ବିଚାର ବାଧା ସୃଷ୍ଟି କରିବ ନାହିଁ କି? ଏହି ବିଚାରର ଅପପ୍ରୟୋଗ କରି କିଛି ଖଳ, ଦୁଷ୍ଟ ବ୍ୟକ୍ତି ସମାଜରେ ବ୍ୟଭିଚାର, ବିଶୃଙ୍ଖଳା ସୃଷ୍ଟି କରିବାରେ ସଫଳ ହେବେ ନାହିଁ କି?

ବର୍ତ୍ତମାନ ରାମଙ୍କ ଅବତାରତ୍ୱ ପ୍ରଶ୍ନର ଉତ୍ତର ଖୋଜିବା ଏବଂ ସିଦ୍ଧାନ୍ତ ନେବା ଦାୟିତ୍ୱ ପାଠକଙ୍କର। ଆମ ବିଚାର ବୁଦ୍ଧିରେ ନିରପେକ୍ଷଭାବେ ଆମେ ରାମଙ୍କ ଜୀବନର ଅନେକ ଅନେକ ଘଟଣା ଆଲୋଚନା କରିଛୁ। ରାମ ଜଣେ ଅନନ୍ୟ, ଅସାଧାରଣ ବ୍ୟକ୍ତିତ୍ୱ। ସେ ଉତ୍ତମ ପୁରୁଷ। ସେ ଅନେକ ଦୁଷ୍ପ୍ରାପ୍ୟ ଗୁଣର ଅଧିକାରୀ। ସେ ମର୍ଯ୍ୟାଦା ପୁରୁଷ, ସେ ପୁରୁଷୋତ୍ତମ। ମାତ୍ର ସେ ଶ୍ରୀରାମ ଅବତାର ପୁରୁଷ କି ନାହିଁ, ତା'ର ସିଦ୍ଧାନ୍ତ ନିର୍ଭର କରୁଛି ବ୍ୟକ୍ତିଗତ ବିଶ୍ୱାସ ଓ ବିଚାର ଉପରେ। ଅବତାର ପୁରୁଷଟି କ'ଣ ତାହା ଆମେ ପ୍ରବନ୍ଧ ଆରମ୍ଭରୁ ହିଁ ସ୍ପଷ୍ଟ କରିଛୁ। ଅବତାର ପୁରୁଷ ସମୟର ସୃଷ୍ଟି। ସମାଜ ଯେତେବେଳେ ସଙ୍କଟର ସମ୍ମୁଖୀନ ହୁଏ, ଅପସଂସ୍କାର, ଅଧର୍ମ ବ୍ୟାପ୍ତ ହୁଏ, ଅନ୍ୟାୟ, ଅତ୍ୟାଚାର ପ୍ରବଳ ହୁଏ, ସେତେବେଳେ ଜଣ ଜଣଙ୍କର ଆବିର୍ଭାବ ହୁଏ, ସମାଜକୁ ଏ ସଙ୍କଟରୁ ରକ୍ଷା କରି ପୁଣି ଧର୍ମ ମାର୍ଗରେ ଚଳାଇ ନେବା ପାଇଁ। ଅଧର୍ମ, ଅନ୍ୟାୟ, ଅତ୍ୟାଚାର, ଅବିଚାର ଜନିତ ଆଚରଣ, ସମପରିମାଣରେ ଯେଉଁ ବିରୋଧ ଚେତନା ସୃଷ୍ଟି କରେ, ତାହା ରୂପ ଗ୍ରହଣ କରେ ଅବତାର ପୁରୁଷ ଭାବେ। ଆମ ବିଚାରରେ ସବୁ ଯୁଗରେ ସବୁ କାଳରେ, ଯେପର୍ଯ୍ୟନ୍ତ ଅନ୍ୟାୟ, ଅଧର୍ମ, ଅତ୍ୟାଚାର ରହିବ, ସେପର୍ଯ୍ୟନ୍ତ ଅବତାର ପୁରୁଷ ବାରମ୍ବାର, ଯୁଗ ପରେ ଯୁଗ ଜନ୍ମ ନେଇଥିବେ। ସେମାନେ ସାଧାରଣ ମନୁଷ୍ୟ ରୂପେ ହିଁ ଜନ୍ମ ନେବେ। ଆଉ ପାଞ୍ଚ ଜଣଙ୍କ ପରି ସମାଜରେ ଚଳପ୍ରଚଳ ହେବେ। ସେମାନେ କ୍ରମେ ଅନେକ ଦୁଷ୍ପ୍ରାପ୍ୟ, ଅନନ୍ୟ ବିଶେଷ ଗୁଣର ଅଧିକାରୀ ହେବେ ଓ ସମାଜରେ କ୍ରମେ ପ୍ରତିଷ୍ଠା, ସ୍ୱୀକୃତି ଲାଭ କରିବେ। ସାଧାରଣ ମନୁଷ୍ୟର ଜୀବନ ବିତାଇବା ଭିତରେ ସେମାନେ ସୁଖ ଦୁଃଖ କଷ୍ଟର ସମ୍ମୁଖୀନ ହେବେ ଏବଂ ତାଙ୍କର ପ୍ରତିକ୍ରିୟା ମଧ୍ୟ ମାନବୋଚିତ ହେବା କିଛି ଅସ୍ୱାଭାବିକ ନୁହେଁ। ସେମାନେ ଅନେକ ବିଶେଷ ଗୁଣର ଅଧିକାରୀ ଯେପରି ହେବେ, ସେପରି ମାନବସୁଲଭ ଦୋଷ ଦୁର୍ବଳତା କିଛିଟା ମଧ୍ୟ ରହିବ। ତାହା ସତ୍ତ୍ୱେ ସେମାନେ ବାରି ହୋଇ ପଡ଼ିବେ। ସମାଜକୁ ଧର୍ମ ସଙ୍କଟରୁ ରକ୍ଷା

କରିବେ । ତ୍ରେତୟାରେ ଯାହା ଘଟିଥିଲା, ଦ୍ୱାପରରେ ତାହାର ପୁନରାବୃତ୍ତି ହିଁ ଘଟିଛି । ଆମ ସମୟରେ ଘଟିଛି ଓ ଆମ ପରେ ମଧ୍ୟ ଘଟିବ । ଅବତାର ପୁରୁଷର ସଂଜ୍ଞା ଯଦି ଏଇଆ ହୁଏ, ତେବେ ରାମ ଯେ ଅବତାର ପୁରୁଷ ଏଥିରେ ଦ୍ୱିମତ ନାହିଁ ।

ମାତ୍ର ପ୍ରଭୁ ନାରାୟଣ ଶ୍ରୀରାମ ରୂପେ ଦଶରଥଙ୍କ ପୁତ୍ର ରୂପେ ଜନ୍ମ ଗ୍ରହଣ କରିବା, ତଥା ଅତୀତରେ କାହାକୁ ଉଦ୍ଧାର କରିବା ପାଇଁ ଦେଇଥିବା ବଚନ ତଥା ଅନେକ ଦେବ, ଗନ୍ଧର୍ବ, କିନ୍ନର ଇତ୍ୟାଦି ଶାପଗ୍ରସ୍ତଙ୍କୁ ମୁକ୍ତି ଦେବା ପାଇଁ ତାଙ୍କର ଆବିର୍ଭାବ ବ୍ୟାପାରରେ ଆମର କିଛି କହିବାର ନାହିଁ । ସେ ବିଚାର ପାଠକଙ୍କର । ଏହି ଦୃଷ୍ଟିକୋଣରୁ ସେ ଅବତାର କି ନାହିଁ ତାହା ଆମେ ସିଦ୍ଧାନ୍ତ ନେଇ ପାରିବୁ ନାହିଁ । ସେ ନିଷ୍ପତ୍ତି, ସେ ସିଦ୍ଧାନ୍ତ ପାଠକଙ୍କର । ମାତ୍ର ପାଠକଙ୍କର ଅବଗତି ନିମନ୍ତେ ଆମେ ଏଠାରେ ଦୁଇଟି ଆଳାପର ଉଲ୍ଲେଖ କରୁଛୁ ।

ଗୋଟିଏ ହେଉଛି ରାମାୟଣର ଆରମ୍ଭ ବେଳର ଆଉ ଅନ୍ୟଟି ହେଉଛି ଲଙ୍କା ବିଜୟ ପରେ ବ୍ରହ୍ମାଙ୍କ ସମେତ ଦେବତାମାନଙ୍କ ସହ ରାମଙ୍କ ଆଳାପ ।

ରାମାୟଣର ରଚୟିତା ବାଲ୍ମୀକି ରାମଙ୍କୁ ଜଣେ ମନୁଷ୍ୟ ବୋଲି ବିଚାର କରିଛନ୍ତି । ସେ ନାରଦଙ୍କୁ ଜଣେ ବ୍ୟକ୍ତି, ଜଣେ ପୁରୁଷ ଯେ ସର୍ବଗୁଣର ଅଧିକାରୀ ହୋଇଥିବ, ଯେ ସଂସାରକୁ ଧର୍ମ ସଙ୍କଟରୁ ରକ୍ଷା କରିପାରିବ, ସେପରି ଏକ ବ୍ୟକ୍ତି ବିଷୟରେ ପଚାରିଛନ୍ତି ଓ ନାରଦ ତାଙ୍କୁ ଏପରି ଜଣେ ରାଜା ଅଛନ୍ତି ଯେ ଏ ସମସ୍ତ ଗୁଣର ଅଧିକାରୀ ବୋଲି କହିଛନ୍ତି । ଏଠାରେ ରାମଙ୍କ ଈଶ୍ୱର ଅବତାର ପ୍ରଶ୍ନ ଆସି ନାହିଁ । ଦ୍ୱିତୀୟରେ, ନିଜର ଅବତାର ପ୍ରଶ୍ନର ଉତ୍ତରରେ ରାମ ନିଜେ ଯାହା କହିଛନ୍ତି ତାହା ଉଲ୍ଲେଖ କରିବା ଆମେ ଉଚିତ୍ ମନେ କରୁଛୁ ।

ସୀତାଙ୍କୁ ରାମ ଯେତେବେଳେ ଲଙ୍କା ବିଜୟ ପରେ ଭେଟିଛନ୍ତି ଓ ପରିତ୍ୟାଗର ସିଦ୍ଧାନ୍ତ ଶୁଣାଇଛନ୍ତି, ସେତେବେଳେ ସ୍ୱାଭିମାନୀ ସୀତା ଦୁଃଖରେ ମ୍ରିୟମାଣ ହୋଇ ଅଗ୍ନି ପ୍ରବେଶର ସନ୍ଧିକ୍ଷଣରେ ଅନେକ ଦେବଦେବୀ, ବ୍ରହ୍ମା, ମହାଦେବ ଓଗେର ସେଠାରେ ଉପସ୍ଥିତ ହୋଇ ରାମଙ୍କୁ ଚକ୍ରଧାରୀ ନାରାୟଣଙ୍କ ଅବତାର ବୋଲି ସୂଚାଇ ଦେଇଛନ୍ତି । ରାମ ଉତ୍ତରରେ କହିଛନ୍ତି, "ମୁଁ ରାଜା ଦଶରଥଙ୍କ ପୁତ୍ର...ରାମ ନାମକ ମନୁଷ୍ୟ, ମୁଁ କିଏ, କାହିଁକି ଏ ସଂସାରକୁ ଆସିଛି, ତାହା ଜାଣେ ନାହିଁ । ମୁଁ ମୋର ବୁଦ୍ଧି ବିବେକମତେ ମୋର କର୍ତ୍ତବ୍ୟ କରି ଆସିଛି ।"

ସୀତା ଅଗ୍ନିରୁ ଶୁଦ୍ଧ ସୁବର୍ଣ୍ଣ ପରି ଉଜ୍ଜ୍ୱଳତର ହୋଇ ବାହାରି ଆସିଲେ, ରାମ ତାଙ୍କୁ ଗ୍ରହଣ କଲେ ତାହା ଆମର ଆଲୋଚନା ପରିସରର ବାହାରେ ।

ଆମର ମୁଖ୍ୟ ପ୍ରଶ୍ନ ଥିଲା, ରାମଙ୍କ ଅବତାର ପ୍ରଶ୍ନ । ସେ ପ୍ରଶ୍ନର ଉତ୍ତର ରାମ ନିଜେ ଦେଇଛନ୍ତି । ପାଠକେ, ଏ ପ୍ରଶ୍ନର ଉତ୍ତର ତର୍କ ବଳରେ ମିଳି ପାରିବ ନାହିଁ । ଏହା ଭକ୍ତି ଓ ବିଶ୍ୱାସର କଥା । ନିଷ୍ପତ୍ତି ଆପଣମାନଙ୍କର ।

ପ୍ରବନ୍ଧଗୁଡ଼ିକରେ ଦର୍ଶାଯାଇଥିବା ତଥ୍ୟ ଓ ଯୁକ୍ତି ସପକ୍ଷରେ ବ୍ୟବହୃତ ମାନଚିତ୍ର ଓ ଚିତ୍ର






THE NORTHWARD DRIFT OF THE INDIAN LAND MASS.




ANCIENT HIGHWAYS.

## ସହାୟକ ପୁସ୍ତକ ତାଲିକା

1) The Vedic People: the History and Geography ,
- Rajesh Kochhar
2) Ravan-The Great King of Lanka
- M.S. Purnalingum Pillai
3) The Book of Ram - Devdutt Pattanaik
4) Ramayan (7 parts) - Ashok Banker
5) The Ramayan (Translated into English
- Manmath Nath Dutt
Prose from the original Sanskrit of Valmiki)
- Published-1892
6) Voyage through the Ramayan
- Mathuram Bhoothalingam
7) The Lost River-On the trail of the Saraswati
- Michel Danino
8) Asura -The Tale of the Vanquished - The story of Ravana and his people
- Anand Neelakantan
9) History of Ancient India-A new version
- J.P. Mittal
10) India in the Vedic Age-A History of Aryan Expansion in India
- Purushottam Lal Bhargava
11) Land of the Seven Rivers - A brief History of India's Geography - Sanjeev Sanyal
12) The Ramayan-Valmiki-Abridged and translated
- Arshia Sattar
13) The Ramayan-A modern translation
- Ramesh Menon
14) Ramayan - Kamala Subramaniam
15) The Legend of Hanuamnji - Parez Dewan
16) Valmiki Ramayan-Abridged and translated
- Rajendra Tandon
17) Dating the Era of Lord Ram-Discover actual dates of

the life time of Lord Ram - Pushkar Bhatnagar
18) A History of Ancient and early medieval India from the stone age to 12th century - Upinder Singh
19) Indian Mythology-Myths and Legends of India, Tibet and Sri Lanka - Rachel Storm
20) In the Footprints of Sri Ram - Dr. Ram Avtar
21) The Cultural Heritage of India - R.K. Mission Institute of Culture
22) The Indian epics Retold - R.K. Narayan

23) India, A sacred Geography - Diana L. Eck
24) Ramayan of Valmiki-Translated into English verson - Ralph T.H. Grittith
25) The Past As Present-Forging Contemporary Identities Through History - Romila Thapar
26) The Ramayana-A Shortened Modern Prose Version of the Indian Epic - R. K. Narayan
୨୭) ବାଲ୍ମିକୀ କୃତ ରାମାୟଣ (ସଂକ୍ଷିପ୍ତ ସାର) - ଜାନକୀ ବଲ୍ଲଭ ପଟ୍ଟନାୟକ
୨୮) ବାଲ୍ମିକୀ ରାମାୟଣ - ପଣ୍ଡିତ ରତ୍ନାକର ଗର୍ଗବଟୁ
୨୭) ବାଲ୍ମିକୀ ରାମାୟଣ - ହରିହର ମିଶ୍ର
୨୯) ଜାନକୀ ବଲ୍ଲଭ ବିଳାସ - ୰ଗୋକୁଳା ନନ୍ଦ ପଟ୍ଟନାୟକ
୩୦) ଯୋଗ ବାଶିଷ୍ଠ ରାମାୟଣ - ଅନୁବାଦ-ନାରାୟଣ ବୀରବରସାମନ୍ତ
୩୧) ଜଗବନ୍ଧୁ ତୁଳସୀ ରାମାୟଣ - ରାୟସାହେବ ଜଗବନ୍ଧୁ ମହାପାତ୍ର
୩୨) ରାବଣ - ସୁରେନ୍ଦ୍ର ନାଥ ଶତପଥୀ
୩୩) ମୈଥିଳୀ - ଡକ୍ଟର(ଶ୍ରୀମତୀ) ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ
୩୪) ରାମାୟଣ - ଗୋରାଚାନ୍ଦ ମିଶ୍ର
୩୫) ବିଚିତ୍ର ରାମାୟଣ - ସିଦ୍ଧେଶ୍ୱର ଦାସ

# ଧର୍ମ ସଙ୍କଟ

ପୁସ୍ତକଟିର ମୁଦ୍ରଣ ପୂର୍ବରୁ କିଛି ଶୁଭେଚ୍ଛୁଙ୍କୁ ପାଣ୍ଡୁଲିପି ପଢ଼ି ନିରପେକ୍ଷ ମତାମତ ଦେବାକୁ ଅନୁରୋଧ କରିଥିଲି। ପ୍ରାୟ ସମସ୍ତଙ୍କ ଠାରୁ ଏ ବାବଦରେ ଅନୁକୂଳମୂଳକ ମତାମତ ହିଁ ପାଇଲି। ସେମାନଙ୍କ ମତରେ "ଏହା ଏକ ନୂତନ ବିଚାର ଏବଂ ଅନେକାଂଶରେ ଘଟଣାମାନ ଏହିପରି ଘଟିଥିବା ହିଁ ସମ୍ଭବ।" ସେ ଯାହାହେଉ ଏତକ ଜାଣିବା ପରେ ମୋର ମନେ ହେଲା, ଏ ପୁସ୍ତକଟି ରଚନାର ଶ୍ରେୟ କାହାର ପ୍ରାପ୍ୟ? କାହାପ୍ରତି ମୋର କୃତଜ୍ଞତା ଜଣାଇବି?

ମୋତେ, ନିଜକୁ? ମୋର ପରିବାରକୁ? ମୋର ସାଙ୍ଗସାଥୀ ଶୁଭେଚ୍ଛୁମାନଙ୍କୁ? ଏ ପୁସ୍ତକର ରଚନାର ଶ୍ରେୟ କାହାକୁ ଦେବା ଉଚିତ୍ ବୋଲି ଯେତେ ମୁଁ ଚିନ୍ତା କରୁଛି, ସେତିକି ଧର୍ମ ସଙ୍କଟରେ ଆକ୍ରାନ୍ତ ହେଉଛି।

ମୁଁ ଯେ ଏପରି ଏକ ବିଷୟବସ୍ତୁକୁ ନେଇ ପୁସ୍ତକ ରଚନା କରିବାକୁ ମନସ୍ଥିର କଲି, ଯାବତୀୟ ତଥ୍ୟ ସଂଗ୍ରହ କରି ପାରିଲି ଏବଂ ପାଠକ ପାଖରେ ଆଦୃତ ହେବା ପରି ଭାଷାରେ ନିଜ ବିଚାରକୁ ପ୍ରକାଶ କରି ପାରିଲି, ଏହା କ'ଣ କେବଳ ମୋର, ଏକମାତ୍ର ମୋର କୃତିତ୍ୱ? ମୁଁ କ'ଣ ମୋ ନିଜର କୃତିତ୍ୱ ପାଇଁ ଶତକଡ଼ା ଶହେ ଦାୟୀ? ମୋର ଚିନ୍ତା, ମୋର ଭାବନା, ମୋର ଉଦାରତା ବା ଅନୁଦାରତା, ମୋର ବିଚାର ବା ଭ୍ରମ, ଗୁଣ ବା ଦୁର୍ଗୁଣ, ଉଚିତ୍ କାର୍ଯ୍ୟ ଶୈଳୀ ବା ଅନୁଚିତ କାର୍ଯ୍ୟ ଶୈଳୀ, ଦାୟୀତ୍ୱଜ୍ଞାନ ବା ଦାୟୀତ୍ୱହୀନତା ବା ମୂଲ୍ୟବୋଧ ଉଚ୍ଚ ହେଉ ବା ନୀଚ ହେଉ, ଯାହା ସବୁ ଫେଣ୍ଟା ଫେଣ୍ଟି ହୋଇ 'ମୁଁ'ଟି ଏଠି ଠିଆ ହୋଇଛି, ତାହା ପଛରେ କ'ଣ କେବଳ ମୋର ଶକ୍ତି, ସାମର୍ଥ୍ୟ ହିଁ ରହିଛି? ସେଥିରେ କ'ଣ ଅନ୍ୟ କାହାରି କିଛି ଅବଦାନ ନାହିଁ? ଏସବୁ କ'ଣ ଏଇ ଗୋଟିଏ ଜୀବନରେ ମୁଁ ସାଉଁଟି ଏକାଠି କରିପାରିଛି? ଉତ୍ତରାଧିକାର ସୂତ୍ରରେ କ'ଣ କିଛି ମୋ ପାଖକୁ ଆସି ନାହିଁ?

ମୁଁ ଯାହା, ତାହା କ'ଣ କେବଳ ମୋ ଯୋଗୁଁ? ଏହି ବିଚାରକୁ ନିସର୍ଗ ଗ୍ରହଣ କରିବାକୁ ମନରେ କାହିଁକି କୁଣ୍ଠା ଆସୁଛି। ମୋ କର୍ମଫଳ ପାଇଁ ମୁଁ ଦାୟୀ ଓ ସେ ଫଳ ମୋର ପ୍ରାପ୍ୟ। ମାତ୍ର ସେଇ 'ମୁଁ'ଟି ଆଜି ଯେଉଁଠି ଯେପରି ପହଞ୍ଚିଛି ତା ପଛରେ ରହିଛି ଶହେ ଜନ୍ମର

ସଂସ୍କାର । ଆଜି ମୁଁ ଯାହା, ଯାହା ମୋର ଚିନ୍ତା ଓ ଚେତନା, ତାହା ଅନେକ ଅନେକ ଜନ୍ମରୁ ଟିକିଏ ଟିକିଏ ହୋଇ ମିଶାଣ ଫେଡ଼ାଣ ହୋଇ ଆଜିର ରୂପରେ ପହଞ୍ଚିଛି । ଭଙ୍ଗାଗଢ଼ା, ମିଶାଣ ଫେଡ଼ାଣର ଏହି ପ୍ରକ୍ରିୟା, ଧାରା ଆହୁରି ଅନେକ ଜନ୍ମ ଚାଲିବ ଏହା ମୋର ବିଶ୍ୱାସ । ଏପରି ସ୍ଥଳେ ମୁଁ, ଆଜି ମୋ ନିଜକୁ ଏ ପୁସ୍ତକ ରଚନାର ଶ୍ରେୟ ଦେବି କିପରି ?

ତାପରେ, ମୁଁ ଆଜି ଯାହା ଅଛି, ତାହା ତ ଆଦୌ ମୂଳ କଥା ନୁହେଁ । ଏକ ବିଶାଳ ବଟ ବୃକ୍ଷର ଅସଂଖ୍ୟ କ୍ଷୁଦ୍ର ମଞ୍ଜି ଭିତରୁ ମାତ୍ର ଗୋଟିଏ । ସେହି ବିଶାଳ ତରୁର ଲକ୍ଷ ଲକ୍ଷ ଫଳ । ତା ଗର୍ଭରେ କ୍ଷୁଦ୍ର କ୍ଷୁଦ୍ର ଶହ ଶହ ବୀଜ । ପ୍ରତିଟି କ୍ଷୁଦ୍ର ବୀଜ ଭିତରେ ରହିଛି ବିଶାଳ ବଟ ବୃକ୍ଷର ଜୀବନ । ତା'ର ସମଗ୍ର ସତ୍ତାର ଏକ ସାରାଂଶ । ଆଉ ମଧ୍ୟ ସେ ବିଶାଳ ବଟ ବୃକ୍ଷଟି ଏକକ ପ୍ରଥମ ସୃଷ୍ଟି ନୁହେଁ । ତା'ର ମୂଳ ତା'ର ଆରମ୍ଭ ଯାଇ ଆଉ କେଉଁଠି । କେଉଁ ସମୁଦ୍ର ତଟରେ ବା କେଉଁ ଘନ ଅରଣ୍ୟ ଭିତରେ । ଅସଂଖ୍ୟ ବଟ ବୃକ୍ଷ ମଧ୍ୟରୁ ସେ ଗୋଟିଏ ମାତ୍ର । ମାତ୍ର ସମସ୍ତ ବଟ ବୃକ୍ଷମାନ ଗୋଟିଏ ସୂତାରେ ବନ୍ଧା । ସେହିପରି କେଉଁ ଅନାଦି କାଳରୁ ବହି ଆସିଥିବା ଜୀବନଧାରାର ମୁଁ ଏକ ନିତାନ୍ତ କ୍ଷୁଦ୍ର ମାତ୍ର ଅବିଚ୍ଛେଦ୍ୟ ଅଙ୍ଗ । ମୋ ବାଟ ଦେଇ ସେଇ ଧାରାଟି ଶାଖା ପ୍ରଶାଖା ମେଲି ଆହୁରି ଆଗକୁ, ଅନନ୍ତ ଭବିଷ୍ୟତକୁ ବୋହି ଚାଲିଛି ଓ ଚାଲିବ ।

ମାତ୍ର ଯେତେ କ୍ଷୁଦ୍ର ହେଲେ ବି, ଅଣୁ ପରିମାଣ ହେଲେ ବି ମୁଁ ସେହି ବୃହତ୍ତର ଅବିଶ୍ରାନ୍ତ ଧାରାର/ସୃଷ୍ଟିର ଏକ ଅଂଶ । ସେହି ଧାରାର ପ୍ରତିଟି ଅଂଶ, ପ୍ରତିଟି ଶାଖା, ପ୍ରତିଟି ଫଳ/ବୀଜ ପରସ୍ପର ସହ ସମ୍ପର୍କିତ, ଜଡ଼ିତ (କେଉଁ ଅନାଦି କାଳରୁ ପ୍ରତ୍ୟେକ ପ୍ରତ୍ୟେକଟି ସହିତ ଅତ୍ୟନ୍ତ କ୍ଷୀଣ ଅଥଚ ଦୃଢ଼ ସୂତା ଖଣ୍ଡରେ ଗୁନ୍ଥା) । ତେଣୁ ଏହି କୃତିତ୍ୱକୁ ମୋର ବୋଲି କହିବା ମୋ ପକ୍ଷରେ ଉଚିତ ନୁହେଁ କି ସମ୍ଭବ ନୁହେଁ ।

ମୋର ଚିନ୍ତା, ଚେତନା, ଭାବନା, ଦୃଷ୍ଟିଭଙ୍ଗୀ, କ୍ରିୟା, ପ୍ରତିକ୍ରିୟା ପଛରେ ରହିଛି, ମୋର ପରିବେଶ, ମୋର ପରିବାର, ମୋର ପିତାମାତା, ବନ୍ଧୁ ଅବନ୍ଧୁ, ଚିହ୍ନା ଅଚିହ୍ନା, ଏପରି ଅନେକଙ୍କର ଅବଦାନ । ସେହିପରି ମଧ୍ୟ ରହିଛି ମୋ ଭିତରେ ହଜାର ହଜାର ବର୍ଷ ଧରି ଗଢ଼ି ଆସୁଥିବା ଅବିଚ୍ଛିନ୍ନ ବଂଶଧାରାର ପରିଚୟ । ମନେହୁଏ ଏ ସଂସାରରେ କାହାରିଠାରୁ ମୁଁ ପୃଥକ ନୁହେଁ ବା କେହି ମୋଠାରୁ ପୃଥକ ନୁହନ୍ତି । ମୁଁ ପ୍ରତ୍ୟେକଟି ଭିତରେ ଅଛି ଓ ପ୍ରତ୍ୟେକ ମୋ ଭିତରେ ଅଛନ୍ତି । ବୋଧହୁଏ ସେଇଥିପାଇଁ କୁହାଯାଇଛି 'ବସୁଧୈବ କୁଟୁମ୍ବକମ' । ଏ ସମସ୍ତ ବିଶ୍ୱ ମୋର ପରିବାର ।

କେବଳ ଏତିକି ସ୍ୱୀକାର ମଧ୍ୟ ଯଥେଷ୍ଟ ନୁହେଁ । ଆଜି 'ମୁଁ' ଟି ଯେଉଁ ରୂପରେ ଯେଉଁ ଢଙ୍ଗରେ, ଯେଉଁ ବେଶରେ ପହଞ୍ଚିଛି, ସେଥିପାଇଁ ମୋର ଗାଁ ଭୂଇଁ, ମୋର ସାଇ ପଡ଼ିଶା, ସେଇ ଅଣଓସାରିଆ, ଅନ୍ଧାରୁଆ ଚାଳଘର, ନଈ, ଆମ୍ବତୋଟା, ପାହାଡ଼, ମନ୍ଦିର, ଆଳତୀ, ଗାଈଗୋଠ, ସକାଳର ସୂର୍ଯ୍ୟ, ପୂର୍ଣ୍ଣମୀର ଚାନ୍ଦ, ମାର୍ଗଶୀରର ମାଣବସା, କାର୍ତ୍ତୀକର ହବିଷ, ମାଘର ହାଡ଼ଭଙ୍ଗା ଶୀତ, ଶ୍ରାବଣର ଝଡ଼ିବର୍ଷା, କାଦୁଅ ପୁଚୁ ପୁଚୁ ଗାଁ

ଦାଣ୍ଡ ଇତ୍ୟାଦି ଇତ୍ୟାଦି ଅନେକଙ୍କର ଛାପକୁ ନେଇ 'ମୁଁ' ଟି ଗଢ଼ି ହୋଇଛି ।

ମୋର ମନ, ଭାବନା, ମୋର ଚିନ୍ତା, ଚେତନାକୁ ଆଲୋକିତ କରିବାରେ ଏମାନଙ୍କର ଅବଦାନ କିଛି କମ୍ ନୁହେଁ । ଏମାନଙ୍କୁ ନେଇ ମୋର ଜନ୍ମ ଜନ୍ମର ସଂସ୍କାର ପରିପୁଷ୍ଟ ହୋଇଛି ଓ ହେଉଛି । ତେବେ ଏମାନଙ୍କ ପ୍ରତି ମୋର କୃତଜ୍ଞତା ସ୍ୱୀକାର ନକରିବି କିପରି ?

ସେମାନେ ମୋର ଏତେ ନିଜର ଯେ ଆଜି ପର୍ଯ୍ୟନ୍ତ ସେମାନେ ପ୍ରତିଟି କ୍ଷଣରେ ମୋ ପାଖରେ ରହିଛନ୍ତି । ମୋ ଭିତରେ ଆସ୍ଥାନ ଜମାଇ ବସି ଯାଇଛନ୍ତି । ଘନିଷ୍ଠ ସହଯୋଗୀ ପରି କ୍ଷଣକ ପାଇଁ ମୋତେ ତ୍ୟାଗ କରି ନାହାନ୍ତି । ଦୁଃଖରେ ଶୋକରେ, ଖୁସୀରେ ସର୍ବଦା ପାଖେ ପାଖେ ରହିଛନ୍ତି । ଯେତେବେଳେ ମୋତେ ସେମାନେ ଛାଡ଼ି ଯାଇନାହାନ୍ତି ମୁଁ ସେମାନଙ୍କୁ ଛାଡ଼ିବି କିପରି ? ସେମାନଙ୍କୁ ବାଦ ଦେଇ ମୁଁ ମୋ ନିଜକୁ ସାବାସୀ ଦେଇ କୃତଘ୍ନ ହେବି କିପରି ? ଯାହା ମୋର ନୁହେଁ ତାହା ମୁଁ ନେବି କିପରି ? ଏହାହିଁ ମୋ ପାଇଁ ଧର୍ମ ସଙ୍କଟ ।

ସୁଧାଂଶୁ ଶେଖର ଦାସ

## ପୃଷ୍ଠବନ୍ଧ

(୧)

'ରାମାୟଣ ? କେଉଁ ରାମାୟଣ ?'

ଯଦି କେହି ଏ ପ୍ରଶ୍ନ ପଚାରେ, ସେ ଭୁଲ୍ କରୁଛି ବୋଲି ଧରାଯିବା ସ୍ୱାଭାବିକ, କାରଣ ଆମେ ସମସ୍ତେ ସାଧାରଣଭାବେ ବିଶ୍ୱାସ କରୁ ଯେ ରାମାୟଣ ଏକ ଓ ଅଭିନ୍ନ । କିନ୍ତୁ ପ୍ରଶ୍ନଟି ଆଦୌ ଭୁଲ୍ ନୁହେଁ; ଏବଂ ଏହା ଏକକ ପ୍ରଶ୍ନ ନୁହେଁ, ତହିଁରେ ପ୍ରଚ୍ଛନ୍ନ ଆଉ କେତେଗୁଡ଼ିଏ ପ୍ରଶ୍ନ: କୋଉ ଭାଷାର ରାମାୟଣ, କିଏ ଲେଖିଥିବା ରାମାୟଣ, କୋଉ ସମୟରେ ଲେଖା ରାମାୟଣ ?

ରାମାୟଣ ବିଶାରଦ କ୍ୟାମିଲ୍ ବୁଲ୍‌କେ (Camille Bulcke, ୧୯୦୯-୮୨)– ବେଲ୍‌ଜିୟମରେ ଜନ୍ମ ଯେଷୁଇଟ୍ ପାଦ୍ରୀ ଯାହାଙ୍କ ମୁଖ୍ୟ ପରିଚୟ ରାମାୟଣ ଗବେଷକ ହିସାବରେ ଭାରତ ଓ ବାହାରେ ନିର୍ବିବାଦରେ ସ୍ୱୀକୃତ; ସେ ହିନ୍ଦି ଭାଷା ଓ ସାହିତ୍ୟରେ ଏମ୍.ଏ. କରିଥିଲେ ଓ 'ରାମ୍ କଥା କା ବିକାଶ' (Ram Katha Ka Vikas) ସନ୍ଦର୍ଭ ପ୍ରସ୍ତୁତ କରି ଡକ୍ଟରେଟ୍ ଉପାଧି ଲାଭ କରିଥିଲେ; ଭାରତ ସରକାରଙ୍କ ଦ୍ୱାରା ହିନ୍ଦି ପ୍ରଚାର ପ୍ରସାର ରାଷ୍ଟ୍ରୀୟ କମିଟିର ସଦସ୍ୟ ହିସାବରେ ନିଯୁକ୍ତ ହୋଇଥିଲେ; ୧୯୭୪ରେ ତାଙ୍କୁ 'ପଦ୍ମଭୂଷଣ' ପ୍ରଦାନ କରାଯାଇଥିଲା–ହିସାବ କରି କହିଥିଲେ ପୃଥିବୀରେ ସେତେବେଳେ ରାମାୟଣ ସଂଖ୍ୟା ପହଞ୍ଚିଥିଲା ତିନି ଶହରେ । ପ୍ରତି ରାମାୟଣ ଅନ୍ୟେ ବହୁତେ ପୃଥକ, କେହି ଭୁଲ୍ ନୁହଁନ୍ତି, କୌଣସି ଗୋଟିଏ ରାମାୟଣ ଖାଣ୍ଟି ଓ ମୂଳ ରାମାୟଣ ନୁହେଁ, ଏପରିକି ସଂସ୍କୃତରେ ଲେଖା ବାଲ୍ମିକୀ ରାମାୟଣ ମଧ; ତାଙ୍କ ପରିସଂଖ୍ୟାନ ଅନୁସାରେ କେବଳ ସଂସ୍କୃତ ଭାଷାରେ ପଚିଶରୁ ଊର୍ଦ୍ଧ୍ୱ ଅଲଗା ଅଲଗା ରାମାୟଣ ।

(୨)

ତେବେ ସବୁ ଆଞ୍ଚଳିକ ରାମାୟଣର ମୁଖ୍ୟ ବିଷୟବସ୍ତୁ ଅଭିନ୍ନ: ସତ୍ୟ ଅସତ୍ୟ ଭିତରେ, ନ୍ୟାୟ ଅନ୍ୟାୟ ଭିତରେ ଲଢ଼େଇ; ଶେଷରେ ନ୍ୟାୟ ଓ ସତ୍ୟର ବିଜୟ । ବହୁ ପାତ୍ର, ବହୁ ଘଟଣା, ବହୁ କାହାଣୀ ମାଧମରେ ଏଇ ବିଷୟବସ୍ତୁର ପରିବେଷଣ । ଘଟଣା ଓ କାହାଣୀର

ପରିବର୍ତ୍ତନ ତଥା ଚରିତ୍ରମାନଙ୍କ ବିଶ୍ଳେଷଣ ବେଳେ କାହାକୁ ବେଶି ପ୍ରଶଂସା କାହାକୁ ନିନ୍ଦା ନେଇ ଭିନ୍ନତାର ସୃଷ୍ଟି ହୋଇଛି ଓ ରାମାୟଣ ରାମାୟଣ ଭିତରେ ପାର୍ଥକ୍ୟ ଉପୁଜିଛି । ମୁଖ୍ୟ କାହାଣୀ ଧାର–ଯାହା ବହୁ କାଳଯାଏ ମୌଖିକ ଲୋକ ସାହିତ୍ୟରେ ବଞ୍ଚିବା ପରେ ବାଲ୍ମିକୀ (ସଂସ୍କୃତରେ ଲେଖା ବାଲ୍ମିକୀ ରାମାୟଣ ସଂପୂର୍ଣ୍ଣଭାବେ ଜଣେ ଲେଖକ ଯାହାଙ୍କର ନାମ ଥିଲା ଋଷୀ ବାଲ୍ମିକୀ ବା ସେଥିରେ ସାମିଲ ଆଉ ଅନେକ ଲେଖକ ଯେଉଁମାନେ ମୁଖ୍ୟ ଲେଖକଙ୍କ ଛାଇରେ ଲୁଚିଗଲେ ଏହା ମଧ ଗବେଷଣାର ବିଷୟ)ଙ୍କ ଦ୍ୱାରା ସଂସ୍କୃତରେ ଲେଖା ହୋଇ ଅନ୍ୟାନ୍ୟ ଭାରତୀୟ ଓ ଅଣଭାରତୀୟ ଭାଷାରେ ଅନୂଦିତ ଓ ଅନୁସୃତ ହେଲା–ଏ ପ୍ରକ୍ରିୟାରେ ପାଠ୍ୟ ବଦଳିଯିବା ଆଦୌ ବିଚିତ୍ର ନୁହେଁ; କିଏ ଆଉ ଟିକିଏ ଯୋଡ଼ିଲା, ତାକୁ ଭଲ ଲାଗିଲା ବୋଲି; କିଏ ଟିକିଏ କାଟିଲା, ତାକୁ ଅପସନ୍ଦ ଲାଗିଲା ବୋଲି; କିଏ ଗୋଟିଏ ଚରିତ୍ରକୁ ବେଶି ଗୁରୁତ୍ୱଦେବାକୁ ଉପଯୁକ୍ତ ମଣିଲା ତ କିଏ ସେ ଚରିତ୍ରକୁ ଏତେଟା ଗୁରୁତ୍ୱ ଦେବାକୁ ଚାହିଁଲା ନାହିଁ; କିଏ ଅନ୍ୟ ସଂସ୍କରଣରେ ଥିବା ବିଷୟବସ୍ତୁକୁ ଭୁଲ୍ ମଣି ନୂଆ ପୃଷ୍ଠଭୂମି, ବିଶ୍ଳେଷଣ ଓ ବିଚାରଧାରା ସଂଯୋଗ କଲା–ନାନା ମୁନୀ, ନାନାମତ ।

ଏଇ ପରିପ୍ରେକ୍ଷୀରେ ଗୋଟିଏ ସିଦ୍ଧାନ୍ତ ନିର୍ବିବାଦ: ରାମାୟଣ କାବ୍ୟ-ଧର୍ମ-ଗ୍ରନ୍ଥ ଉପରେ ସବୁ ଆଲୋଚନା ଆପେକ୍ଷିକ ।

ଏଇ ଆପେକ୍ଷିକତା ହିଁ ସୁଧାଂଶୁ ଶେଖର ଦାସଙ୍କ 'ସମ୍ଭାବ୍ୟ ରାମାୟଣ'ର ଉପୃଭିର ପଛରେ ରହିଛି । ଦୁଇ ବର୍ଷରୁ ଊର୍ଦ୍ଧ୍ୱ କାଳ ରାମାୟଣର ବହୁ ସଂସ୍କରଣ ଘାଣ୍ଟିଚକଟି କେତୋଟି ନିର୍ଦ୍ଦିଷ୍ଟ ଘଟଣା ଓ ବିଷୟବସ୍ତୁ ଉପରେ ସୁଧାଂଶୁ–ମୋର କଲେଜ ବେଳୁ ବନ୍ଧୁ–ନିଜସ୍ୱ ବିଚାର ବାଢ଼ିଛି ।

ପ୍ରଥମେ ତା ସାହସକୁ ସାବାସୀ । ତା ବିଚାର ଓ ଯୁକ୍ତି ଗ୍ରହଣୀୟ କି ସେଥିରେ ବିଭ୍ରାଟ ରହିଛି ସେକଥା ପରେ । (ସେ ବିଚାର ପାଠକଙ୍କ ଉପରେ ।) ବିଗତ କୋଡ଼ିଏ ପଚିଶ ବର୍ଷ ଧରି ଭାରତୀୟ ଆଲୋଚନା–ବିଶେଷ କରି ଧର୍ମ, ଧର୍ମପୁସ୍ତକ ଓ ଧର୍ମବିଶ୍ୱାସ ଭଳି ଉତପ୍ତ ବିଷୟେ ଉପରେ–ଏତେ ଉତ୍ତେଜିତ, ସ୍ପର୍ଶକାତର ମାନସିକତାର ସହ କରାଯାଉଛି ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ନିଜ ମତାମତ ଉପସ୍ଥାପନାରୁ ଆଡ଼େଇ ରହୁଛି । ଧର୍ମଗତ ସଂକୀର୍ଣ୍ଣ ମାନସିକତା (କେବଳ ହିନ୍ଦୁମାନଙ୍କର ନୁହେଁ, ଅନ୍ୟ ସମସ୍ତ ଧର୍ମାବଲମ୍ବୀମାନଙ୍କର ମଧ; ବାଦ ବୋଧହୁଏ ଯିବ କେତୋଟି ନିରୀହ, ନିରାପଦ, ସଂଖ୍ୟାଲଘୁ ଧର୍ମ, ଉଦାହରଣ ସରୂପ ଜୋରାଷ୍ଟ୍ରିଆନିଜମ୍) ବିଭିନ୍ନ ପ୍ରକାର ହିଂସାତ୍ମକ କାଣ୍ଡ ପାଇଁ ପ୍ରେରଣା-ଇନ୍ଧନ ଯୋଗାଇଛି । ୧୯୯୨ରେ ରାମ ଜନ୍ମଭୂମିର ଭୌଗଳିକ ନିରୂପଣ ଓ ଆପାତତଃ ସେଇ ସ୍ଥାନ ଉପରେ ଗଢ଼ା ମସ୍‌ଜିଦ୍‌କୁ ଭାଙ୍ଗିବା ନେଇ ସୃଷ୍ଟି ହୋଇଥିବା ସାଂପ୍ରଦାୟିକ ଝଡ଼ର ପ୍ରତିଧ୍ୱନୀ ଏପର୍ଯ୍ୟନ୍ତ ଶୁଣିବାକୁ ମିଳୁଛି । ୧୯୮୭ରେ ଏ.କେ. ରାମାନୁଜନ୍ ଲେଖିଥିବା ଇଂରାଜୀ ପ୍ରବନ୍ଧ 'ଥ୍ରୀ ହଣ୍ଡ୍ରେଡ୍ ରାମାୟଣଜ୍' (Three Hundred Ramayanas) ୨୦୧୩ରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକରୁ ବାଦ୍ ଦେବାକୁ ପଡ଼ିଛି; ୨୦୧୪ରେ ୱେଣ୍ଡି ଡୋନିଗର୍‌ଙ୍କ ଗବେଷଣା-ପ୍ରସୂତ 'ଦ ହିନ୍ଦୁଜ୍' (The Hindus) ପୁସ୍ତକର ପୁନଃମୁଦ୍ରଣ ବନ୍ଦ କରାଯାଇଛି । ଏଇଭଳି ଏକ ଅସ୍ୱାସ୍ଥ୍ୟକର ପରିବେଶ ଓ ପୃଷ୍ଠଭୂମିରେ ରାମାୟଣକୁ ନେଇ ଗବେଷଣା ଓ ମୌଳିକ ଚିନ୍ତା କରିବା ଦୁଃସାହାସିକ ପଦକ୍ଷେପ ।

ଗବେଷକଙ୍କ ମତରେ ସଂସ୍କୃତ ବାଲ୍ମିକୀ ରାମାୟଣର ରଚନାକାଳ ଖ୍ରୀଷ୍ଟପୂର୍ବ ୭୫୦ରୁ ଖ୍ରୀଷ୍ଟାବ୍ଦ ୨୦୦ ଭିତରେ; ଏହା ଉପନିଷଦ ଆଦି ଶାସ୍ତ୍ରମାନଙ୍କ ପରବର୍ତ୍ତୀ ସମୟର ଲେଖା । ବହୁ ଶହ ବର୍ଷ ଶ୍ରୁତି (ଓ ସ୍ମୃତି) ସାହିତ୍ୟ ହୋଇ ରହିବା ପରେ ଏହାକୁ ପୋଥିମାନଙ୍କରେ ଲିପିବଦ୍ଧ କରାଗଲା । ମୌଖିକ ଅବସ୍ଥାରେ ବିଭିନ୍ନ ଅଞ୍ଚଳର କବି ଓ ଗାୟକଙ୍କ ଜରିଆରେ ଏହାର ସାଂସ୍କୃତିକ ବିକ୍ଷେପଣ ଘଟିଲା ବେଳେ ସେଇ ପ୍ରକ୍ରିୟାରେ ଆଞ୍ଚଳିକତା ପଶିଲା: ପ୍ରତି ସଂସ୍କୃତିରେ ରାମ କାହାଣୀର ଲୋକପ୍ରିୟତା ବଢ଼ିବା ଅବସରରେ, ରାମଙ୍କ ଗତିପଥ ବା ତାଙ୍କ ଜଙ୍ଗଲବାସ ବା ତାଙ୍କ ଦ୍ୱାରା ସଂଘଟିତ କୌଣସି ଅଲୌକିକତାର ବର୍ଣ୍ଣିତ ସ୍ଥାନ–ଜଙ୍ଗଲ, ପାହାଡ଼, ଗୁମ୍ଫା, ଖୋଲ, ନଈ, ପୋଖରୀ, ଜଳାଶ୍ରୟ–ଆଞ୍ଚଳିକ ଭିତ୍ତିରେ ଚିହ୍ନଟ କରାଗଲା ।

ଉତ୍ତର ଭାରତରୁ ଆରମ୍ଭ ହୋଇ ଦକ୍ଷିଣ ଭାରତର ଶେଷ ସୀମା ପର୍ଯ୍ୟନ୍ତ ରାମଙ୍କ ଯାତ୍ରାପଥ ନିର୍ଣ୍ଣୟ ପଛରେ ରାଜନୈତିକ କାରଣ ଥିଲା କି ନାହିଁ କେଜାଣି, କିନ୍ତୁ ଏକ ନିର୍ଦ୍ଦିଷ୍ଟ ସାଂସ୍କୃତିକ ଆଭିମୁଖ୍ୟ ଯେ ଥିଲା ଏ ବିଷୟରେ ଗବେଷକମାନେ ସହମତ । ଏକ ସର୍ବଭାରତୀୟ ଅସ୍ମିତା ସୃଷ୍ଟି କରିବାରେ ଏହା ଥିଲା ପ୍ରଥମ ଓ ପ୍ରମୁଖ ଆୟୁଧ । ଏ ପ୍ରକାର ମନୋଭାବ ସ୍ଥାୟୀ କରିବା ପାଇଁ ଲୋଡ଼ା ହୋଇଥାଇପାରେ ଯୁଦ୍ଧ–ଯାହାର ପରିଣାମ ହୋଇଥିଲା ଗୋଟିଏ ପକ୍ଷ ପାଇଁ ବିଜୟ ଓ ଅନ୍ୟ ପକ୍ଷ ପାଇଁ ପରାଜୟ । (ଯାହା 'ରାମାୟଣ'ର କାହାଣୀରେ ଘଟିଛି ।) ଏଇ ସର୍ବଭାରତୀୟତାର ଆଉ ଗୋଟିଏ ଲକ୍ଷଣ ହେଲା ଭୌଗଳିକତା ନିରୂପଣ ବେଳେ ବିସ୍ତୃତ ପରିଭୂମି ପରିକଳ୍ପନା: ଚିତ୍ରକୂଟ ମଧ୍ୟ ଭାରତର ନାଗପୁର ଅଞ୍ଚଳ ପାଖରେ ହେଲା ବେଳକୁ ଗନ୍ଧମାର୍ଦ୍ଦନ ପାହାଡ଼ ଅବସ୍ଥିତ ପୂର୍ବ ଭାରତର ଓଡ଼ିଶା ପ୍ରଦେଶର ସମ୍ବଲପୁର ଜିଲ୍ଲାରେ; ବନବାସ ବେଳେ ରାମ କୋଉଠିକୁ ନଯାଇଛନ୍ତି ବା କେଉଁ ଆଶ୍ରମ କୁଡ଼ିଆ ନବସେଇଛନ୍ତି ? ତାଙ୍କ ଗତିପଥର ଚିହ୍ନ ବହୁ ପାହାଡ଼ରେ, ବହୁ ଯାଗାରେ, ବସ୍ତୁତଃ ଚାରିଆଡ଼େ–ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ; ସଂଗରେ କାଳିଆ ଲୋକ ହୋଇଗଲେ ବାନର ଓ ଭଲ୍ଲୁକ ବାହିନୀର ସୈନ୍ୟ; ଏବେକାର ଶ୍ରୀଲଙ୍କାକୁ ଚିହ୍ନିତ କରାଗଲା ରାମାୟଣ ଲଙ୍କା; ଦୁଇ ଦେଶ ଭିତରେ ଥିବା ସମୁଦ୍ରରେ ପଡ଼ିଗଲା ପଥର ବନ୍ଧ (ଯାହାର କ୍ଷୀଣ ଉପସ୍ଥିତି ସାଟେଲାଇଟ୍ ଚିତ୍ରରୁ ଏବେବି ସ୍ପଷ୍ଟ ବୋଲି ଅନେକ ଆଲୋଚକ ଏକମତ); ଯୁଦ୍ଧର କାରଣ ହିସାବରେ ଦର୍ଶାଗଲା ରାମଙ୍କ ପତ୍ନୀ ସୀତା ଅପହରଣ । (ଭୟାବହ ଯୁଦ୍ଧର କାରଣ ହିସାବରେ ପତ୍ନୀ ଅପହରଣ ଏକ ବିସ୍ଫୋରକ ବିଷୟବସ୍ତୁ । ହୋମର୍‌ଙ୍କ ଲିଖିତ ଗ୍ରୀକ୍ ସାହିତ୍ୟର 'ଇଲିଆଡ୍'ର ମୂଳକାହାଣୀ ମଧ୍ୟ ଏଇ ବିଷୟବସ୍ତୁ ଭିତ୍ତିକ ।)

ଶ୍ରୁତିରୁ ଲିଖନ ଓ ମୂଳ ସଂସ୍କୃତ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ ବେଳେ କୋଡ଼ିଏ ହଜାରରୁ ଅଧିକ ଶ୍ଳୋକ ସମ୍ବଳିତ ଏହି କାବ୍ୟରେ ପରିବର୍ତ୍ତନ ବେଳେ ମୁଖ୍ୟ ସର୍ବଭାରତୀୟ ଚେତନା ସ୍ରୋତ ସହିତ ସଂଲଗ୍ନ ହୋଇଯିବା ଏକ ଅପରିହାର୍ଯ୍ୟ ସାଂସ୍କୃତିକ ଦାୟିତ୍ୱ ହୋଇପଡ଼ିଲା । (ଆମ ପୂର୍ବଜମାନେ ବି ରାମାୟଣର ପଟ୍ଟଭୂମିରେ ଥିଲେ, ରାମ ଏଇ ବାଟେ ଯାଇଥିଲେ, ଅମୁକ ନଈକୂଳ ଯୋଉଠି ରାମ କିଛି ଦିନ ରହିଥିଲେ ସେ ଯାଗାଟା ଅମୁକଠି, ରାମ ଯେଉଁ ଠାକୁର ଠାକୁରାଣୀଙ୍କୁ

ପୂଜିଥିଲେ ସେମାନଙ୍କ ମନ୍ଦିର ଅମୁକ ଅମୁକ ଯାଗାରେ, ସମୁକ ପାହାଡ଼ ପିଠିରେ ଓ ଛାତିରେ ରାମଙ୍କ ପାଦଚିହ୍ନ ପଡ଼ିଛି, ଇତ୍ୟାଦି ଇତ୍ୟାଦି ଦାବି ଜରିଆରେ ସାଂସ୍କୃତିକ ଏକୀକରଣ ପ୍ରକ୍ରିୟାକୁ ଲୋକପ୍ରିୟ, ଅନ୍ତରଙ୍ଗ ଓ ଗ୍ରହଣୀୟ କରାଗଲା ।) ସାଂସ୍କୃତିକ ଏକୀକରଣ ଯେ ରାଜନୈତିକ ଏକୀକରଣକୁ ସ୍ଥାୟୀ ଓ ନିରାପଦ କରିଥାଏ ଏକଥା କହିବା ନିଷ୍ପ୍ରୟୋଜନ । (ବ୍ରିଟିଶ ଶାସନ ପୂର୍ବରୁ, ମୋଗଲ ଶାସନ ପୂର୍ବରୁ, ଭାରତ ଭୂଖଣ୍ଡରେ ରାଜନୈତିକ ଏକତା ନଥିଲେ ମଧ୍ୟ ସାଂସ୍କୃତିକ ଏକତା ସୃଷ୍ଟି କରିବା ଓ ରକ୍ଷା କରିବା ପଛରେ ରାମାୟଣ ଓ ମହାଭାରତ ପରି ଦୁଇ ସୁଦୀର୍ଘ କାବ୍ୟଙ୍କ ଅନୁଦାନ ଯେ ଅତି ଗଭୀର ସେ ବିଷୟରେ କୌଣସି ସନ୍ଦେହ ନାହିଁ ।)

ତେଣୁ ମୂଳ କାହାଣୀର ମୁଖ୍ୟ ଚଉଖମ୍ବ ଅବଲମ୍ବନରେ ତିନି ଶହ ରାମାୟଣ ରଚନା କିଛି ବିଚିତ୍ର ବା ବିବ୍ରତକର ନୁହେଁ । (ମୋର ଆଶଙ୍କା ଆଦୌ ଅମୂଳକ ନୁହେଁ ଯେ ଆଗାମୀ ଦୁଇ ଚାରି ଶହ ବର୍ଷ ପରେ ବିଭିନ୍ନ ରାମାୟଣ ସଂଖ୍ୟା ପାଞ୍ଚ ଶହରେ ପହଞ୍ଚିଥିବ ।)

(୪)

ମୋର ବ୍ୟକ୍ତିଗତ ମତ ଏୟା ଯେ ରାମାୟଣ ହେଉ କି ମହାଭାରତ ହେଉ ବା ଯେକୌଣସି ଧର୍ମୀୟ ଶାସ୍ତ୍ର ପୁରାଣକୁ ନେଇ ସ୍ପର୍ଶକାତରତା ଆରମ୍ଭ ଗୋଟିଏ ଐତିହାସିକ ସମୟରୁ–ଭାରତରେ ମୁସଲ୍‌ମାନ୍ ରାଜତ୍ୱ ବେଳଠାରୁ । ମୁସଲମାନ୍ ଆକ୍ରମଣ ବେଳେ ଜନଜୀବନ ଅସୁରକ୍ଷିତ ଥିଲା, କିନ୍ତୁ ସାଂସ୍କୃତିକ ଆଲୋଡ଼ନ ଆକ୍ରମଣ ଉଦ୍ଦେଶ୍ୟ ନଥିଲା । (ଏକମାତ୍ର ଉଦ୍ଦେଶ୍ୟ ଥିଲା ଧନରତ୍ନ ଲୁଟ୍‌ପାଟ୍ ।) ମୁସଲମାନ୍ ରାଜତ୍ୱ ଆରମ୍ଭ ହେବା ପରେ ରାଜଧର୍ମ ପରିବର୍ତ୍ତନକୁ ଆଖି ଆଗରେ ରଖି ଧର୍ମାନ୍ତକରଣ ଆରମ୍ଭ ହେଲା । ବହୁ ଅଞ୍ଚଳରେ ଏ ପରିବର୍ତ୍ତନକୁ ସ୍ଥାନୀୟ ଲୋକଙ୍କ ଉପରେ ଚାପି ଦିଆଗଲା । ଏଇ ଚାପ ଯୋଗୁଁ ଶାସ୍ତ୍ରମାନଙ୍କ ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ରକ୍ଷା କରିବା ହିନ୍ଦୁ ସାଂସ୍କୃତିକ ପ୍ରତିରୋଧର ଏକ ପ୍ରତିଫଳନ ହୋଇପଡ଼ିଲା । ଶାସ୍ତ୍ର ପୋଥି ଧର୍ମଗ୍ରନ୍ଥ ସବୁ ଖୋଦ୍ ଈଶ୍ୱରଙ୍କ ଦ୍ୱାରା ଲିଖିତ, ଅକ୍ଷରେ ଅକ୍ଷରେ ସତ, ସେଥିରେ ଗପ ବା କାହାଣୀ ବୋଲି କିଛି ନାହିଁ, ସେଗୁଡ଼ିକୁ ତର୍ଜମା କରି ଶହେ ପ୍ରକାର ବ୍ୟାଖ୍ୟା ବାହାରକରିବା ଧର୍ମଦ୍ରୋହ–ଏଇ ଭଳି ରକ୍ଷଣଶୀଳତା, ଏଇ ଭଳି ସଂକୀର୍ଣ୍ଣ ମନୋବୃତ୍ତି ହିନ୍ଦୁ ମାନସିକତା ବା ହିନ୍ଦୁତ୍ୱ ଭିତରକୁ ପ୍ରବେଶ କଲା । ଏବେ, ମୁସଲମାନ ରାଜୁତୀ ଶେଷ ହେବାର ଚାରି ଶହରୁ ଊର୍ଦ୍ଧ୍ୱ ବର୍ଷ ପରେ, ମଧ୍ୟ ଏ ମନୋଭାବ ଅପସରି ଯାଇନାହିଁ । (କାରଣ ଏୟା ହୋଇପାରେ ଯେ ମୁସଲମାନ ରାଜତ୍ୱ ପରେ ଖ୍ରୀଷ୍ଟିଆନ ଧର୍ମ ପ୍ରଚାର ଓ ପ୍ରସାର ଆରମ୍ଭ ହେଲା; ଖୋଲା ଖୋଲି ଭାବେ ରାଜନୈତିକ ଓ ଶାସନଗତ ସମର୍ଥନ ନଥିଲେ ମଧ୍ୟ ଏହା ଶାସକବର୍ଗର ରାଜଧର୍ମ ହୋଇଥିବାରୁ ହିନ୍ଦୁମାନେ ଆପଣାକୁ ପୂର୍ବପରି ଅସୁରକ୍ଷିତ ମନେକଲେ ।)

କିନ୍ତୁ ଏବେ ସ୍ୱାଧୀନ, ଧର୍ମ-ନିରପେକ୍ଷ ଭାରତ ଦେଶର ବୟସ ଆସି ହେଲାଣି ସତୁରୀ ପାଖାପାଖି; ଏବେ କୃତ୍ରିମ ଉପାୟରେ ଏ ଅସୁରକ୍ଷିତ ଭାବକୁ ବଞ୍ଚେଇ ରଖିବାରେ କୌଣସି ଯଥାର୍ଥତା ନାହିଁ । ହିନ୍ଦୁ ଧର୍ମ ନଷ୍ଟ/ବିନାଶ ହୋଇଯିବାର ଭୟ ଅମୂଳକ ଓ ଅପ୍ରତ୍ୟାଶିତ । ଏଣୁ

ଏବେ ଶାସ୍ତ୍ର ପୋଥି ଆଲୋଚନା ବିଭିନ୍ନ ଦୃଷ୍ଟିକୋଣରୁ ନକରିବା ଅବାନ୍ତର ଓ ବସ୍ତୁତଃ ଅଣ-ସାଂସ୍କୃତିକ ହୋଇପଡ଼ିବ ।

ଏଇ ପରିପ୍ରେକ୍ଷୀରେ ଗ୍ରହଣ କରିବା ଆବଶ୍ୟକ ସୁଧାଂଶୁ ଶେଖର ଦାସଙ୍କ 'ସମ୍ଭାବ୍ୟ ରାମାୟଣ' ।

(୫)

ରାମାୟଣ କିଏ, ମୁଁ କିଏ !

କୋଉ ପିଲାଦିନେ ସେ ସାତ ଖଣ୍ଡ ପଢ଼ିଥିଲି । ତା ପୁଣି ଦାୟରେ ପଡ଼ି ! ମାମୁଘରେ ରହି (ଇ)ସ୍କୁଲ୍‌ରେ ପଢ଼ୁଥିବାବେଳେ ମୋ ଅଜା ରାତିରେ ଶୋଇବା ପୂର୍ବରୁ ମତେ ଓ ମୋ ସମବୟସ୍କ ସାନ ମାମୁଙ୍କୁ ବଡ଼ ପାଟିରେ ରାମାୟଣ ପଢ଼ି ଶୁଣାଇବା ପାଇଁ ବରାଦ କରୁଥିଲେ । ସେ ଦାୟିତ୍ୱରୁ ନିଷ୍କୃତିର ସହଜ ବାଟ ନଥିଲା । କେତେ ଥର ପେଟ କାଟୁଛି, ନିଦ ମାଡୁଛି, ଅସୁର ଅସୁରୁଣିଙ୍କ କଥା ରାତିରେ ପଢ଼ିଲେ ଡରମାଡୁଛି, ବାଜେ ସ୍ୱପ୍ନ ହେଉଛି, ଇତ୍ୟାଦି ସଫେଇ ଦେଇ ହେବ ? କେତେ ଥର ପୋଖରୀ ପାଣି ଦେଖାଉଛି ବୋଲି କହି ସତସତିକା ଅନ୍ଧାର ଗୋହରୀରେ ଅଧ ଘଣ୍ଟାଏ କାଳ ଚୁପଚାପ୍ ଠିଆହୋଇ ରହିହେବ ? ଗାଁରେ ପୁଣି ସଂଧ୍ୟା ଆଠଟା ନହେଉଣୁ ରାତି ଅଧଠୁ ବଳି ! ତେଣୁ ନିଦ ମଳ ମଳ ଅବସ୍ଥାରେ, ଆଖି ଲାଗି ଯାଉଥିଲେ ବି, ଅତି କମ୍‌ରେ ପାଞ୍ଚଟି ଦୀର୍ଘ ପୃଷ୍ଠା ରାମାୟଣ ପଢ଼ି ଶୁଣେଇବାକୁ ବାଧ୍ୟ ! (ମହାଭାରତ ଘରେ ପଢ଼ିଲେ କଳି ଲାଗେ ବୋଲି ଅନ୍ଧବିଶ୍ୱାସ ଯୋଗୁ ସେ ପୋଥି ଘରେ ବଡ଼ ପାଟିରେ ପଢ଼ି ଶୁଣେଇବାକୁ ପଡ଼ି ନଥିଲା–ରକ୍ଷା !) ସେତେବେଳେ ରାମାୟଣ ଯନ୍ତ୍ରଣାଦାୟକ ଗୋଟିଏ ଅସରନ୍ତି କାହାଣୀ ପରି ମନେ ହୋଇଥିଲା । ଏବେ ପରିଣତ ବୟସରେ ଆଉ ଥରେ ଆମୂଳଚୂଳ ପଢ଼ିବା ପରି ମାନସିକତା କେବେ ଗଢ଼ୁରି ନାହିଁ ।

ମୁଁ ଏତିକି ବୁଝିଛି ଯେ ଯାହାର ବିଶ୍ୱାସ ଅଛି ତା ପାଇଁ ରାମାୟଣ ଗୋଟିଏ ଧର୍ମଗ୍ରନ୍ଥ ଓ ସେଥିରେ ବର୍ଣ୍ଣିତ ପ୍ରତ୍ୟେକଟି ଘଟଣା ସବୁ ସତ, ଅବିକଳ । କିନ୍ତୁ ଯାହାର ବିଶ୍ୱାସ ନାହିଁ ତା ପାଇଁ ଏ ବହି ପ୍ରତୀକ-ଧର୍ମୀ କାହାଣୀ । ହିନ୍ଦୁତ୍ୱର ବିଶେଷତ୍ୱ ଏୟା ଯେ କୌଣସି ଜିନିଷକୁ ତମେ ଯେଉଁ ଭାବେ ଇଛା ସେ ଭାବେ ଗ୍ରହଣ କରିପାରିବ–ପୃଥ୍ୱୀ ବିପୁଳ, କାଳ ନିରବଧି, ତମ ବିଶ୍ୱାସ ତମର, ତମ ଅବିଶ୍ୱାସ ତମର, ତମ ଗବେଷଣା ତମର, ତମ ମତାମତ ତମର, ସଂସାର ଲେଉଟି ପଡ଼ିନି, ପଡୁନି କି ପଡ଼ିବନି; ବସୁଧା ଗୋଟିଏ, ପ୍ରକୃତିଜାତ ସବୁ ଜୀବଜନ୍ତୁ ପଶୁପକ୍ଷୀ ଗଛବୃକ୍ଷ ସ୍ଥାବର ଜଙ୍ଗମ ଗୋଟିଏ ବିରାଟ ପରିବାର; ସତ୍ୟ ଗୋଟିଏ, କିନ୍ତୁ ତାକୁ ଖୋଜିବାର ବାଟ ଶହେ; ପ୍ରତ୍ୟେକଟି ବାଟ ଅନ୍ୟଟି ପରି ଯଥାର୍ଥ, ଉପାଦେୟ, ମହାର୍ଘ; ସବୁ ପ୍ରତିଘାତ ବ୍ୟାଘାତ ପ୍ରତିରୋଧ ସତ୍ତ୍ୱେ, ବହୁ ବିପରୀତ ଶକ୍ତି ସଂଗେ ଆମ୍ସଂଜମରେ ଏକାଠି ଚଳିବା ହିଁ ସହଜାତ ମାନବ ଧର୍ମ । ମୋ ପାଇଁ ରାମାୟଣ ସମେତ ସବୁ ଧର୍ମଗ୍ରନ୍ଥ ଶିକ୍ଷାର ଆରମ୍ଭ ଏଇଠି, ଶେଷ ମଧ୍ୟ ଏଇଠି । ମୋର ବୌଦ୍ଧିକ ଦୌଡ଼ ମଧ୍ୟ ଏତିକି–ସାତ ଖଣ୍ଡ ରାମାୟଣ ସାତ କି

ସତର ଥର ପଢ଼ି ସାରିବା ପରେ ଥାଇ ଥାଇ ମୁଁ ହୁଏତ ପଚାରି ଦେଇପାରେ–ସୀତା ମାଈ ନା ଅଣ୍ଡିରା ?

ସୁଧାଂଶୁ ଓ ମୋ ଭିତରେ ଅଲିଖିତ ଚୁକ୍ତି ଏୟା ଯେ ସେ ବହି ଖଣ୍ଡେ ଲେଖିଲେ ମୁଁ ଲେଖିବି ତାର ମୁଖବନ୍ଧ । ତାହା ଏପର୍ଯ୍ୟନ୍ତ–ତାର ପାଞ୍ଚ ଛଅ ଖଣ୍ଡ ବହି ଯାକେ–ସଂଭବ ହେଉଥିଲା, କାରଣ ସେ କିଛି ବିଶିଷ୍ଟ ବହିର ଅନୁବାଦ କରୁଥିଲା କିମ୍ବା ତା ଆତ୍ମଜୀବନୀ ଲେଖୁଥିଲା । ଏ ବୁଢ଼ା ବୟସରେ କାହିଁକି ରାମାୟଣ ଗବେଷଣାରେ ମାତିଲା ମତେ ଅଜଣା–ସେ କହିବା ଅନୁସାରେ ଶ୍ରୀ ହନୁମାନଙ୍କ କୃପା । କିନ୍ତୁ ସେ ଯେତେବେଳେ କହିଲା ତା ନିଜସ୍ୱ ବିଚାର ଛାପିବାକୁ ନିଷ୍ପତ୍ତି ନେଇଛି ମୁଁ ପଡ଼ିଲି ହରଡ଼ଘଣାରେ । ସଂକଳନର ନାମକରଣ କରିଦେଇ ଖସିଯିବାକୁ ବସିଲାବେଳେ ସେ ମୋ ବେକରେ ଗାମୁଛା ପକେଇ ଅଟକାଇଲା । ମୁଁ ତାକୁ ଫୁସୁଲେଇଲି ଯେ ବିଜ୍ଞଜନ ଦେଖି ମୁଖବନ୍ଧ ଲେଖେଇନେବା ଉଚିତ ହେବ । କେବଳ ମୁଖବନ୍ଧଟିଏ ନୁହେଁ, ଅଭିମତଟିଏ ଯୋଗାଡ଼ କରିବାରେ ମଧ୍ୟ ସେ ସଫଳ ହେଲା । କିନ୍ତୁ ମତେ ଲେଖିବାକୁ ପଡ଼ିଲା ପୃଷ୍ଠବନ୍ଧ ।

ଇଏ ପୃଷ୍ଠବନ୍ଧ ନୁହେଁ, ପୃଷ୍ଠଭଙ୍ଗ ।

ଏହା ପରେ କେବଳ ବାକି ରହିଲା ସୁଧାଂଶୁ ଶିବିରରୁ ଛତ୍ରଭଙ୍ଗ ।

କମଳାକାନ୍ତ ମହାପାତ୍ର

# ମେଲାଣିର ବେଳା

ଆତ୍ମଜୀବନୀ

ସୁଧାଂଶୁ ଶେଖର ଦାସ




ମେଲାଣିର ବେଳା ଏକ କ୍ରମବିକଶିତ ଜୀବନର ଧାରା ବିବରଣୀ ନୁହେଁ, ଯଦିଓ ଏଥିରେ ଶୈଶବ, କୈଶୋର ଓ ପରିଣତ ଜୀବନର ସମୟାନୁକ୍ରମିକ ଘଟଣା ଓ ଅନୁଭୂତି ସାମିଲ। ଏହା ମୁଖ୍ୟତଃ ଘଟଣାବଲମ୍ବୀ; କେତେଗୁଡ଼ିଏ ମୁଖ୍ୟ ଓ ମୋଡ଼ ବଦଳାଇ ଦେଇଥିବା ଘଟଣାର ଏକ ମନବୋଧ ଚଉତିଶା।

କର୍ମ ଏବଂ କର୍ମଫଳର ସନ୍ଧାନ, ନିରୂପଣ ଓ ଅଧ୍ୟୟନ ଏହି ଆତ୍ମଜୀବନୀର ଏକ ମୁଖ୍ୟ ସ୍ୱର। କର୍ମରେ ଅପକର୍ମ ମଧ୍ୟ ନିହିତ। ଅପକର୍ମର ବିଚାର ଏତେ ସହଜ ନୁହେଁ। କିନ୍ତୁ ମଣିଷ ମନ ଏମିତି ଗୋଟିଏ ଜିନିଷ ଯେ ସଫେଇ ଦେବା ସତ୍ତ୍ୱେ, ବୁଝେଇ ପାରିବା ସତ୍ତ୍ୱେ, ଗୋଟିଏ ଗୋଟିଏ ତଥାକଥିତ ସଫଳ କର୍ମକୁ ମନ ଅପକର୍ମ ବୋଲି ନିଭୃତରେ ସ୍ୱୀକାର କରି ଅବଚେତନର ଗହୀରରେ ପୋତି ରଖେ। ବହୁ ବର୍ଷ ପରେ ହେଉ ବା ଅଳ୍ପ ସମୟ ଭିତରେ ହେଉ କୌଣସି କଷଣ, ଦଣ୍ଡ, ଦୁଃଖ ଭୋଗିବାକୁ ପଡ଼ିଲେ ତାକୁ ସେଇ ପୁରୁଣା ଅପକର୍ମର ପରିଣାମ ବୋଲି ଗ୍ରହଣ କରିବାକୁ ମନ ତିଆରି ହୋଇଯାଏ।

ଘଟଣାମାନଙ୍କ ଭିତରେ ଏଇ କାରଣାତ୍ମକ ଯୋଗସୂତ୍ର ଖୋଜିବା ଏ ଆତ୍ମଜୀବନୀର ଏକ ବୈଶିଷ୍ଟ୍ୟ।




ଜଣେ ତା ଜୀବନ ବିଷୟରେ କଣ ଲେଖିବ, କଣ ଲୁଚେଇବ, କାହାକୁ ସ୍ମରଣ କରିବ, କାହାକୁ ବିସ୍ମୃତ ହେବ--- ଏହି ନିଷ୍ପତ୍ତି ତା ଉପରେ । କିନ୍ତୁ କହିଜାଣିଲେ ସାଧାରଣ ଚରିତ୍ର ଓ ଅନୁଭୂତି ମଧ ଅସାଧାରଣ ଲାଗେ; ନିତିଦିନିଆ ଘଟଣା ମଧ କୁହୁକମୟ ମନେହୁଏ । ସେହି ଦୃଷ୍ଟିରୁ ଦେଖିଲେ, ପିଲାଦିନର ଅନେକ ଘଟଣା ଓ ଚରିତ୍ର ସମ୍ବଳିତ ସୁଧାଂଶୁ ଶେଖର ଦାସଙ୍କ ଏହି ଆତ୍ମଜୀବନୀରେ ଅଛି ଅଭୂତପୂର୍ବ ସଫଳତା ।

ଆତ୍ମଜୀବନୀ ଯେତେ ନିଜବିଷୟରେ ନୁହେଁ, ତା ଠାରୁ ଯଥେଷ୍ଟ ଅଧିକ ଅନ୍ୟମାନଙ୍କ ବିଷୟରେ । ଯେଉଁ ଆତ୍ମଜୀବନୀ ଆତ୍ମସର୍ବସ୍ବ ତା ସେତିକି ଆତ୍ମାଶୂନ୍ୟ ଓ ସେତିକି ଅସୁଖପାଠ୍ୟ ।

'ମୁଁ' ବୋଲି ସଭିଏଁ ବହୁ ଘଟଣା, ବହୁ ବ୍ୟକ୍ତି, ବହୁ ଅନୁଭବ ଓ ଅନୁଭୂତି ସମ୍ବଳିତ ଏକ ସତ୍ତା । ଯେଉଁ ଜୀବନ କାହାଣୀରେ ସେମାନଙ୍କ ପ୍ରଭାବ ସ୍ୱୀକାର କରାଯାଏ ନାହିଁ, ସେମାନଙ୍କର ସଶ୍ରଦ୍ଧ ସ୍ମରଣ କରାଯାଏ ନାହିଁ, ସେ ପ୍ରକାର ଆତ୍ମଜୀବନୀ ଯେତିକି କ୍ଲାନ୍ତ ସେତିକି କ୍ଲାନ୍ତିକର । 'ଅଫେରନ୍ତା ସମୟ'ରେ ସମୟର ଚିତ୍ର ଏତେ ଅନ୍ତରଙ୍ଗ ଯେ ପାଠକ ସହଜରେ ସେଠାରେ ପହଞ୍ଚିଯାଏ ।




ବହୁ ଗୁଳି ଗପ ଅସଲେ ଗୁଳି ଗପ ନୁହଁନ୍ତି । ସେଗୁଡ଼ାକ ଅତି ଗଭୀର; ସେମାନଙ୍କ ଭିତରେ କାହିଁରେ କଣ ଅର୍ଥ । ପ୍ରଥମ ଥର ହସି ସାରିବା ପରେ ସେଥିରେ ପୋତା ମଞ୍ଜିରୁ ଗଛ ବାହାରେ ।

ଏ ସଙ୍କଳନର ବେଶୀ ଭାଗ ଗପ ଲୋକ ସାହିତ୍ୟରେ ମହଜୁଦ । ଅନେକ ଗୁଡ଼ିଏ ଗପ ଲୋକେ ଆଗରୁ ଶୁଣିଥିବେ । ଯେଉଁ ପରିମାଣରେ ଆମ ବଳିଷ୍ଠ ମୌଖିକ ସାହିତ୍ୟ -- ଗପ କହିବା ଓ ଗପ ଶୁଣିବା ଲୋକଙ୍କ ଅଭାବରୁ -- ଲୋପ ପାଇବାକୁ ବସିଲାଣି, ସେହି ପରିପ୍ରେକ୍ଷୀରେ ଗୋଟିଏ ନୁହେଁ ହଜାର ହଜାର ସଙ୍କଳନ ବାହାରିଲେ ଅବା କିଛିଟା ସାଇତି ରଖିବା ସମ୍ଭବ ହେବ ।

ସୁଧାଂଶୁ ଶେଖର ଦାସଙ୍କର ଏହି ସଙ୍କଳନ ଓଡ଼ିଆ ସାହିତ୍ୟର ଏକ ମହତ୍ତ୍ୱପୂର୍ଣ୍ଣ ଉପବିଭାଗକୁ ଅଧ୍ୟୟନ କରିବାପାଇଁ ଖୋରାକ ଯୋଗାଇବ ଏଥିରେ କାହାରି ସନ୍ଦେହ ନାହିଁ ।




ନିର୍ଯାତନା ସାହିତ୍ୟ ପରିପ୍ରେକ୍ଷୀରେ ଏଲି ୱିଜେଲ୍‌ଙ୍କ ଆତ୍ମଜୀବନୀମୂଳକ ରଚନା 'ରାତି' ଏକ ବିଶିଷ୍ଟ କୃତି । ଏଥିରେ ବିଭୀଷିକାର ଯେଉଁ ବର୍ଣ୍ଣନା ଅଛି ତାହା ଏତେ ଉତ୍କଟ ଯେ ସର ଜଣେ ପନ୍ଦର ବର୍ଷିଆ ତରୁଣର ହେଲେ ମଧ୍ୟ ଅସହ୍ୟ । ପଢ଼ିଲାବେଳେ ଦେହ ମନ ପ୍ରାଣ ସବୁ ଅସାଡ ହୋଇଯାଏ ।

ନିର୍ଯାତନା ଶିବିର: ଅସ୍‌ୱିଚ୍ ।

ଏହାଠାରୁ ନର୍କ ମଧ୍ୟ ଭଲ ।

'ରାତି' ଗୋଟିଏ ରାତିର କାହାଣୀ ନୁହେଁ । ଏହା ଏମିତି ଏକ ଅନ୍ଧକାରର କାହାଣୀ ଯାହା ଗୋଟିଏ ରାତିକୁ ସପତ ରାତି ପରି ଦୀର୍ଘ, ଅସହ୍ୟ ଓ ଅମୁହାଁ କରିଥାଏ । ଦିନ ନଥିବା ରାତି, ଆଲୁଅ ନଥିବା ଅନ୍ଧାର, ଆଶା ନଥିବା ଭବିଷ୍ୟତ -- ଏହି ସବୁର କାହାଣୀରେ ଗଢ଼ା ଏ ବହି । ଆନ୍ଦୋଳିତ ପାଠକ ଯେମିତି ପଢ଼ିସାରି ଭୁଲିନଯାଏ ଯେ ଏସବୁ ମାତ୍ର ପଞ୍ଚସ୍ତରି ବର୍ଷ ତଳେ ପ୍ରକୃତରେ ଘଟିଥିଲା ।




ପାକିସ୍ତାନ । ଜାତିଆଣ ଇଜ୍ଜତ୍ ସକାଶେ ଯେ କୌଣସି ସ୍ତ୍ରୀଲୋକକୁ ଗଣଧର୍ଷଣର ଶିକାର କରିବା ଏଠାରେ ସାଧାରଣ କଥା । ଅସାଧାରଣ କଥା ହେଉଛି । ସ୍ତ୍ରୀଲୋକଟି ଆତ୍ମହତ୍ୟା ନକରି ନ୍ୟାୟ ପାଇଁ ଲଢ଼େଇ କରିବାକୁ ଅଣ୍ଟାଭିଡିବା ।

ସାରା ବିଶ୍ୱର ବିବେକକୁ ବିନ୍ଧିଥିବା ମୁକ୍ତାରନ ମାଇର ଅନ୍ତରଙ୍ଗ ଆତ୍ମଜୀବନୀ ।

ପାକିସ୍ତାନର ଏକ ଅବିକଶିତ ଆଦିମ ଆଞ୍ଚଳିକ ଉପଭାଷାରେ ବର୍ଣ୍ଣିତ କାହାଣୀଟି 'ଇନ୍ ଦ ନେମ୍ ଅଫ୍ ଅନର' ପ୍ରଥମେ ଫରାସୀ ଭାଷାରେ ଓ ପରେ ଇଂରାଜୀ ଭାଷାରେ, ଏବେ ଓଡ଼ିଆରେ । ସାତ ସେଣା ଦେଇ ଉଠିଥିବା ଅନୁବାଦଟି ଖୋଲିବା ବେଳେ ପାଠକ ହୁଏତ ଆଶଙ୍କା କରିପାରେ ଯେ ଆତ୍ମକାହାଣୀରେ ତୀକ୍ଷ୍ଣ ଓ ଅନ୍ତରଙ୍ଗତାର ଉତ୍ତାପ ନଥାଇପାରେ । କିନ୍ତୁ ମୁକ୍ତାରନ ମାଇର କାହାଣୀ ଯେତେ ଗୋଟି ଭାଷାର ଜାଲଦେଇ ଛଣାହୋଇ ଆସିଲେ ମଧ୍ୟ ସେତିକି ଶାଣିତ, ଜର୍ଜରିତ ଯେତିକି ତା ପାଟିରୁ ତା ଆପଣା ଭାଷାରେ ବାହାରିଥିବା ପ୍ରତିବାଦର ସ୍ୱର । ଏହି ପ୍ରତିବାଦରେ ନଥାଏ ଶବ୍ଦ, ଥାଏ କେବଳ ଲୁହ, ଲହୁ ଓ ନିଆଁ -- ସେଥିରୁ ମାତ୍ର ଓଦା ଝୁଲଟିଏ ହିଁ ଯଥେଷ୍ଟ ପାଠକକୁ ପୋଡିଦେବାକୁ ।




'ମେନି ଲାଇଭ୍ସ୍, ମେନି ମାଷ୍ଟର୍ସ'ର ଓଡ଼ିଆ ଅନୁବାଦ ଡେରିରେ ହେଉପଛେ, ହୋଇଛି ଏଇଟା କିଛି କମ୍ କଥା ନୁହେଁ । ମୋର ବିଶ୍ୱାସ ବହିର ବି ଆତ୍ମା ଅଛି । ବହିର ଜୀବନ ବିଚିତ୍ର । ଯେଉଁ ବହି କେଉଁଠି କେବେ କେଉଁ ଭାଷାରେ ଲେଖାଯିବ ଓ ଅନୁବାଦ ହେବ, କିଏ ତାକୁ ପଢ଼ି ବିସ୍ମିତ, ବିଚଳିତ, ପ୍ରଭାବିତ ହେବ ଏସବୁ ମଧ୍ୟ ଆମ ଅଜାଣତାରେ ବହୁ ଆଗରୁ ନିର୍ଦ୍ଧାରିତ ।

ଆଗରେ ଅନ୍ଧାର ନୁହେଁ, ଆଲୁଅ; ଅଜ୍ଞାନ ନୁହେଁ, ଜ୍ଞାନ; ଏ ଜୀବନରେ ସବୁ କିଛି ଆରମ୍ଭ ହୋଇନାହିଁ କି ସରିଯାଉ ନାହିଁ । ଅନୁବାଦଟି ପାଠକଲାପରେ ବ୍ରାଏନ୍ ୱାଇସ୍‌ଙ୍କ ଏହି ଉପଲବ୍ଧି ପାଠକର ମଧ୍ୟ ହେବା ଅବଶ୍ୟମ୍ଭାବୀ ।




ଯେତେଗୁଡ଼ିଏ ଭାରତୀୟ ଆତ୍ମଜୀବନୀ ଏ ପର୍ଯ୍ୟନ୍ତ ଉପଲବ୍ଧ ସେମାନଙ୍କ ମଧ୍ୟରେ ଶୀଲା ଧର୍‌ଙ୍କ ଏହି ଆତ୍ମଜୀବନୀଟି ସବୁଠାରୁ ବେଶି ଅନ୍ତରଙ୍ଗ, ରସୋତ୍ତୀର୍ଣ୍ଣ ଓ ସୁପାଠ୍ୟ ।

ବହୁ ଆତ୍ମଜୀବନୀ ଏତେ ବେଶି ଆତ୍ମସର୍ବସ୍ୱ, ଆତ୍ମକୈନ୍ଦ୍ରିକ ଯେ ସେଗୁଡ଼ିକୁ ପଢ଼ିଲାବେଳେ ମନ ବା ପ୍ରାଣ ସାମାନ୍ୟତମ ଭାବେ ଆନ୍ଦୋଳିତ ବା ଆମୋଦିତ ହୁଏନାହିଁ । ସେଥିରେ ନିଜ ପ୍ରତି ବିଦ୍ରୂପ ନଥାଏ; ନିଜକୁ ତଉଲିବା ଭଳି ମାନସିକତା ନଥାଏ । ଶୀଲା ଧର୍‌ଙ୍କ ବହି ଏହାର ବ୍ୟତିକ୍ରମ ।

ମଜେଇ ଗପ କହି ପାରିବା ଏକ ଲୋଭନୀୟ, ଆକର୍ଷଣୀୟ, ଦୁର୍ଲଭ ସୌଭାଗ୍ୟ । ଭଲ ଲେଖିପାରିବା ତାଠୁ ବଳି ବଡ଼ ସୌଭାଗ୍ୟ । ଉଭୟ କଳାରେ ଅପର୍ଯ୍ୟାପ୍ତ ପାରଦର୍ଶିତା ଓ ଦକ୍ଷତା ଦେଖାଇପାରିବା ଭଳି ସୌଭାଗ୍ୟ ଲଭିଥିବା ଶୀଲା ଧର୍‌ଙ୍କ ପରି ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ନ୍ୟୁନ, ବିରଳ ।

ଶୀଲା ଧର୍ ଓ ତାଙ୍କ ଆତ୍ମଜୀବନୀ ଉଭୟ ଅତ୍ୟନ୍ତ ବିରଳ ।

# Ravana Stron



Ravana Haththa is the oldest violine in the world This is introduce by King Ravana and its belong to the Hela Civilization.



ରାମାୟଣ କେତେ ଖଣ୍ଡରେ ସାରିଲେ ବାଲ୍ମିକୀ-
ଛଅ ନା ସାତ ? ଜଣେ ବାଲ୍ମିକୀ ନା ଏକାଧିକ ରଚୟିତା ?

ଅହଲ୍ୟା ଉଦ୍ଧାର ପ୍ରଚଳିତ ସାମାଜିକ ମୂଲ୍ୟବୋଧର ପ୍ରତିଫଳନ ନା
ଶ୍ରୀରାମଙ୍କର କରୁଣାର ଏକକ ଉଦାହରଣ ?

ପର୍ଶୁରାମଙ୍କ ଦର୍ପଦଳନ ଏକ ବ୍ୟକ୍ତିଗତ ଉଦ୍ଦେଶ୍ୟଭିତ୍ତିକ ଘଟଣା
ନା ତା ପଛରେ ଗଭୀର ରାଜନୈତିକ କାରଣ ଥିଲା ?

ସୁଗ୍ରୀବ ସହିତ ମିତ୍ରତା କାହା ସ୍ୱାର୍ଥ ସାଧନ ସକାଶେ-
ସୁଗ୍ରୀବ ନା ରାମଙ୍କ ?

ସେତୁବନ୍ଧ କିଏ ବାନ୍ଧିଥିଲା-ରାମ ନା ରାବଣ ?

ଏହିପରି ଅଳ୍ପ କେତୋଟି ପ୍ରସଙ୍ଗ ଏ ସଙ୍କଳନରେ ଆଲୋଚିତ । କୋଉ ଦୃଷ୍ଟିଭଙ୍ଗୀ ବେଶୀ ସମ୍ଭାବ୍ୟ, କୋଉ ସିଦ୍ଧାନ୍ତ ବେଶୀ ଗ୍ରହଣୀୟ ତାହାରି ଆଲୋଚନା । ଆଲୋଚନାର ପୃଷ୍ଠଭୂମୀକୁ ନିରେଖି ଦେଖିବା ଓ ସେଥିରେ ଯୁକ୍ତିଯୁକ୍ତତା ସନ୍ଧାନ କରିବା ଉଦ୍ୟମରୁ ଏ ବହିର ଜନ୍ମ ଓ ସାର୍ଥକତା ।